ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ
୧୯୭୨

ମୁଦ୍ରାକର
ଶ୍ରୀ ନରେନ୍ଦ୍ରଚନ୍ଦ୍ର ପ୍ରଧାନ
ଜ୍ୟୋତି ପ୍ରେସ
କଟକ-୨

ମୂଲ୍ୟ
ତିନିଟଙ୍କା ପଚାଶ ନୂଆପଇସା

## ଏକ

୧୯୪୩ ମସିହାର ଆଶ୍ୱିନ ମାସ । ଭରା ଶରତର ସୁନା-ଝରବଅ ଖରା ଗୃହଅଙ୍ଗେ ବିଛେଇହୋଇ ପଡ଼ୁଛି । ଶାରଦୀୟ ଉତ୍ସବ । ଚୌଧୁରୀବାବୁଙ୍କର ଦେଉଳମେଳା ଅଗଣାରୁ ନହବତ୍ ଧ୍ୱନି ଭଇରବୀ ପଞ୍ଚମର ସୁରେ ସୁରେ ଉଡ଼ି ବୁଲୁଛି । ଦୁନିଆରେ ଆସିଛି ଏପରି ଗୋଟାଏ ଦିନ, ଯେଉଁଥିରେ ବର୍ଷରେ ଥରେ ଆନନ୍ଦମୟୀ ଲକ୍ଷ୍ମୀ ଆସେ, ଆନନ୍ଦ ଧ୍ୱନିରେ ଗୃହଅଙ୍ଗ ମୁଖରିତ ହୋଇଉଠେ, ଅତି ନିଃସ୍ୱ ଶୁଷ୍କ ହୃଦୟରେ ମଧ୍ୟ ଜାଗେ ଆନନ୍ଦର ଆଶା ।

ଝଙ୍କ ମ୍ୟୁନିସିପାଲିଟି ପୋଖରୀର ପୂର୍ବ ତଟ । ସେଠାରେ ମଧ୍ୟ ଆଗମନୀର ମଧୁର ତାନ ଖେଳି ବୁଲୁଥିଲା । ନିକଟରେ ଅଶ୍ୱତ୍ଥ ଗଛଟିଏ—ପ୍ରାଚୀନ, ଗୁଡ଼ି ପାଞ୍ଚୋଟି ଶାଖା, ସେଥିରେ କେତେ ଗଣ୍ଡା ପତ୍ର । ଗଛଟି ଛାଇ ଦେଉଥିଲା ଯେତିକି, ଖରାକୁ ବାଟ ଛାଡ଼ ଦେଉଥିଲା ତାଠାରୁ ଅଧିକ ।

ସେହି ଗଛ ମୂଳରେ ଦରଭଙ୍ଗା ଇଟାରେ ତିଆରି ଗୁଡ଼ାଏ ଅସ୍ଥାୟୀ ଚୁଲ୍ଲି । କୌଣସିଠାରେ ଟପାଏକରୁ ବେଶି ପାଉଁଶ ନ ଥିଲା । ସେଗୁଡ଼ାକ ଭିତରୁ ଯେପରିକି ଚିତ୍କାର କରି ଉଠୁଥିଲା ବୁଭୁକ୍ଷାର କରୁଣ ହାହାକାର ।

ସାମନାରେ ତାର ବେଢ଼ା । ତା ଭିତରେ ଧନୀଙ୍କର ହାତ-ଟେକା ଦାନରେ ନିଃସ୍ୱଙ୍କ ପାଇଁ ଅନ୍ନଛତ୍ର । ସକାଳ ହୁଏ, ତାର ବେଢ଼ା ଗୃହପଟେ ଆରମ୍ଭ ହୁଏ କଙ୍କାଳମାନଙ୍କର ସମ୍ମେଳନ । ଦିନ ତିନିଟା ବେଳକୁ ଅଖାଦ୍ୟ ଗୁହାଳ, ପୋକରା ଡ଼ାଲି, ଆଉ ବଜାର-ଫେଡ଼ା ପରିବାଗୁଣ୍ଡାଙ୍କର ଅପୂର୍ବ ସମାବେଶଦ୍ୱାରା ମନୁଷ୍ୟ ପାଇଁ ପ୍ରସ୍ତୁତ ହେବ ଗୋଟାଏ ଅନନ୍ୟସାଧାରଣ ଉପାଦେୟ ଖାଦ୍ୟ; ସେଥିରୁ ମେଣ୍ଟାଏ ଲେଖା ଏମାନଙ୍କୁ ଦିଆଯିବ । ଏହି ଆଶାରେ ଏହି ଶତ-ଶତ ନରକଙ୍କାଳ ମ୍ୟୁନିସପାଲିଟି ହତା ଭିତରେ ପଡ଼ି ରହିଥିଲେ । ଆଉ ଯେଉଁମାନେ ନିଜକୁ ମନୁଷ୍ୟ ବୋଲି ଗର୍ବ କରନ୍ତି, ମନୁଷ୍ୟ ବୋଲି ଆତ୍ମପ୍ରସାଦ ଲାଭ କରନ୍ତି, ଏହି କଙ୍କାଳ ଶ୍ରେଣୀ ସେମାନଙ୍କୁ ମୂକ-ଭଙ୍ଗୀରେ କହୁଥିଲେ— 'ମନୁଷ୍ୟ ତୁମେ । ଆଉ ଆମେ ? ?'

ତୁଠପାଖ ଅମ୍ବଗଛ ମୂଳରେ ବସିଥିଲା ଗୋଟାଏ କଙ୍କାଳ । ଲକ୍ଷ୍ୟ କଲେ ଜାଣି ହେବ—ସ୍ତ୍ରୀ ଲୋକ ନାରୀ, ଜନନୀର ଜାତି । କାଖରେ ମେଣ୍ଟାଏ ସାନ ସାନ ହାଡ଼ ଓ ଚମର ସମଷ୍ଟି—ତାର ପିଲାଟିଏ । ବୟସ ?- ଏମାନଙ୍କର ବୟସ ଖୋଜିବାକୁ ଯିବା ବାତୁଳତା । ଦୁଃଖ, ଦୈନ୍ୟ, ବୁଭୁକ୍ଷାର ତୀବ୍ର ଜ୍ୱାଳା ଜୀବନର ପ୍ରତି ମୁହୂର୍ତ୍ତରେ ଅନୁଭବ କରି, ନିରାଶାସଂକୁଳ ଅନିଶ୍ଚିତ ଭବିଷ୍ୟତର ଅତଳସ୍ପର୍ଶୀ ଅନ୍ଧକାରମୟ ଛବିକୁ ଜୀବନର ପ୍ରତି ମୁହୂର୍ତ୍ତରେ ଗୁରୁଭାର ପରି ବହନ କରି ଯେଉଁମାନଙ୍କୁ ବଞ୍ଚି ରହିବାକୁ ହୋଇ-ଥାଏ, କେଉଁ ମାନଦଣ୍ଡ ସାହାଯ୍ୟରେ ସେମାନଙ୍କର ବୟସ କଳନା କରି ହେବ ? ଆଦମ ଯୁଗର ଅସଭ୍ୟ ବର୍ବରତାର ରାକ୍ଷସୀ ଶକ୍ତି ଆଜିର ତଥାକଥିତ ଶିକ୍ଷା-ସଭ୍ୟତାର ଆଲୋକମୟ ଯୁଗରେ ମଧ୍ୟ ଯେଉଁମାନଙ୍କୁ ପଶୁର ଅଧିକାର ଦେଇ ନ ପାରି ସାଧାରଣ ବଞ୍ଚି

ବଞ୍ଚିବାର ଅଧିକାରରୁ ମଧ୍ୟ ବଞ୍ଚିତ କରଛୁ, ସେମାନଙ୍କ ବୟସ ବେଳଙ୍କ ବର୍ତ୍ତମାନ ମାନବସମାଜ ମଧ୍ୟରେ ପ୍ରଚ୍ଛନ୍ନ ରହୁଥିବା ନରମାଂସ-ଲୋଲୁପତାର ମାପକାଠି ଦ୍ୱାରା ହିସାବ କରାଯାଇ ପାରେ !

ସେହି ଅସ୍ଥିକଙ୍କାଳ ସ୍ତ୍ରୀ ଲୋକଟି, ତା କୋଳର ସେହି ସନ୍ତାନଟି, ରାତରେ ସେହି ଗଛମୂଳରେ ପଡ଼ି ରହୁଥିଲେ । କ୍ରମେ କ୍ରମେ ସୂର୍ଯ୍ୟ ମଝି ଆକାଶକୁ ଉଠିଲେ । ସେମାନେ ସେହିଠାରେ ମଧ୍ୟ ପଡ଼ିଥିଲେ । ପିଲାଟି ବେଳେବେଳେ ମାଆର ସ୍ତନ ଅଣ୍ଡାଳ ପକାଉଥିଲା —ବୋଧହୁଏ କେଉଁ ଏକ ଅତୀତର ସ୍ମୃତିରେ ପ୍ରତାରିତ ହୋଇ, ପୁଣି ସେ ଆଡ଼ୁ ଦୃଷ୍ଟି ଫେରାଇ ଆଣି ମାଆର ମୁହଁ ଆଡ଼କୁ ଚାହିଁ ରହୁଥିଲା ।

ମାଆ ପିଲାଟିର କୋଟରଗତ ଚକ୍ଷୁ ଆଡ଼କୁ ଥରେ ଚାହୁଁଥିଲା, ପାଖରେ ପଡ଼ିଥିବା ଭଙ୍ଗା ଟିଣଡବା ଖଣ୍ଡକୁ ନିଜ ଆଡ଼କୁ ଟାଣି ନେଉଥିଲା, ତା ପରେ ଶୂନ୍ୟ ଦୃଷ୍ଟିରେ ଉତ୍ତର ଦିଗରେ ଭାସି ବୁଲୁଥିବା ଶରତ କାଳର ଖଣ୍ଡେ ଧଳା ବଉଦ ଆଡ଼କୁ ଚାହିଁ ରହୁଥିଲା ।

କାଲି ଦିନ ଉଜାଠା ବେଳେ ସେ ଏହି ଛକର ଅନ୍ଧକୁ ଫୁଲାଏ ମୁହଁରେ ଦେଇ ପେଟେ ପାଣି ପିଇଥିଲା, ତା ପୁଅ ମୁହଁରେ ଦେବାପାଇଁ ସେଥିରୁ ମୁଠାଏ ରଖିଥିଲା । ସେତକ ମ୍ୟୁନିସିପାଲିଟି ପୋଖରୀର ପାଣି ସହିତ ଟିଣ ପାତ୍ରଟିରେ ଚକଟି ରାତରେ ପିଲାଟିକୁ ପିଆଇ ଦେଇଥିଲା । ରାତ ଭିତରେ ତାହା ଶେଷ ହୋଇଯାଇଛି ।

ଏଉଠା ତା ପକ୍ଷରେ ନୂଆ କଥା ନୁହେଁ । ଗତ ଦୁଇମାସ ହେଲା କ୍ଷୁଧା ସହିତ ଲଢ଼େଇ କରି ସେ ଚାଲି ଆସିଛି । ସେ ଜାଣେ ଏପରି ଭାବରେ ବେଶି ଦିନ ବଞ୍ଚି ହେବ ନାହିଁ; ବଞ୍ଚିବାର ଆଶା

ତାର ନ ଥିଲା; ତାର ଏକମାତ୍ର ଚିନ୍ତା ଏ ପିଲାଟି । ଏଇଟିର ହେବ କଅଣ ? ଏଇଟି ମୁହଁରେ ପାଣି ଟୋପାଏ ଦେବ କିଏ ? ଏଇଟି ଯଦି ଅଗେ ଯାଆନ୍ତା , ସେ ଶାନ୍ତିରେ ମରି ପାରନ୍ତା ।

ବେଲ ତିନିଟା ବାଜିଲା । ଛତ୍ରର ବେଢ଼ା ମୁହଁରେ ଶତ ଶତ ବୁଭୁକ୍ଷୁ ନରକଙ୍କାଳ ରୁଣ୍ଡ ହୋଇଗଲେ । ଫାଟକ ପାଖରେ ଜଗି ରହିଲେ ଦୁଇଜଣ ପୁଲିସ । ଗୋଟିଏ ଗୋଟିଏ କରି ସେମାନଙ୍କୁ ବେଢ଼ା ଭିତରକୁ ଛାଡ଼ି ଦିଆଗଲା । ଏ ସ୍ତ୍ରୀଲୋକଟି ପିଲାଟିକୁ ଧରି ପଛରେ ଠିଆ ହୋଇ ରହିଲା । କଙ୍କାଳମାନଙ୍କର ଏ ଗହଳି ଭିତରକୁ ପଶିବା କ୍ଷମତା ତାର ନଥିଲା । ଛୁଡ଼ା ହେବା ବେଳକୁ ତ ତାର ଗୋଡ ଟଳୁଥିଲା , ଗହଳି ଠେଲି ସେ ଯାଆନ୍ତା କିପରି ?

ଗତ ଦୁଇ ଦିନର ଅଭିଜ୍ଞତାରୁ ସେ ଜାଣେ, ଛତ୍ରରେ ଯେତେ ଲୋକଙ୍କୁ ଖାଇବାକୁ ଦେବାର ବ୍ୟବସ୍ଥା ଅଛି, ତାଠାରୁ ଅଧିକଙ୍କୁ ଭିତରକୁ ଛାଡ଼ି ଦିଆଯିବ ନାହିଁ । ସେ ଯଦି ବାହାରେ ରହିଯାଏ ? ସେ ଯଦି ବାଦ୍ ପଡ଼ିଯାଏ ? ନିଜ ପାଇଁ ଚିନ୍ତା ନାହିଁ; କିନ୍ତୁ ଏ ପିଲାଟି ? ସେ ଖାଇବ କଅଣ ? ସକାଳୁ ଏ ଯାଏଁ ତ ତା ପେଟରେ ଦାନା କଣିକାଏ ପଡ଼ି ନାହିଁ । ସେ ପାଦେ ପାଦେ ଅଗକୁ ଚାଲିଲା ।

ପାଖରେ ଗୋଟିଏ ବୁଢ଼ୀ । ସେ କହିଲା, "ସାରିଆ, ଅ— ମୋ ପଛେ ପଛେ ଅ ।"

ସାରିଆ ତା ସହିତ ଚାଲିଲା । ପୁଲିସମାନେ ତାକୁ ଛାଡ଼ି ଦେଲେ । ଭିତରକୁ ପଶି ସେ ପଦ୍ମଖଣ୍ଡେ ଧରି ବସି ପଡ଼ିଲା ।

ଆହୁରି ଧାଡ଼ି ନରକଙ୍କାଳ ପତ୍ର ପାଖରେ ବସିଥିଲେ । ସେମାନଙ୍କ ମୁଖରୁ ଫୁଟି ଉଠୁଥିଲା ଗୋଟାଏ ଅସ୍ୱାଭାବିକ ଉଲ୍ଲାସ

ଔତ୍ସୁକ୍ୟ ଶୃଙ୍ଖଳିତ ବ୍ୟାଘ୍ରକୁ ମାସେ କାଳ ଭୋକିଲା ଅବସ୍ଥାରେ ରଖି ସମ୍ମୁଖରେ ମାଂସ ଖଣ୍ଡେ ଧରିଲେ ତା ଚକ୍ଷୁରେ ଯେଉଁ ଲୋଲୁପତା ଫୁଟିଉଠେ , ଏମାନଙ୍କ ଚକ୍ଷୁରୁ ଫୁଟି ଉଠୁଥିଲା ସେହିପରି ଗୋଟାଏ ବ୍ୟଗ୍ରତା ।

ସାରିଆର ଦୃଷ୍ଟି ସେ ଅଡ଼କୁ ନ ଥିଲା । କିଛି ସମୟ ପାଇଁ ତାର ଦୃଷ୍ଟି ଧାଡ଼ିର ଏ ମୁଣ୍ଡ ସେ ମୁଣ୍ଡ ଯେପରି କାହାକୁ ଖୋଜି ବୁଲିଲା ।

ଜଣେ ଲୋକ ତା ଆଗରେ ଥିବା ପତ୍ର ଉପରେ ଖାଦ୍ୟ ନାମଧେୟ ପଦାର୍ଥରୁ ମୋଟାଏ ପକାଇ ଦେଇଗଲା । ତା ଦୃଷ୍ଟି ସେ ଅଡ଼କୁ ଫେରି ଆସିଲା ।

ସାରିଆ ତା ପିଲା ମୁହଁରେ ସେ ଜାଉରୁ ମୋଟାଏ ଦେଲା । ପିଲାଟି ଗିଳି ପାରିଲା ନାହିଁ । ତା ମୁହଁରେ ପାଣି ଟିକିଏ ଦେଲା । ବଡ଼ କଷ୍ଟରେ ସେତକ ଗିଳି ପିଲାଟି କାନ୍ଦି ଉଠିଲା ।

ପାଖରେ ବସିଥିବା ଗୋଟାଏ କଙ୍କାଳ ବିରକ୍ତ ହୋଇ ପାଟିକଲା, "ଭଲ ପିଲା ! ଖାଇବା ବେଳଟାରେ ରଡ଼ି କରୁଛି !!"

---

## ଦୁଇ

ମ୍ୟୁନିସପାଲିଟି ପୋଖରୀର ଆର ପାଖରେ—ଠିକ୍ ଅନ୍ନଛତ୍ରର ବିପରୀତ ଦିଗରେ—କଟକ ଟାଉନ ହଲ୍ । ଶରତ୍ ସନ୍ଧ୍ୟାର ଧୂସର ଆଲୋକ କ୍ରମେ କ୍ରମେ ଶାରଦୀୟା ସପ୍ତମୀର ଜ୍ୟୋତ୍ସ୍ନାରେ ପରିଣତ ହେଲା । ଟାଉନ୍ ହଲ୍ ଭିତରେ ବିଜୁଳିବତୀ ଜଳି ଉଠିଲା ।

ଗାଡ଼ି, ମଟର, ରିକ୍ସାରେ ବଡ଼ ବଡ଼ ଲୋକେ ଟାଉନ୍ ହଲରେ ଉପସ୍ଥିତ ହେଲେ । ଆଜି ଏଠାରେ ସଭା ହେବ । ସେଥିରେ ଆଲୋଚିତ ହେବ ଦେଶର ଖାଦ୍ୟପରିସ୍ଥିତି । ଯେଉଁମାନଙ୍କ ଘରେ ଖାଦ୍ୟ ଯଥେଷ୍ଟ ଅଛି, ବୁଭୁକ୍ଷା ସହିତ ଯେଉଁମାନେ କଳ୍ପନା ବିଳାସ ଦ୍ୱାରହିଁ କେବଳ ପରିଚିତ, ଯେଉଁମାନଙ୍କ ପକ୍ଷରେ ଅଭାବର ଅର୍ଥ ମୋଟର ଗାଡ଼ି ପାଇଁ ପେଟ୍ରୋଲ ଅଭାବ, ସୁନା ଦର୍ ବେଶି ହେବାରୁ ଗୃହିଣୀଙ୍କ ଶ୍ରୀଅଙ୍ଗରେ ଅତିରିକ୍ତ ଅଧିକ ଗହଣାର ଅଭାବ, ଦୁର୍ମୂଲ୍ୟ ହେବାରୁ ସିଗାରେଟ ଅଭାବ, ପର୍ଦ୍ଦା-ପ୍ରଥା ପ୍ରଚଳିତ ହେବାରୁ ଗୃହ ଉପରେ ଅଧିକ ଚଟାର ଅଭାବ, ଆଉ ନ ମିଳିବାରୁ ପଞ୍ଜାବୀ ପାଇଁ ମସଲିନ୍ କନାର ଅଭାବ—ଏହିପରି ଏବଂ ଏ ଧରଣର ଲୋକମାନେହିଁ ଏ ସଭାର ଶ୍ରୋତା ଆଉ ବକ୍ତା ।

ସଭାରେ କେବଳ ଯେ ଭଦ୍ରଲୋକମାନେ ଉପସ୍ଥିତ ଥିଲେ ତାହା ନୁହେଁ, ମହାମୂଲ୍ୟ ମହିଳାମାନେ ମଧ୍ୟ ସେଠାର ଶୋଭା ବର୍ଦ୍ଧନ କରୁଥିଲେ । ସେମାନେ ମଧ୍ୟ ଖାଦ୍ୟପରିସ୍ଥିତି ଆଲୋଚନାରେ ଯୋଗ ଦେବାକୁ ଆସିଥିଲେ; କିନ୍ତୁ ମନେ ହୁଏ, ଯଦି ଏ ସମସ୍ୟା ବିଷୟରେ ଆଲୋଚନା ପାଇଁ ଏ ମହିଳାମାନଙ୍କର ଗୋଟାଏ ପ୍ରତିନିଧି ଦଳ ବିଦେଶକୁ ପ୍ରେରିତ ହୁଅନ୍ତେ, ତେବେ ସେଠାର ଲୋକେ ଏମାନଙ୍କର ବପୁର ଆୟତନ ପ୍ରତି ଦୃଷ୍ଟି ପ୍ରଦାନ କରି ଖାଦ୍ୟାଭାବ ଦ୍ୱାରା କିପରି ଶରୀରରେ ମାଂସ ବୃଦ୍ଧି ହୋଇପାରେ ତାହା ହୃଦୟଙ୍ଗମ କରି ନ ପାରି ମାନସିକ ଗଣ୍ଡ-ଗୋଳର କରାଳ କବଳରେ ନିଷ୍ପତିତ ହୁଅନ୍ତେ ।

ସଭାଗୃହ ପରିପୂର୍ଣ୍ଣ । ସଭାପତି ହେବେ ଶେଠ୍ ମୂଳଚାନ୍ଦ ଚାନ୍ଦନଲାଲ୍ । ସିଂହଳ ଦ୍ୱୀପରେ ଖାଦ୍ୟାଭାବର ସମ୍ଭାବନା ଦେଖା

ଦେବାରୁ ଓଡ଼ିଶାରୁ ଯେଉଁ ଲକ୍ଷ ଲକ୍ଷ ମହଣ ଧାନ କାଢ଼ି ନିଆଯାଉ-ଥିଲା, ଯାହା ଫଳରେ ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷର କରାଳ କବଳରେ ପଡ଼ିଥିଲେ, ତାହାର ପ୍ରଧାନ ଏଜେଣ୍ଟ ଥିଲେ ଏହି ଶେଠ୍‌ଜୀ । ଏ ଧରଣର ମହତ୍‌ କାର୍ଯ୍ୟରେ ଏ ପ୍ରଦେଶର କେତେକ ଲୋକ ଲାଭ ଆକାରରେ କୋଟି କୋଟି ଟଙ୍କା ପାଇଥିଲେ । ସେମାନଙ୍କ ମଧ୍ୟରୁ ଏକା ଶେଠ୍‌ଜୀଙ୍କ ଭାଗରେ ଦୁଇମାସ ମଧ୍ୟରେ ପଡ଼ିଥିଲା ୨୦ ଲକ୍ଷ ଟଙ୍କା । ଏହି ଦୁଇ ମାସ ମଧ୍ୟରେ ଲକ୍ଷ ଲକ୍ଷ ଘରେ ହାହାକାର ପଡ଼ି ଯାଇଥିଲା ।

ବଦାନ୍ୟତା ବିଷୟରେ ମୂଳଚନ୍ଦଜୀଙ୍କର ଖ୍ୟାତି ଥିଲା । ପ୍ରତିଦିନ ସେ ଅନ୍ଧଛନ୍ଦଙ୍କୁ ୧୦ ସେର ଲେଖାଏ ଗୁଡ଼ଜଳ ପ୍ରଦାନ କରୁଥିଲେ । ଏହା ଉପରେ ପୁଣି ପ୍ରତି ରବିବାର ଦିନ ୩ ସେର ଗୁଡ଼ଜଳ ମୁଷ୍ଟି ଭିକ୍ଷା ଆକାରରେ ଦେଉଥିଲେ । ମାଜିଷ୍ଟ୍ରେଟ୍ ସାହେବ ହାତ ପତାଇଲେହିଁ ଯେ କୌଣସି ସତ୍‌କାର୍ଯ୍ୟ ପାଇଁ ୧୦୧ ଟଙ୍କା ଓ ଲାଟ ସାହେବଙ୍କର ଯେ କୌଣସି ପାଣ୍ଠିକୁ ୧୦୦୧ ଟଙ୍କା ଦେବା ତାଙ୍କ ଗାଦିର ଧରାବନ୍ଧା ନିୟମ । ଜାଣିବା ଶୁଣିବା ମହଲ ଆଶା କରୁଥିଲେ ଯେ, ବ୍ରିଟିଶ ଚକ୍ରବର୍ତ୍ତୀଙ୍କ ଜନ୍ମଦିନ ହେଉ ବା ନବବର୍ଷ ଉପଲକ୍ଷେ ହେଉ, ଉପାଧି ତାଲିକାରେ ଶେଠ୍‌ଜୀଙ୍କ ଭାଗ୍ୟରେ ଅନ୍ତତଃ ରାୟ ସାହେବ ଖେତାବ୍‌ଟା ଖସି ପଡ଼ିବ ।

ପ୍ରସ୍ତାବ ହେବା ପୂର୍ବରୁ ଶେଠ୍‌ଜୀ ସଭାପତି ଆସନ ଅଳଙ୍କୃତ କରି ପକାଇଲେ । ଗତ୍ୟନ୍ତର ନ ଦେଖି ରାଓ ବାହାଦୁର ଗିରୀଶ-ଚନ୍ଦ୍ର ମାନ୍ଧାତା ସଭାପତିଙ୍କ ଗୁଣାବଳୀ କୀର୍ତ୍ତନ ଆରମ୍ଭ କରିଦେଲେ ! ସେ କହିଲେ, ଦେଶର ଖାଦ୍ୟ ସମସ୍ୟା ବିଷୟରେ ଶେଠଜୀଙ୍କ ପରି ଯୋଗ୍ୟ ବ୍ୟକ୍ତି ଯେତେବେଳେ ଅଗ୍ରଣୀ ହୋଇ ବାହାରିଛନ୍ତି,

ସେତେବେଳେ ଦେଶର ଭବିଷ୍ୟତ୍ ଅତି ଉଜ୍ଜଳ, ଲୋକମାନଙ୍କ ଭାଗ୍ୟ ନିତାନ୍ତ ଆଶାପ୍ରଦ ବୋଲି କହିବାକୁ ହେବ ।

ଗୋଟିଏ ବାଳିକା ଶେଠଜୀଙ୍କ ଗଳାରେ ପୁଷ୍ପମାଳା ଅର୍ପଣ କରିବା ସମୟରେ ସଭାରେ ଘନ ଘନ କରତାଳି ଧ୍ୱନି ହୋଇଥିଲା; ଶେଠଜୀ ମଧ୍ୟ ସେଥିରେ ଉତ୍ସାହସହକାରେ ଯୋଗଦାନ କରିଥିଲେ । ତାପରେ ସେ ଉଠି କହିଲେ, ଲୋକମାନଙ୍କ ଦୁଃଖ ଦେଖି ସେ ଦୁଃଖିତ; କିନ୍ତୁ କିଅଣ କରାଯିବ ? ଭଗବାନଙ୍କ ଇଚ୍ଛା ଉପରେ ହାତ କାହାର ? ପୃଥିବୀ ଉପରକୁ ଦୁର୍ଯ୍ୟୋଗ ଯୋଗ ଆସିଛି । ଏଥିରେ ବା କାହାର ଦୋଷ ଅଛି ? ଏସବୁ ପଞ୍ଚଗ୍ରହ କୂଟର ଫଳ । ବର୍ତ୍ତମାନ ଧନୀ ଦରିଦ୍ର ସମସ୍ତଙ୍କ ଉପରକୁ ବିପଦ ଆସିଛି । ଲୋକେ ହରିନାମ କୀର୍ତ୍ତନ କରନ୍ତୁ; ଦରିଦ୍ରମାନଙ୍କ ଦୁଃଖ ଦୂର କରିବାରେ ସାହାଯ୍ୟ କରନ୍ତୁ । ପୃଥିବୀରେ ଶାନ୍ତି ଆଣିବା ଉଦ୍ଦେଶ୍ୟରେ ନାମଯଜ୍ଞ ଆରମ୍ଭ କଲେ ସେ ୫୦୦ ଟଙ୍କା ଦେବେ ବୋଲି କହିଥିଲେ । ଦୁର୍ଭିକ୍ଷ ସାହାଯ୍ୟ ପାଣ୍ଠିକୁ ୧୦୧ ଟଙ୍କା ଦାନ କରିବେ ବୋଲି ସେ ଯେତେବେଳେ ଘୋଷଣା କଲେ, ସେତେବେଳେ ସଭାରେ ପୁଣି ଘନ ଘନ କରତାଳି ଧ୍ୱନି ଉଠିଥିଲା ।

ଉକିଲ୍ ରାୟ ସାହେବ ଧରଣୀଧର ସେନାପତି ସରକାରଙ୍କ ପ୍ରିୟପାତ୍ର ବୋଲି ଜଣାଶୁଣା । ସେ ମନ୍ତ୍ରୀମାନଙ୍କ ସହିତ ଆଲୋଚନା କରନ୍ତି; ଲାଟ ସାହେବଙ୍କ ଭୋଜିକୁ ନିମନ୍ତ୍ରଣ ପାଆନ୍ତି; କଲେକ୍ଟର ସାହେବଙ୍କୁ ବରାବର ସଲାମ ଦିଅନ୍ତି; ଆଉ ସାନ ହେଉ, ବଡ଼ ହେଉ, ଯେ କୌଣସି ହାକିମହୁକୁମା ତାଙ୍କ ସାହାଯ୍ୟ ଲୋଡ଼ିଲେ, ତାଙ୍କ ପାଇଁ ଅକାତରରେ ତାଙ୍କର ବହୁମୂଲ୍ୟ ସମୟ ଓ ତତୋଽଧିକ ମୂଲ୍ୟବାନ ପେଟ୍ରୋଲ୍ ଖର୍ଚ୍ଚ କରନ୍ତି । ସେ ବିଧବା-ବିବାହ-ସହାୟକ-

ମଣ୍ଡଳୀର ସମ୍ପାଦକ, ସେବା-ସଂସର୍ଗ-ସମିତିର ସଭାପତି, ପଶୁକ୍ଳେଶ-ନିବାରଣୀ-ସଂସ୍କାର-ସମିତିର ସହକାରୀ ସଭାପତି , ଗୋ-ମାହାତ୍ମ୍ୟ ପ୍ରଚାରକ-ସଂଘର କୋଷାଧ୍ୟକ୍ଷ, ସନାତନ-ଧର୍ମ-ବିପ୍ଳବ ବିଧ୍ୱଂସିନୀ ସମାଜର ସହକାରୀ ସମ୍ପାଦକ, ବର୍ଣ୍ଣାଶ୍ରମ-ବିଦାରକ-ସଂସ୍କାର କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଉତ୍କଳ ନୃତ୍ୟକାରୀ ସଂସଦର ପୃଷ୍ଠପୋଷକ । କି ସରକାରୀ, କି ବେସରକାରୀ, କି ଅଧା ସରକାରୀ ସବୁ ସଭା ସମିତିରେ ଯୋଗ ଦେଇ ବକ୍ତୃତା ପ୍ରଦାନ କରିବାଦ୍ୱାରା ତାଙ୍କର ଦେଶପ୍ରୀତି ଯଥୋଚିତ ରୂପେ ପ୍ରତିପାଦିତ ହୋଇଥାଏ । ଓଡିଶାର ଖାଦ୍ୟ ସଙ୍କଟ ବିଷୟରେ 'ପୃଚ୍ଛାଧାରୀ' ନାମକ ସରକାରୀ ସାହାଯ୍ୟ ପ୍ରାପ୍ତ ପତ୍ରିକା ରେ ଦୁଇଥର ଦୁଇଟା ପ୍ରବନ୍ଧ ଲେଖି ସେ ପ୍ରମାଣିତ କରିଥିଲେ ଯେ, ଦେଶର ଦୁର୍ଭିକ୍ଷ ପଞ୍ଚଗ୍ରହ କୂଟର ପ୍ରତ୍ୟକ୍ଷ ଫଳ । ଏଥିପାଇଁ ସଦାଶୟ ବ୍ରିଟିଶ ସରକାର କୌଣସି ମତେ ଦାୟୀ ନୁହନ୍ତି—ଦାୟୀ ହୋଇ ନପାରନ୍ତି । ଯେଉଁ ଦାୟିତ୍ୱହୀନ ଓ ଖଳ ଲୋକେ ସରକାରଙ୍କୁ ଦାୟୀ କରିବା ପାଇଁ ଉଦ୍ୟମ କରୁଛନ୍ତି ବା ସେ ଦିଗରେ ପ୍ରଚେଷ୍ଟା ଚଳାଉଛନ୍ତି, ସେମାନେ ଏକାଧାରରେ ଦେଶଦ୍ରୋହୀ ଓ ରାଜଦ୍ରୋହୀ । ସେହି-ମାନଙ୍କ ଦୁର୍ବୁଦ୍ଧି ଯୋଗୁଁ ଲୋକେ ଦାନାଗଣ୍ଡାକ ନ ପାଇ ମୃତ୍ୟୁମୁଖରେ ପଡୁଛନ୍ତି । ଉକ୍ତ ପ୍ରବନ୍ଧରେ ସେ ପ୍ରାଞ୍ଜଳ ଭାବରେ ପ୍ରତିପାଦିତ କରିଥିଲେ ଯେ, ଯେଉଁମାନେ ଅର୍ଥନୀତି ଶାସ୍ତ୍ରର ପୁସ୍ତକଗତ ସୂତ୍ରକୁ ଆଶ୍ରୟ କରି ଦେଶରେ ଯଥେଷ୍ଟ ଖାଦ୍ୟ ସାମଗ୍ରୀ ନାହିଁ ବୋଲି ଦେଖାଉଛନ୍ତି, ବାହାରରୁ ଖାଦ୍ୟଦ୍ରବ୍ୟ ପଠାଇଲେ ଲୋକେ ଖାଇବାକୁ ନ ପାଇ ମରିବେ ବୋଲି କହୁଛନ୍ତି, ସେମାନେ ଅର୍ଥନୀତିର ଆଦ୍ୟ ଅକ୍ଷର ମଧ୍ୟ ଜାଣନ୍ତି ନାହିଁ । ଯେତେବେଳେ ସରକାର ଘୋଷଣା କରୁଛନ୍ତି ଯେ, ଦେଶରେ ଧାନଧନ ଭୂରି ରହିଛି, ସେତେବେଳେ ତାହାହିଁ ଅଭ୍ରାନ୍ତ ସତ୍ୟ । ଦେଶର ଉନ୍ନତି ପାଇଁ ଧାନ ଅପେକ୍ଷା

ଧନ ବେଶି ଲୋଡ଼ା । ତେଣୁ ଧାନ ଦେଇ ଧନ ଅଣିବା ଦ୍ୱାରା ବ୍ରିଟିଶ ସରକାର ଦେଶର ଭବିଷ୍ୟତକୁ ଉଜ୍ଜ୍ୱଳ କରିବା ପାଇଁ ବ୍ୟବସ୍ଥା କରିଛନ୍ତି ମାତ୍ର । ସେ ପୁଣି ଲେଖିଥିଲେ, ଲୋକେ ସମୟ ସମୟରେ ଖାଇବାକୁ ପାଉ ନାହାନ୍ତି ଏ କଥା ସତ୍ୟ ହେବା ସମ୍ଭବ; ମାତ୍ର ସେମାନେ ଖାଦ୍ୟାଭାବ ଫଳରେ ମୃତ୍ୟୁ ମୁଖରେ ପତିତ ହେଉଛନ୍ତି, ଏହା ସତ୍ୟ ନୁହେଁ—ସତ ହୋଇ ପାରେନା । ଖାଇବାକୁ ନପାଇ ମରୁଛନ୍ତି ବୋଲି ଯଦିବା ଧରି ନିଆଯାଏ, ତେବେ ମଧ୍ୟ ସେମାନଙ୍କ ସଂଖ୍ୟା କଲେରା, ମ୍ୟାଲେରିଆ ଆଦି ରୋଗରେ ମରୁଥିବା ଲୋକଙ୍କ ସଂଖ୍ୟାର ସହସ୍ରାଂ-ଶରୁ ମଧ୍ୟ ଏକାଂଶ ନୁହେଁ । ତଥାପି ଏଥିପାଇଁ ବ୍ରିଟିଶ ଶାସକଙ୍କୁ କୌଣସିମତେ ଦାୟୀ କରିବା ସମ୍ଭବ ନୁହେଁ । ସେ ଘୋଷଣା କରିଥିଲେ, ଲୋକେ ଖାଇବାକୁ ପାଉନାହାନ୍ତି ବା କାଁ ଭାଁ, କଦବା କେଉଁଠି ଖାଦ୍ୟାଭାବ ଯୋଗୁଁ ମରୁଛନ୍ତି, ଏହା ସତ୍ୟ ବୋଲି ମାନି ନେଲେ, ଏଥିରୁ କଅଣ ପ୍ରମାଣିତ ହେଉଛି ? ଏଥିରୁ ପ୍ରମାଣିତ ହେଉ ନାହିଁ କି ଯେ, ଏଥିପାଇଁ ଦାୟୀ ସେମାନଙ୍କ ଭାଗ୍ୟ, ସେମାନଙ୍କ ଅଯୋଗ୍ୟତା ଏବଂ ସର୍ବୋପରି ପଞ୍ଚଗ୍ରହ କୂଟର ପ୍ରତ୍ୟକ୍ଷ ପ୍ରଭାବ ? ବୋଲିବା ବାହୁଲ୍ୟ ଯେ, ସରକାରଙ୍କ ଉଚ୍ଚ କର୍ତ୍ତୃପକ୍ଷ-ମଣ୍ଡଳୀ ଏ ସନ୍ଦର୍ଭର ଇଂରାଜୀ ଅନୁବାଦ ପାଠକରି ଏତେ ମୁଗ୍ଧ ହୋଇ ଯାଇଥିଲେ ଯେ, ପ୍ରଚାର ବିଭାଗ ଜରିଆରେ ଏଥିରୁ ପଚିଶ ହଜାର ପ୍ରଚାରପତ୍ର ଛପାଇ ବାଣ୍ଟିବା ଦିଗରେ ବ୍ୟବସ୍ଥା କରିଥିଲେ । ପ୍ରତ୍ୟେକ ଥାନାକୁ ଏଥିରୁ ୧୦୦ । ୨୦୦ ଖଣ୍ଡ ପଠାହୋଇଥିଲା, ସେଥିରୁ ଖଣ୍ଡେ ଲେଖାଏଁ ଗାଁ ଗହଳରେ ଥିବା ପ୍ରତି ସରକାରୀ ଅଫିସର ନୋଟିସ ପଟାରେ ମରା ହୋଇଥିଲା, ଅବଶିଷ୍ଟତକ ଖବର-କାଗଜ ନ ମିଳିବା ସ୍ଥଳେ, ରଦ୍ଦି କାଗଜ ଯେଉଁ ସବୁ କାର୍ଯ୍ୟରେ ଲାଗିଥାଏ, ଥାନା ଦାରୋଗା, ଇଉନିୟନ୍ ପ୍ରେସିଡେଣ୍ଟ, ଦଫାଦାର

ଚୌକିଦାର 'ବା ଏମାନଙ୍କ ପ୍ରିୟ୍ପାତ୍ରୀତ ବନ୍ଧୁବାନ୍ଧବଙ୍କ ଘରେ ସେପରି ବା ସେ ଧରଣର କାମରେ ବ୍ୟବହୃତ ହୋଇଥିଲେ ।

ଯେଉଁ ସଭାରେ ଯୋଗ ଦେଲେ ଲୋକେ ହଇରାଣରେ ପଡ଼ନ୍ତି, ଜେଲକୁ ଟଣା ହୁଅନ୍ତି, ଯେଉଁ ସଭାରେ ଉପସ୍ଥିତ ହେଲେ ଲୋକଙ୍କ ନାମ ସି. ଆଇ. ଡ଼ି ଙ୍କ ଟୀପା ଖାତାରେ ଉଠିଯାଇ ପାରେ, ସରକାରଙ୍କ ଅନୁରାଗ ଠିକିଏ ମଉଳ ଯିବାର ଆଶଙ୍କା ଥାଏ, ସେ ଧରଣର ସଭା-ସମିତିକୁ ଛାଡ଼ି ପ୍ରତ୍ୟେକ ସାଧାରଣ ସଭାରେ ଯୋଗଦେବା ରାୟ ସାହେବ ଧରଣୀର ସେନାପତିଙ୍କ ଅଭ୍ୟାସ । ଖାଦ୍ୟ ସମସ୍ୟା ଆଲୋଚନା ସଭା । ସେଥିରେ ସହରର ମାନ୍ୟଗଣ୍ୟ ଲୋକେ ଯୋଗ ଦେଇଥିଲେ । ଏଥିରେ ଦେହର ମଳିଚମ ଉପରେ ମଧ୍ଯ ଆଘାତ ଲାଗିବାର ଅଣୁମାବ ଆଶଙ୍କା ନ ଥିଲା । ପରନ୍ତୁ ଯୋଗ ଦେଇଥିବା ଲୋକଙ୍କ ପ୍ରତି ସରକାର ବାହାଦୁରଙ୍କ କୃପା-କଟାକ୍ଷ ଆକର୍ଷିତ ହେବା!ର ଯଥେଷ୍ଟ ଆଶା ଥିଲା । ଏଥିରେ ରାୟ-ସାହେବ ପୂରା ଉତ୍ସାହ ସହକାରେ ଯୋଗଦାନ କରି ପ୍ରଥମ ବକ୍ତା ରୂପେ ସମ୍ମାନିତ ନ ହୁଅନ୍ତେ ବା କେତେବେ ?

ଜ୍ୱାଳାମୟୀ ବକ୍ତୃତାଜାଲ ବିସ୍ତାର କରି ସେ କହିଲେ, ଖାଦ୍ୟ ସମସ୍ୟା, ଖାଦ୍ୟ ସମସ୍ୟା ବୋଲି ଦେଶସାରା ଗୋଟାଏ ହୁରି ପଡ଼ିଯାଇଛି । ଏହାର ଅର୍ଥ କଅଣ ? ସବୁବର୍ଷ, ସବୁ ଦିନେ ସବୁଲୋକ କଅଣ ମଉଜମଜଲିସ୍ କରି ଖାଇବାକୁ ପାଆନ୍ତି ? ଗାଆଁ ଗହଳରେ, ଏପରିକି ଏ ସହରରେ କଅଣ ସବୁ ବର୍ଷ ସବୁ-ଦିନେ ଲୋକଙ୍କୁ ଖାଦ୍ୟାଭାବ ଘଟେ ନାହିଁ ? ସବୁ ବର୍ଷ ସବୁଦିନେ କଅଣ ଲୋକେ ଖାଇବାକୁ ନ ପାଇ ମରନ୍ତି ନାହିଁ ? ତେବେ ଆଜ ଏହା ଗୋଟାଏ 'ସମସ୍ୟା' ହେଲା କିପରି ? ଏହାକୁ 'ସମସ୍ୟା'

ଡବାଲ କରୁଛନ୍ତି କିଏ ? ଦୁଷ୍ଟ ଗ୍ୟାଙ୍ଗ୍ ଏ ଦେଶରେ ଦଳେ ଲୋକ ଅଛନ୍ତି, ସରକାରଙ୍କ ବିରୁଦ୍ଧରେ ଲାଗିବା, ସରକାରଙ୍କୁ ନିନ୍ଦା କରିବା ଯେଉଁମାନଙ୍କ ପେଷା । ଏମାନେ ନିଷ୍କର୍ମା, ଏମାନେ ବେକାର, ଏମାନଙ୍କର ରୋଜଗାରଧନ୍ଦା କିଛି ନାହିଁ । ସରକାର ଆମର ଏତେ ଉପକାର କରୁଛନ୍ତି, ତାହା ସତ୍ତ୍ୱେ ଯେଉଁମାନେ କୃତଘ୍ନ, ଯେଉଁମାନେ ନିମକହାରାମ, ଯେଉଁମାନେ ତାଙ୍କ ବିରୁଦ୍ଧରେ ଲାଗନ୍ତି, ସେମାନଙ୍କର ଏହି ପାପ, ଏହି ଦୁଷ୍କର୍ମ ଯୋଗୁଁ ଦେଶର ଶିରୀ ତୁଟିଯାଉଛି । ସେମାନଙ୍କ ମଧ୍ୟରୁ ଗୁଡ଼ାକୁ ସରକାର ଜେଲରେ ପୂରି ବଡ଼ ଭଲ କାମ କରିଛନ୍ତି; କିନ୍ତୁ ସେମାନଙ୍କର ସାଙ୍ଗୋପାଙ୍ଗ ଭାଇବନ୍ଧୁ ବାହାରେ ରହିଛନ୍ତି । ବରାବର ସେମାନେ ସରକାରଙ୍କ ବିରୁଦ୍ଧରେ ପ୍ରଚାର ଚଳାଉଛନ୍ତି । ସେମାନଙ୍କ କାର୍ଯ୍ୟକଳାପ ଯୋଗୁଁ ଦେଶରେ ସବୁଦିନ ଯେଉଁ ଖାଦ୍ୟାଭାବ ରହିଥାଏ, ତାହା ଗୋଟାଏ ସମସ୍ୟାରେ ପରିଣତ ହୋଇଛି । ଏହା ସମସ୍ୟା ନୁହେଁ ଗୋଟାଏ ବିରାଟ ଜିନିଷ ନୁହେଁ । ଯଦି ଆମେ ସମସ୍ତେ ସରକାରଙ୍କ ସହିତ ସହଯୋଗ କରିବା. ଏପରି ଗୁଡ଼ାଏ ତୁଣ୍ଡରଡ଼ି କରି ସରକାରଙ୍କୁ ବିବ୍ରତ ନ କରିବା, ତେବେ ଏ ସମସ୍ୟା ଅପେ ଅପେ ଉଭେଇ ଯିବ, ଲୋକେ ସୁଖଶାନ୍ତିରେ ରହିବେ ।

ରାୟ ସାହେବ ଧରଣୀଧର ସେନାପତିଙ୍କ ବାଗ୍ମିତା ଫଳରେ ସଭାରେ ଘନ ଘନ କରତାଳି ଧ୍ୱନି ପଡ଼ିଗଲା ।

ତା'ପରେ ଉଠିଲେ ମିଷ୍ଟର ସଦାନନ୍ଦ ମିଶ୍ର, ଏଡ଼ଭୋକେଟ । ସେ ବର୍ଣ୍ଣନା କଲେ ଯେ, ଖାଦ୍ୟ ସମସ୍ୟା ହୁଏତ ଅଛି । ଏହାର ପ୍ରତିବାଦ କରିବାକୁ ଯିବା ବୃଥା । ଏଥିପାଇଁ କିଏ ଦାୟୀ, ତାହା ଜଣା ପଡ଼ିଲେ ସମସ୍ୟାର ଗୁରୁତ୍ୱ ଅଧେ କମିଯିବ । କଥା ଉପରେ

ଜୋର ଦେଇ ଟେବୁଲ୍ ଉପରେ ମୁଷ୍ଟି ଆଘାତ କରି ସେ ଘୋଷଣା କଲେ, ଏଥିପାଇଁ କେବଳ ଦାୟୀ ଯେଉଁମାନେ ଖାଦ୍ୟାଭାବ ହେଉଛନ୍ତି । କେହି କେହି ନିର୍ଗଲା ଲୋକେ ପ୍ରଚାର କରୁଛନ୍ତି, ସରକାର ଆମ ପ୍ରଦେଶ ବାହାରକୁ ଖାଦ୍ୟ ଶସ୍ୟ ପଠାଇ ଦେବାରୁ ଏ ବିପତ୍ତି ପଡ଼ୁଛି । ଏହା ଭୁଲ—ନିତାନ୍ତ ଭୁଲ । ଅବହମାନ କାଳରୁ ବେପାରବାଣିଜ ଚଳୁଛି; ଅବହମାନ କାଳରୁ ଖାଦ୍ୟଶସ୍ୟ ପ୍ରଦେଶ ବାହାରକୁ ଯାଉଛି । ଏଥିରେ ତ ଖାଦ୍ୟ ସମସ୍ୟା ଏତେ ଗୁରୁତର ହେଉ ନ ଥିଲା । ଅସଲ୍ କଥା ହେଉଛି, ଏ ବର୍ଷ ଧାନ କମ୍ ହୋଇ ଥିଲା, ପୁଣି ଟଙ୍କାରେ ୧୨ ସେର ହୋଇଗଲା । ଲୋକେ କିଛି ଧାନ ବିକି ମଉଜମଜଲିସ୍ କଲେ; ବାକିତକ ଖାଇ ଦେଲେ । ବର୍ତ୍ତମାନ ସେମାନେ ଖାଇବାକୁ ନ ପାଇଲେ ତାଙ୍କଛଡ଼ା ଦାୟୀ ଆଉ କିଏ ? ଏ ଅବସ୍ଥାରେ ସରକାର ବା କଅଣ କରନ୍ତେ ? ତାଙ୍କର ଦୋଷ କଅଣ ? ମୁଁ ରାୟ ସାହେବଙ୍କ ପରି ପଞ୍ଚଗ୍ରହ କୂଟରେ ବିଶ୍ୱାସ କରେନା ।

ଏ ମନ୍ତବ୍ୟ ଦ୍ୱାରା ରାୟ ସାହେବ ଧରଣୀଧର ସେନାପତି ମନେ କଲେ ଯେ, ତାଙ୍କର ସମ୍ମାନ କ୍ଷୁଣ୍ଣ ହେଉଛି । ସେ ଭ୍ରୁକୁଞ୍ଚନ କରି ପକାଇଲେ, "ବିଶ୍ୱାସ ନ କରି ଆପଣ ଭୁଲ କରୁଛନ୍ତି ।"

ମିଷ୍ଟର ମିଶ୍ର ସେ ଆଡ଼କୁ ବିଶେଷ ଦୃଷ୍ଟି ନ ଦେଇ, ନିଜ ଉତ୍ତେଜନାରେ ନିଜେ ପରିଚାଳିତ ହୋଇ କହିଗଲେ, 'ଗ୍ରହଫ୍ରହ ଏ ସବୁ ବାଜେ କଥା । ଗ୍ରହମାନେ ଦୋଷୀ ନୁହନ୍ତି । ସରକାର ଦୋଷୀ ନୁହନ୍ତି—ଦୋଷୀ ସେହି ଗରିବଗୁଡ଼ାକ । ଯେଉଁମାନେ କଟକର ବଜାର, ହାଟ ଗଳି କନ୍ଦରେ ଦଳ ଦଳ ହୋଇ ବୁଲୁଛନ୍ତି ଭିକ ମାଗି ଗୃହସ୍ଥମାନଙ୍କୁ ବ୍ୟତିବ୍ୟସ୍ତ କରୁଛନ୍ତି, ନାନାପ୍ରକାର

ରୋଗର ଜୀବାଣୁ ଗୃହଅଡ଼େ ବାଣ୍ଟିଦେବା ଦ୍ୱାରା ସହରର ସ୍ୱାସ୍ଥ୍ୟ ଖରାପ କରୁଛନ୍ତି । ବଙ୍ଗ ପ୍ରଦେଶର ସରକାର ଯେପରି ଭିକ୍ଷୁକ ବିତାଡ଼ନ ଅଇନ ଜାରିକରି କଲିକତା ସହରରୁ ଜବରଦସ୍ତି ଭିକ୍ଷୁକମାନଙ୍କୁ ତଡ଼ ଦେଉଛନ୍ତି, ସଦାଶୟ ଓଡ଼ିଶା ସରକାର ମଧ୍ୟ ସେହିପରି ଅଇନ କରି କଟକ ସହରରୁ ଭିଖାରୀମାନଙ୍କୁ ଘଉଡ଼ ଦିଅନ୍ତୁ । ଏ କଥାରେ ମଧ୍ୟ ସଭାରେ ଘନ ଘନ କରତାଳି ପଡ଼ିଗଲା ।

ତତ୍ପରେ ଗାତ୍ରୋତ୍‌ଥାନ କଲେ ନାରୀନେତ୍ରୀ ଶ୍ରୀମତୀ ସୌଦାମିନୀ ଗ୍ଲେଟରାୟ । ଆଖିରେ ଚଷମା ଓ ମୁଖରେ ପାଉଡ଼ର ବିମଣ୍ଡିତା ହୋଇ ରାଜହଂସର ବର୍ଣ୍ଣଗୌରିମାକୁ ସେ ସଭାଗୃହ ମଧ୍ୟକୁ ଅବାହନ କରି ଅଣୁଛନ୍ତି ବୋଲି ସେଠାରେ ଉପସ୍ଥିତ ଥିବା କବି-ସ୍ୱଭାବପନ୍ନ ଦର୍ଶକମଣ୍ଡଳୀ ମନରେ ଉତ୍ପ୍ରେକ୍ଷା ଉପମା ଉଦିତ ହୋଇଥିଲା । ଏ ମହାଶୟା ବକ୍ତୃତା ପ୍ରଦାନ କରିବାରେ ସୁଦକ୍ଷା ବୋଲି ସମ୍ବାଦପତ୍ରମାନଙ୍କରେ ଏକାଧିକ ବାର ପ୍ରକାଶିତ ହୋଇ-ଥିଲା । ପୁରୁଷର ଖାଦ ସ୍ୱର ସହିତ ନାରୀକଣ୍ଠର ଧୈବତ ବା ନିଖାଦ ସ୍ୱର ମିଶି ଯେ ଅପୂର୍ବ ସ୍ୱରବ୍ୟଞ୍ଜନା ସୃଷ୍ଟି କରିଥାଏ, ତାଙ୍କର କଣ୍ଠସ୍ୱର ଅନେକ ପରିମାଣରେ ସେହି ଧରଣର ବୋଲି ସଙ୍ଗୀତ-ବିଶାରଦମାନେ ଅନୁଭବ କରନ୍ତି ।

ସେ କହିଲେ, ବର୍ତ୍ତମାନ ଗରିବମାନେ ବଡ଼ କଷ୍ଟରେ ଅଛନ୍ତି । ତାଙ୍କ ଦୁଃଖ ଦେଖିଲେ ଅଖିରେ ଲୁହ ରହେ ନାହିଁ ।

କଥା ଅନୁସାରେ କାର୍ଯ୍ୟ । ଏହା କହିବା ସଙ୍ଗେ ସଙ୍ଗେ ସେ ଯତ୍ନସହକାରେ ଚଷମା ଟେକି ସୌଗନ୍ଧଯୁକ୍ତ ରୁମାଲରେ ନିଜ ଅଖିକୁ ପୋଛିଲେ । ତାଙ୍କ ଦେଖାଦେଖି ସଭାରେ ଉପସ୍ଥିତ ଥିବା ଆଉ କେତେକ ମହିଳା ମଧ୍ୟ ସେ ଅଚରଣ ଅନୁକରଣ କରିଥିଲେ ।

ସଭାରେ ଉପସ୍ଥିତ ଥିବା ଭଦ୍ରମହୋଦୟ ଓ ମହିଳାମାନଙ୍କୁ ଏସ ନିବେଦନ କରିଥିଲେ ଯେ, ସେମାନେ ଟିକିଏ ଟିକିଏ ସ୍ୱାର୍ଥ-ତ୍ୟାଗ କରି ଗରିବମାନଙ୍କ ଅବସ୍ଥା ପ୍ରତି ସହାନୁଭୂତି ପ୍ରଦର୍ଶନ କରନ୍ତୁ ।

ଏହି ସମୟରେ ସଭାଗୃହ ପଛରେ ବସିଥିବା ଗୃହ ଛଅଜଣ ଯୁବକଙ୍କ ଭିତରେ ଟିକିଏ ଉତ୍ତେଜନା ସଞ୍ଚାରିତ ହେବା ପରି ଜଣା ପଡ଼ିଥିଲା । ଏମାନେ କୁଆଡ଼େ କମିନଷ୍ଟୀ ଦଳର ଲୋକ । ଏମାନେ କି ଏ ଖାଦ୍ୟ ସମସ୍ୟା ବିଷୟରେ ମୁଣ୍ଡଖେଳାଇ ସ୍ଥିର କରିଛନ୍ତି ଯେ ଲୋକ ତ କମିନଷ୍ଟୀ ବୋଇଲେ ସାପ କି ବେଙ୍ଗ କିଛି ବୁଝନ୍ତି ନାହିଁ । ଯୁଦ୍ଧ ଯୋଗୁଁ ତ ନିଜ ନିଜ ମତ ପ୍ରକାଶ ସମ୍ଭବ ହେଉ ନାହିଁ । ଖାଦ୍ୟ କଥାଟା ତ ଲୋକଙ୍କ ଭିତରେ ବର୍ତ୍ତମାନ ଗୋଟାଏ ଅଶାନ୍ତି ସୃଷ୍ଟି କରିଛି । ଏତିକିବେଳେ ଏ ବିଷୟ ଧରି ଗୋଟାଏ ଗଣ୍ଡଗୋଳ ସୃଷ୍ଟି କଲେ ଲୋକେ ଯାହା ସେମାନଙ୍କୁ ଦେଶଦ୍ରୋହୀ ବୋଲି କହୁଛନ୍ତି, ସେଥିରୁ ସେମାନେ ପରିତ୍ରାଣ ପାଇଯିବେ । ଏହାଛଡ଼ା ଭୋଟ ବେଳକୁ ସେମାନଙ୍କର ସୁବିଧା ହେବ ।

ସେମାନଙ୍କ ମଧ୍ୟରୁ କମରେଡ୍ ଶିବସୁନ୍ଦର ଜେନା ସଭାପତିଙ୍କ ଆଗରେ ପଡ଼ିଥିବା ଟେବୁଲ୍ ପାଖକୁ ଯାଇ 'ସଭାପତି ମହାଶୟ, ମୁଁ କିଛି କହିବାକୁ ଚାହେଁ' ବୋଲି ଅନୁମତି ମାଗିବା ସଙ୍ଗେ ସଙ୍ଗେ ବକ୍ତୃତା ଆରମ୍ଭ କରିଦେଲେ ! ସେ କହିଲେ, ମୁନାଫାଖୋରମାନଙ୍କ ଯୋଗୁଁ ଏ ଖାଦ୍ୟସମସ୍ୟା ଉଠିଛି । ମହଜୁଦ୍‌ଦାରମାନେ ସବୁ ଖାଦ୍ୟ ଜିନିଷ ଲୁଚାଇ ରଖୁଛନ୍ତି । ଏ ମୁନାଫାଖୋର ଆଉ ମହଜୁଦ୍‌ଦାରମାନଙ୍କୁ ଧ୍ୱଂସ କରିବାକୁ ହେବ, ଜାତୀୟ ସରକାର ସ୍ଥାପନ କରିବାକୁ ହେବ, ହିନ୍ଦୁ-ମୁସଲମାନ ଏକତା ପ୍ରତିଷ୍ଠିତ କରିବାକୁ ହେବ,

ନେତାମାନଙ୍କୁ ମୁକ୍ତ କରିବାକୁ ହେବ । ତାହା ହେଲେ ଖାଦ୍ୟ ସମସ୍ୟାର ପ୍ରକୃତ ସମାଧାନ ସମ୍ଭବ ହେବ ।

ଏହି ସମୟରେ ସଭା ପଛଅଡ଼େ ବସିଥିବା ତାଙ୍କ ଦଳର ଚାରି ପାଞ୍ଚଜଣ ଲୋକ ଏକ ସ୍ୱରରେ ପାଟିକଲେ, ମୁନାଫାଖୋର—ଧ୍ୱଂସ ହେଉ, ମହଜୁଦାର—ଧ୍ୱଂସ ହେଉ, ଅମର ପାର୍ଟି—ଜିନ୍ଦାବାଦ୍ ।

ସଭାପତି ଦେଖିଲେ, ସଭାରେ ଗଣ୍ଡଗୋଳ ହେବାର ଆଶଙ୍କା ଅଛି । ଏହି ସମୟରେ ଅନେକ ମାନ୍ୟଗଣ୍ୟ ଲୋକ ମଧ୍ୟ ନିଜ-ନିଜର ହାତଘଡ଼ିକୁ ଚାହିଁଲେ । କାରଣ ମିଷ୍ଟର ପରିଡ଼ାଙ୍କ ଘରେ ଗୋଟାଏ ଡ଼ିନର୍ ପାର୍ଟି; ମନ୍ତ୍ରୀ ଓ ବଡ଼ ବଡ଼ ହାକିମହୁକୁମା ନିମନ୍ତ୍ରିତ ହୋଇଛନ୍ତି; ସେଠାକୁ ନ ଗଲେ ନ ଚଳେ ।

ସଭା ଭଙ୍ଗ ହେଲା । ଶେଠଜୀ ତାଙ୍କ ମୋଟର ଗାଡ଼ିରେ ବସିଲେ । ଡ୍ରାଇଭର ସୁଇଚ୍ ଟିପି ଦେବାକୁ ଅଠଦଶ ଜଣ ନରକଙ୍କାଳ ସଭାରୁ ଫେରୁଥିବା ଲୋକଙ୍କୁ 'ବାବୁ, ପଇସାଟିଏ', 'ବାବୁ, ପଇସାଟିଏ' ବୋଲି ମାଗୁଥିବାର ଦେଖାଗଲା ।

ଡ୍ରାଇଭର ହର୍ଣ୍ଣ ବଜାଇଲା । ଏ ଗୁଡ଼ାକର ମଧ୍ୟ ପ୍ରାଣର ମାୟା ଅଛି । ମୋଟର ଆଗରୁ ଅଡ଼େଇ ହୋଇଗଲେ । ଶେଠଜୀଙ୍କ ଗାଡ଼ି ଚାଲିଗଲା ।

ତାପରେ ଯେଉଁ ମୋଟର ଆସିଲା, ସେଥିରେ ଥିଲେ ଶ୍ରୀମତୀ ସୌଦାମିନୀ ଷ୍ଟୋଟସ୍ୱାମୀ ଓ ସ୍ୱାମୀ ସାହେବ ଧରଣୀଧର ସେନାପତି । ଏ ନରକଙ୍କାଳଗୁଡ଼ାକ ଏଣେ ତେଣେ ବୁଲି ରାସ୍ତା ଅବରୋଧ କରୁଥିବାରୁ ଏମାନେ ବିରକ୍ତ ହେଲେ; କାରଣ ଡ଼ିନର୍ ପାର୍ଟି ଡେରି ହୋଇଯାଉଥିଲା ।

କମେ କମେ ଟାଉନହଲ୍ ଜନଶୂନ୍ୟ ହେଲା । ଚପରାସୀ ଲାଇଟ୍ ଲିଭାଇ ଦେଇ ଡବାଟ ବନ୍ଦ କଲା । ସେଠି ପିଣ୍ଡାରେ ନର-କଙ୍କାଳଗୁଡ଼ିକ ଛୁଣ୍ଡା କନା ପାରି ଗଡ଼ିପଡ଼ିଲେ ।

ଗୋଟାଏ ନରକଙ୍କାଳ ଅନ୍ୟ ଗୋଟାକୁ ପଚାରିଲା, 'କରେ ଭାଇ, କେତେ ପାଇଲୁ ?"

ଅରଟା ଉତ୍ତର ଦେଲା, 'ନାହିଁରେ ଭାଇ, କିଛି ମିଳିଲା ନାହିଁ ।'

— 'ଏମାନେ ପରା ଖାଇବାକୁ ଦେବା ବିଷୟରେ ସଭା କରୁଥିଲେ ?'

'କେ ଜାଣେ ? ଖାଇବାକୁ ଦେବାପାଇଁ କି ନିଜେ ଖାଇବା ପାଇଁ ?'

---

## ଭୟ

ରମ୍ଭାଠାରୁ ଗଞ୍ଜାମ ଅଡ଼କୁ ଯେଉଁ ନାଲି ସଡ଼କ ପଡ଼ିଛି ତାହାରି କଡ଼ରେ ଗାଆଁ ଖଣ୍ଡେ—ପଧାନପଲ୍ଲୀ । ତା ପଛଅଡ଼ୁ ବୁଦ୍‌ବୁଦ୍‌କିଆ ଜଙ୍ଗଲ୍ କମେ କମେ ଗହଳିଆ ହୋଇ ପାହାଡ ତଳ ବଣ ସହିତ ମିଶି ଯାଇଛି । ସାମନାରେ ଗମ୍ଭୀର ନୀଳ ଚିଲିକା କୂଳକୁ ଲାଗିଛି ।

ଗାଆଁ ଖଣ୍ଡି ବଡ଼ ନୁହେଁ । ପଚିଶ ସାଟିଏ ଘର ଗୃହୀ, ଅଳ୍ପ କେତେ ଘର ଗଉଡ଼ । ମଝିରେ ଗାଆଁ କାର୍ଯ୍ୟୀ ସୀମାଦ୍ରି ପ୍ରଧାନଙ୍କ ଚୂନଧଉଳା ଘର ।

ଚାଷୀମାନେ ଚାଷ କରନ୍ତି, ଗାଈଗୋରୁ ପାଳନ୍ତି, ଅଳ୍ପ ବର୍ଷର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଗଣ୍ଡାଏ ମୋଟ ଖାଇ, ଖଣ୍ଡେ ମୋଟ ପିନ୍ଧି ଚଳି ଯାଆନ୍ତି । ଗଉଡ଼ମାନେ ଗାଈ ରଖନ୍ତି, ଛେଳି ରଖନ୍ତି, ଚାଷ କରନ୍ତି, ଆନନ୍ଦରେ ରହନ୍ତି । ସୀମାନ୍ତ ପ୍ରଧାନ ବଡ଼ ଚାଷୀ, ଗ୍ରାମର ନ୍ୟାୟନିଶାପ ବୁଝେ, ଧାନ ଓ ବେଳେ ବେଳେ ଟଙ୍କା ଋଣ ଦିଏ, ବର୍ଷରେ ଥରେ—ଦୋଳ ପୂନେଇକୁ—ଚୂନରେ ଘର ଧଉଳାଇ ଦିଏ, ଗାଆଁର ମୁଣ୍ଡିଆଳ ଭାବରେ ସୁଖରେ ଥାଏ । ନିରବଚ୍ଛିନ୍ନ ଶାନ୍ତି-ସନ୍ତୋଷ ଭିତରେ ଗାଆଁ ଲୋକେ ବର୍ଷସାରା ଚଳନ୍ତି ।

ଭାରତବର୍ଷର ସାତ ଲକ୍ଷ ଗାଆଁ ଭିତରୁ ପଧାନପଲ୍ଲୀ ଗୋଟିଏ । ଅନ୍ୟ ସବୁ ଗାଆଁର ଲୋକଙ୍କ ପରି ଏମାନଙ୍କ ଆଶା ଖୁବ୍ କମ୍, ଆକାଙ୍କ୍ଷା ସୀମାବଦ୍ଧ; ଏମାନେ ଅତି ଅଳ୍ପରେ ସନ୍ତୁଷ୍ଟ । ଯେଉଁ ଦିନ ଗାଆଁର ସବୁ ମିଶିପ ପିଲାଏ ମିଶି ଶଲବା କୂଳରେ କଣ୍ଡିଆ ଖଣ୍ଡିକରୁ ପାଣି ବୋହି ଚାରିପାଞ୍ଚ ବିଶା ମାଛ ଧରି ଆଣନ୍ତି, ସେ ଦିନ ଗାଆଁର ଘରେ ଘରେ ନାକାନାହାଢବ ପରି ଆନନ୍ଦ ଉତ୍ସବ ଲାଗିଯାଏ । ଯେଉଁ ବର୍ଷ ଗାଆଁ ପଛ ଆଡ଼ର ତୋଠାରେ ବେଶି ଅମ୍ବ ଆସେ, ସେ ବର୍ଷ ଗାଆଁ ଲୋକଙ୍କର ଖୁସିର ସୀମା ନ ଥାଏ । ଯେଉଁ ବର୍ଷ ଚାଷ ବେଳକୁ ଭଲ ବର୍ଷା ହୁଏ, ବେଉଷଣ ବେଳକୁ ବିଲରେ ବେଶି ପାଣି ଥାଏ, ଧାନ ଗଛ ମୂଳରେ ବହୁତ ପିଲ ଦେଖାଦିଏ, ସେ ବର୍ଷ ତ ଚାଷୀଙ୍କ ପକ୍ଷରେ ଆଶାର ଅନ୍ତ ନ ଥାଏ— ସେ ଝିଅପୁଅଙ୍କୁ ବାହା ଦେବାର କଳ୍ପନା କରେ, ହୁଡ଼ା ପରବର୍ତ୍ତୀ ବେଣ୍ଡିଆ ବଳଦ ହଳେ କିଣିବ ବୋଲି ଭାବେ, ଏଥର ଉଠାଣି ପୁଅପାଇଁ ଖଣ୍ଡେ ପାଞ୍ଚହାତି ଗାମୁଛା ଓ ସ୍ତ୍ରୀପାଇଁ ତିନି ଟଙ୍କା ଆଠ ଅଣାରେ ଖଣ୍ଡେ କୁମ୍ଭପଡ଼ା ଖଦି କିଣିବ ବୋଲି ଧରେ

ଦୋଧାହୁଣା ,କରେ; ଅଉ ଅନ୍ୟା ପୁଷ ,ମାସରେ ,ଚଳାଇ ସୁଖ ଛୁଣ୍ଡା ଇ ଦେବ ବୋଲି ସାଜକାରକୁ କହୁ ଅଛେ । ଏହାଠାରୁ ଅଧିକ ଆଶା କରିବା ପାଇଁ ସମ୍ବଳ ତାର ନାହିଁ, ଅଧିକାର ତାର ନାହିଁ—ଏହାଠାରୁ ଅଧିକ ଅକାଙ୍କ୍ଷା ସେମାନଙ୍କର କଳ୍ପନା ଭିତରକୁ ମଧ୍ୟ ଅସି ପାରେ ନାହିଁ । ଆଶାର ପରିସର ଯେଉଁଠାରେ ଅଳ୍ପ, ଅକାଙ୍କ୍ଷାର ଉଚ୍ଚ ପ୍ରକାଶ ଯେଉଁଠାରେ ସ୍ୱପ୍ନର ସାମଗ୍ରୀ, ସେଠାରେ ଶାନ୍ତି ପାଇଁ ଯଥେଷ୍ଟ ଉପାଦାନ ଥାଏ; କିନ୍ତୁ ଏ ଶାନ୍ତି ତ ଜୀବନ୍ତ, ସଞ୍ଚାରଶୀଳ ଶାନ୍ତି ନୁହେଁ; ଏ ଶାନ୍ତି ମନୁଷ୍ୟକୁ ବଞ୍ଚାଏ ନାହିଁ—ହତ୍ୟା କରେ, ମାରି ପକାଏ; ଏହା ଜୀବନ—ମୁଖରିତ ଜୀବନର ଶାନ୍ତି ନୁହେଁ; ଏହା ଶ୍ମଶାନର ସମାଧି ମନ୍ଦିରର ଅନ୍ଧକାରମୟ ଗର୍ଭରେ ଥିବା ଶାନ୍ତି ।

ଯେଉଁ ବର୍ଷ ଗଞ୍ଜା ମରୁଡ଼ି ପଡ଼ିଥିଲା, କଲେରା ରୋଗର ପାଶବିକ ପ୍ରକୋପରେ ଜିଲାର ରାଜଧାନୀ ଗଞ୍ଜାମ ଶ୍ମଶାନ ହୋଇ-ଗଲା, ସରକାରୀ କର୍ମଚାରୀମାନେ ପ୍ରାଣ ଭୟରେ ଛତ୍ରପୁର ଓ କୃଷ୍ଣପୁରକୁ ପଳାଇଗଲେ । ସେ ବର୍ଷ ଦୀନବନ୍ଧୁ ସ୍ୱାଇଁର ପୂର୍ବ ପୁରୁଷ ତାହାର ଗୋଟିଏ ବୋଲି ପୁଅକୁ ମୃତ୍ୟୁ କବଳରୁ ରକ୍ଷା କରି ପଧାନପଲ୍ଲୀକୁ ଅସି କୁଡ଼ିଆ ବାନ୍ଧି ରହିଲା । ତା ପରେ ବହୁ ବର୍ଷ କଟି ଯାଇଛି । ଦୀନବନ୍ଧୁର ଗୋସେଇଁ ବାପ ନିଜ ଉଦ୍ୟମରେ ଜମିଜମା କିଣି, ଘରଗଣ୍ଡେ ତୋଳି ରହିଯାଇଥିଲା । ସେମାନଙ୍କଠାରୁ ବଂଶଧର ସୂତ୍ରେ ସେ ପାଇଛି ଭଲ ଚେହେରା ଗଣ୍ଡେ, ଚାଷ କରିବା ପାଇଁ ବାହୁରେ ଯଥେଷ୍ଟ ବଳ, ହଳହଡ଼ା, ଘରଦ୍ୱାର, ଗୁଣ୍ଠମାଣ ଚାଷଜମି, ଗୁରୁ ଭରଣ ଧାନ ଋଣ, ଗାଆଁ ଗୁହାଳୀରୁ ଅକ୍ଷର ପରିଚୟର ଅଧିକାର—ଅଉ ପାରିଅକୁ । ତାକୁ ସେତେବେଳେ ୧୯ ବର୍ଷ । ତା ବାଉ ଧରି ବସିଲା, ପୁଅ ବଡ଼ହୋଇ ଗଲାଣି;

ବାହା ଦେବାକୁ ହେବ । ଧାନବନ୍ଧୁର ବାପ ବହୁତ ଯୋଗାଡ଼ କରି କନ୍ୟାଟିଏ ସ୍ଥିର କଲେ, ପଧାନ ଘରୁ ପାଞ୍ଚ ଶଗଡ଼ 'ଧାନ' ଭରଜ ଅଣିଚଲ୍, ବାଜା ବାଜିଲା, ହୋଳିହୁଳି ହେଲା, ଗାଆଁ ଲୋକେ ଦେଖିଲେ, ଧାନା ବହୁଟିଏ ଧରି ଘରକୁ ଫେରିଲା ।

ଦିନ ଗଡ଼ିଗଲା । ଧାନାର ଜୀବନର ଗତିରେ ଉତ୍ସାହର ଗୋଟାଏ କ୍ଷୀଣ ରେଖା କମେ କ୍ରମେ ଦେଖାଦେଲା । ଜମି ଚାଷ କଲାବେଳେ ସେ ଅଧିକ ଗଭୀରିଆ କରି ଗାର ଧରେ, ବଳଦ ଦୁଇଟାର ଖାଇବା ପିଇବା ଆଡ଼କୁ ଅଧିକ ଦୃଷ୍ଟି ଦିଏ, ଅଗଠାରୁ ଅଧିକ ପରିଶ୍ରମ କରେ । ବୈଶାଖ ମାସର ଦୁଇ ପ୍ରହର ବେଳେ ଗଭୀର ବିଲରେ ଚାଷ କରୁ କରୁ ଖରାରେ ଯେତେବେଳେ ତା ପିଠିଟା ଶିଝିଲାପରି ଲାଗେ, ସେତେବେଳେ ଅକାରଣରେ ତା ଆଖି ଆଗରେ ସାରିଆର ଚେହେରା ଭାସି ଉଠେ । ମୁଣ୍ଡର ଝାଳ ଗାମୁଛା କାନିରେ ପୋଛି ପୁଣି ସେ ଲଙ୍ଗଳମୁଠାରେ ହାତ ପକାଏ । ହଁ, ସେ ସାରିଆକୁ ଦେଖିପାରେ—ଖୁବ୍ ଦେଖିପାରେ । ତାକୁ ଟିକିଏ ଖୁସି କରିବା ପାଇଁ ସେ ଏତେ ହାଡ଼ଭଙ୍ଗା ପରିଶ୍ରମ କରେ , ଏତେ ଝାଳ ବୁହାଏ । ତାର ଅଶା, ପରିଶ୍ରମ କରି ସେ କରଜ ଶୁଝିଦେବ । ଆଉ କିଛି ଜମି କିଣିବ । ଘର ଖଣ୍ଡିକ କ୍ଷୀଣନ୍ତ ପୁରୁଣା ହୋଇଗଲାଣି—ବେଳେ ବେଳେ ଲୁଅ ଛୁଉ ପଡ଼ୁଛି—ସେ ଖଣ୍ଡିକୁ ଭାଙ୍ଗି ଭଲକରି ବାନ୍ଧିବ । ଏ ସବୁ ଦେଖି ସାରିଆ ଖୁସି ହେବ ନାହିଁ ? ହଁ, ହେବ । ସେତିକି ହିଁ ତାର ପୁରସ୍କାର ।

ଗଡ଼ାମନ୍ଦିରରୁ ତା ପୂର୍ବପୁରୁଷ ଇଆଡ଼କୁ ଅସିଥିଲେ ବୋଲି କେତେ ତାଙ୍କ ବଂଶରେ ଅଉ ମନ୍ଦୁଡ଼ି ପଡ଼ିନ ନାହିଁ, ଏପରି କିଛି କଥା

ନାହିଁ । ସେ ବର୍ଷ ରଥଯାତ୍ରା ପରେ ପରେ ପଧାନପଲ୍ଲୀରେ କଲେରା ଲାଗିଲା । ସେଥିରେ ଦୁଇଦିନ ମଧ୍ୟରେ ଦୀନାର ମାଆବାପ ଦୁହେଁ ଚାଲିଗଲେ । ଗାଆଁ ଗହଳରେ ଏପରି ମରିବାଟା ସାଧାରଣ କଥା । ଏଠାରେ ରୋଗ ଥାଏ, ବୈଦ୍ୟ ନ ଥାଏ; କଲେରା ମ୍ୟାଲେରିଆ ଲାଗେ, ନ ଥାଏ ଡାକ୍ତର, ଔଷଧ, ପଥ୍ୟ ଓ ଚିକିତ୍ସା । ସଭ୍ୟ ପୃଥିବୀର ଏ ଅଞ୍ଚଳଗୁଡ଼ାକରେ ରୋଗ ହେବା ଅର୍ଥ ବିନା ଚିକିତ୍ସାରେ ରୋଗ ସହିତ ଲଢ଼େଇ କରି କରି ହଜାରକେ ନଅଶହ ଅନେକକ୍ଷେତ୍ର କ୍ଷେତ୍ରରେ ମରିବା; ଆଉ ଗୋଟାଏ ଗୋଟାଏ ସ୍ଥାନରେ ଅର୍ଦ୍ଧମୃତ ହୋଇ ବଞ୍ଚିବା । ପଲ୍ଲୀଅଞ୍ଚଳରେ ରୋଗ ହେବାଟା ଭାଗ୍ୟର ଦୋଷ—କଦବା କ୍ୱଚିତ୍ ଭଲ ହେବା ସୌଭାଗ୍ୟ ଓ ମୃତ୍ୟୁମୁଖରେ ପଡ଼ିବା ଦୁର୍ଭାଗ୍ୟର ବିଷୟ । ସେହି ଭାଗ୍ୟଦୋଷରୁ ଦୀନବନ୍ଧୁର ବାପମାଆ ଦିନ ଦୁଇଟା ମଧ୍ୟରେ କଲେରାରେ ମଲେ । ଆଉ ଦୀନବନ୍ଧୁ ଓ ସାରିଆ ସେହି ଭାଗ୍ୟକୁ ଆଦରି ପଡ଼ି ରହିଲେ ।

ଦୀନବନ୍ଧୁ ସାରିଆ ଆଡ଼କୁ ଚାହିଁ ଆଉ ପରିଶ୍ରମ କରେ; ସାରିଆ ଦୀନବନ୍ଧୁ ଆଡ଼କୁ ଚାହିଁ ଆଉ ଗୃହ ସଂସାରକୁ ସୁନ୍ଦରରୂପେ ସଜାଇ ରଖେ । ଏହିପରି ଏ ଦୁହିଁଙ୍କର ଦିନ କଟିଯାଏ ।

ଗାଆଁ ଲୋକେ ଏ ଦୁହିଁଙ୍କୁ ଦେଖନ୍ତି, କେତେକେ ମନେ-ମନେ ପ୍ରଶଂସା କରନ୍ତି, ଅଧିକାଂଶ ଈର୍ଷ୍ୟାରେ ଜଳିଯାଆନ୍ତି ।

ଦୀନା ପଧାନ ଘରର ଚାରି ଭରଣ କରଜରୁ ଦୁଇ ଭରଣ ଶୁଝିଦେଲା; ଗୁହାଳଘର ଖଣ୍ଡିକୁ ନୂଆକରି ତିଆରି କଲା । ପାଖ ପଡ଼ିଶାଏ କହିଲେ, ଦୀନା ହାତରେ କିଛି ପାଣି କମି ଗଲାଣି । ପାଣି ଅର୍ଥ ଦଶ ବା କୋଡ଼ିଏ ଟଙ୍କା ।

ଦାନବନ୍ଧୁ ସାବଥକୁ କହିଲା, "ବୁଝିଲ, ସାହୁକାର ଘର ପୁଅ ଏଥର ବ୍ରହ୍ମପୁରକୁ ଗଲେ ତା ହାତରେ ୮ ତୋଳା ଓଜନର ଘୋଡ଼ାଏ ଖଡ଼ୁ ଆଣିବାକୁ ଦେବ ।"

ସାବଥ କହିଲା, 'ସେ ସବୁ ମୋର କଅଣ ହେବ ?'

ଦାନବନ୍ଧୁ ତା ଆଡ଼କୁ ଚାହିଁ ହସିଲା; କହିଲା, 'କେ ଜାଣେ ?'

---

## ଚୋର

୧୯୪୨ ସାଲ୍ ନଭେମ୍ବର ମାସ । ବର୍ମାରୁ ବ୍ରହ୍ମପୁତ୍ର ଆଡ଼କୁ ଯେଉଁ ଶଡ଼କ ପଡ଼ିଛି ତା ଦୁଇ ପାଖର ଧାନ କ୍ଷେତରେ ସୁନେଲି ରଙ୍ଗର ଧାନ ଶୀଷଗୁଡ଼ିକ କାର୍ତ୍ତିକ ମାସର ଧୀର ଉତ୍ତର ପବନରେ ତରଙ୍ଗ ଛନ୍ଦରେ ତାଳେ ତାଳେ ନାଚ ଯାଉଥାଏ । ଚାଷୀ ସେ ଆଡ଼କୁ ଚାହିଁ ଅନୁଭବେ ସୁନା ସମୁଦ୍ରରେ ସୁନାର ଲହରୀ ଖେଳୁଛି । ତାହାର ଉପରେ ପାଲ ମେଲି ତାର ଆଶା ବୋଇତ ଆସୁଛି ଚକ୍ରବାଳ କୋଳରୁ । ଆଉ ପନ୍ଦର ଦିନ । ଆଉ ମାସେ । ତାର ଖଳାବାଡ଼ରେ ସେ ବୋଇତ ତାର ଭାର ସାମଗ୍ରୀ ପହଞ୍ଚାଇ ଦେବ । ଚାଷୀର ପରିଶ୍ରମ—ବୈଶାଖ ମାସରେ ଶିଞ୍ଚିବା, ଆଷାଢ଼ ମାସରେ ବର୍ଷା କାଦୁଅରେ ଭିଜିବା ସାର୍ଥକ ହେବ ।

ସେହି ନଭେମ୍ବର ମାସର ମଝି । ଦିନେ ସକାଳୁ ହଠାତ୍ ପବନ ଧୀରେ ଧୀରେ ବୋହିବାକୁ ଆରମ୍ଭ କଲା । ଦିନ ଯେତିକି ବଢ଼ିଲା ପବନର ବେଗ ସେତିକି ବୃଦ୍ଧି ପାଇଲା । ତା ସହିତ ଆକାଶରେ

ମେଘମାଳା ତାଣ୍ଡବନୃତ୍ୟ ଲଗାଇ ଦେଲେ । ଶଳିତା କୂଳରେ ନାଉରୀଆମାନେ ସେମାନଙ୍କର ଡଙ୍ଗାଗୁଡ଼ିକୁ ଖୁବ୍ ଅଣ୍ଟାଳିକ ବାନ୍ଧି ରଖିଲେ । ସେ ହ୍ରଦରେ ଉଠିଲା ବଡ଼ ବଡ଼ ଢେଉ । ମେଘ ପଛ-ପଟରେ ସୂର୍ଯ୍ୟ ଅସ୍ତ ହେଲେ । ରାତ ଆସିଲା । ତା ସହିତ ପୃଥିବୀ ଉପରକୁ ମାଡ଼ି ଆସିଲା ଯେପରି ଲକ୍ଷ ଲକ୍ଷ ଉନ୍ମତ୍ତ ଦୈତ୍ୟଦାନବଙ୍କ ସର୍ବନାଶୀ ନୃତ୍ୟ । ପବନର ବେଗ ଆହୁରି ବଢିଲା । ହୁ-ହୁ ଶବ୍ଦରେ ମୁଷଳଧାରରେ ବର୍ଷା ଚାଲିଲା । ଲୋକେ ଘର ଭିତରେ ଆଶ୍ରୟ ନେଇ ଭାବିଲେ, ଏହା କ'ଣ ବୋଧହୁଏ ପ୍ରଳୟର ସୂଚନା । ଗୋଟାଏ ବିରାଟ ଆତଙ୍କ ସମସ୍ତଙ୍କୁ ଅଭିଭୂତ କରି ପକାଇଲା ।

ରାତ ବଢ଼ିଲା । ପ୍ରେତପୁରୀର ବନ୍ଧନମୁକ୍ତ ପ୍ରେତଗୁଡ଼ାକ ପରି ପବନ ତାଣ୍ଡବ ନୃତ୍ୟ ଲଗାଇଦେଲା । ଚାଳଗୁଡ଼ାକ ଉଡ଼ିଗଲା । ଗଛର ଡାଳଗୁଡ଼ାକ ମଡ଼ ମଡ଼ ଶବ୍ଦକରି ଭାଙ୍ଗି ପଡ଼ିଲା । ପବନର ହୁଙ୍କାର, ବର୍ଷାର ହୁ-ହୁ ଶବ୍ଦ ସହିତ ଗଛବୃକ୍ଷ ଭାଙ୍ଗି ପଡ଼ିବା, ଚାଳ ଉଡ଼ିଯିବା ଶବ୍ଦ ମିଶି ରାତିର ଅନ୍ଧକାରକୁ ବିଭୀଷିକାମୟ କରି ପକାଇଲା ।

ରାତସାରା ଏହିପରି ଚାଲିଲା । ବଡ଼ ବଡ଼ ଗଛ ଉପୁଡ଼ି ପଡ଼ିଲା । ଧ୍ୱଂସର ନିର୍ମମ ହସ୍ତ ଗୃହଗୁଡ଼ିକୁ ଦଳିମକ୍ଟି ଚୂର୍ଣ୍ଣୀଭୂତ କରିଦେଲା । ଯେଉଁମାନେ ମଲେ, ସେମାନେ ନିଶ୍ଚିନ୍ତ ହୋଇଗଲେ । ଯେଉଁ-ମାନେ ରହିଲେ, ପ୍ରକୃତିର ଏ ଉନ୍ମତ୍ତ ତାଣ୍ଡବରେ ସେମାନେ ନିସ୍ତବ୍ଧ ହୋଇଗଲେ ।

ଝଞ୍ଜାର ଆଘାତରେ ଯାହା ଭାଙ୍ଗିବାର, ଯାହା ଧ୍ୱଂସ ହେବାର ହୋଇଗଲା; ତଥାପି ବର୍ଷାର ବିରାମ ନାହିଁ । ତିନିଦିନ ତିନିରାତି ଅବିରାମ ଧାରରେ ବର୍ଷା ଚାଲି ଏ ଧ୍ୱଂସ-ଯଜ୍ଞରେ ପୂର୍ଣ୍ଣାହୁତି ପ୍ରଦାନ କଲା ।

ତିନିଦିନ ପରେ ସବୁଦିନ ପରି ଶଲଙ୍କାର ପୂର୍ବ ଚକ୍ରବାଳ କୋଳରୁ ସୂର୍ଯ୍ୟ ଉଠିଲେ । ସେତେବେଳକୁ ପଧାନପଲ୍ଲୀର ସବୁ ଘର ଭାଙ୍ଗି ପଡ଼ିଛି । ରହିଛି କେବଳ ଦାରଭଙ୍ଗା ଅବସ୍ଥାରେ ପଧାନ ଘରର ଅଗ ଛାମୁଅଟର ଥିବା ଅଟୁ ଖଣ୍ଡି । ଅନେକ ଲୋକ ମରି ଯାଇଛନ୍ତି; ଯେଉଁମାନେ ଅଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହିଠାରେ ମୁଣ୍ଡ ଗୁଞ୍ଜିଛନ୍ତି । ତିନି ଦିନ, ତିନି ରାତି ଅନ୍ନ ସହିତ ଏମାନଙ୍କର ଦେଖା ନାହିଁ; ପିନ୍ଧା ଢେଇ ଖଣ୍ଡେ ଛଡ଼ା ଅଉ ଲୁଗା ନାହିଁ ; ଘରର ଯେ କଅଣ ହୋଇଛି, ତାହା ଭାବିବାର ଶକ୍ତି ନାହିଁ ।

ଦିନ ହେଲା । ଲୋକେ ଯେ ଯାହା ଘର ଅଡ଼କୁ ଦୃଷ୍ଟି ପକାଇଲେ । ଘର କାହିଁ ? କାନ୍ଥଗୁଡ଼ାକ ଭାଙ୍ଗି ପଡ଼ିଛି, ତାହାର ଉପରେ ଚାଳ ମାଡ଼ି ବସିଛି । ଆଉ କାହାର ଚାଳ ଗଣ୍ଡେ ଦୂରରେ ପଡ଼ିଛି । ଗାଈଗୋରୁ ଅନେକେ କାନ୍ଥ ପଡ଼ି ମରିଛନ୍ତି । ଯେଉଁମାନେ ଫିଟି ପଳାଇଛନ୍ତି ସେମାନେ ଯେ କୁଆଡ଼େ ଯାଇଛନ୍ତି ତାହାର ସନ୍ଧାନ ନାହିଁ । ଅଧିକାଂଶ ଲୋକଙ୍କର ଘରର ଆସବାବପତ୍ର ଗୁଣ୍ଡଗୁଣ୍ଡା ହୋଇ ଯାଇଛି ।

ମାଟିଖୋଳି ଲୋକେ ବାସନ ବର୍ତ୍ତନ, ସିନ୍ଦୁକ, ପେଟେରା ବାହାର କରିବା ପାଇଁ ଚେଷ୍ଟା କଲେ । କେତେକ ବାହାରିଲା, ଆଉ କେତେକର ଭଙ୍ଗା ଅଂଶଗୁଡ଼ାକ ବାହାରିଲା । ଆଉ ବାହାରିଲା ମାଟିତଳୁ ଅନେକଙ୍କର ଆତ୍ମୀୟସ୍ୱଜନ , ଭାଇପୁଅ, ମା, ଭଉଣୀ, ସ୍ତ୍ରୀ ଓ ଝିଅର ମୃତ ଶବ । ତିନି ଦିନ ପୂର୍ବେ ଏହି ଲୋକଗୁଡ଼ିକର ଗୃହ ଥିଲା, ସଂସାର ଥିଲା; ବର୍ଷ ବର୍ଷ ଧରି ସେମାନେ ଯାହା ସମ୍ପାଦି ଥିଲେ, ଆଜି ତାହା ଧ୍ୱଂସ ସ୍ତୂପରେ ପରିଣତ ହୋଇଛି ।

କ୍ରମେ କ୍ରମେ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ । ଲୋକେ କ୍ଷେତ ଆଡ଼କୁ ଦୃଷ୍ଟି ଦେଲେ । ସେମାନଙ୍କର ଅନ୍ତରାତ୍ମା ଶୁଖିଗଲା । ଜଳବାର ପାଣି ମାଡ଼ ଆସି ସାରା ଗହୀରର ଫସଲକୁ ଶେଷ କରିଦେଇଛି । ରାସ୍ତାର ଡାହାଣ କଡ଼ରେ ଥିବା ଜମିର ଧାନଗଛଗୁଡ଼ାକୁ ପବନ ଏପରି ଭାବରେ ପିଟି ଦେଇଛି ଯେ, ଶୀଷାରେ ଅଗାଡ଼ି ଛଡ଼ା ଗୋଟାଏ ମଧ୍ଯ ଧାନ ନାହିଁ ।

ଘର ଗଲା, ସଂସାର ଗଲା, ଯେଉଁ ଫସଲ ଉପରେ ନିର୍ଭର କରି ସେମାନେ ବଞ୍ଚନ୍ତି, ତାହା ମଧ୍ଯ ଗଲା । ତନ୍ନିଦନ ଝଞ୍ଜା ମାଡ଼ରେ ଇତସ୍ତତଃ, ତନ୍ତ ତନ ଦିନ ଖାଦ୍ୟାଭାବରେ ମ୍ରିୟମାଣ ଲୋକେ ଶୁଷ୍କ ଚକ୍ଷୁରେ ସେମାନଙ୍କର ବର୍ତ୍ତମାନ ଓ ଭବିଷ୍ୟତର ଧ୍ଵଂସସ୍ତୂପ ଆଡ଼କୁ ଚାହିଁ ରହିଲେ । ଅଶ୍ରୁ ? ଦୁଃଖର ବୋଝ ଯେତେବେଳେ ସୀମାର ଅତୀତକୁ ଚାଲିଯାଏ, ସେତେବେଳେ କ ଶାନ୍ତ୍ୱନା ଥାଏ ଯେ ସେମାନେ ଭବିଷ୍ୟତକୁ ଚାହିଁ ବର୍ତ୍ତମାନ ପାଇଁ ଦୁଃଖ କରିବେ, ଭାବିବେ, ସେମାନଙ୍କ ଚକ୍ଷୁରେ ଅଶ୍ରୁଧାରା ଦେଖା ଦେବ ?

ପ୍ରଥମେ ଲୋକଙ୍କ ମନରେ ଉଠିଲା । ସେମାନେ ଖାଇବେ କଅଣ, ରହିବେ କେଉଁଠି ? ଯେଉଁମାନେ ମଲେ ତ ଗଲେ; ଯେଉଁମାନେ ବଞ୍ଚିଛନ୍ତି, ସେମାନେ ତ ବଞ୍ଚିବେ ! ପିଲାଛୁଆଗୁଡ଼ାକ ମୁହଁରେ ତନିଦନ ତନରାତ ହେଲା ପାଣି ଟୋପାଏ ପଡ଼ିନାହିଁ । ଭୟରେ ସେମାନେ କାଠ ହୋଇ ଯାଇଛନ୍ତି । ଘର ନାହିଁ; ଘରେ ଓଳିଆ ବୁଜୁଲା ଯାହା ଥିଲା ସବୁ ମାଟି ତଳେ ପଡ଼ି ନଷ୍ଟ ହୋଇଯାଇଛି । ହାଣ୍ଡିକୁଣ୍ଡି ଭାଙ୍ଗି ଚୂନା ହୋଇ ଯାଇଛି । ମୁଠାଏ ଫୁଟାଇବେ କଅଣ, ଫୁଟାଇବେ କାହିଁରେ ?

ସମସ୍ତେ ପଧାନ ଘର ଆଡ଼କୁ ଦୃଷ୍ଟି ଦେଲେ । ତାଙ୍କ ଧାନ ଘର ଉଜୁଡ଼ି ପଡ଼ିଛି ; ବାହାରେ ଭରଣ ଭରଣ ଧାନ

ପଡ଼ ଭଜ ଯାଇଛୁ; କେତେତକ ପାଣିରେ ଧୋଇ ମାଟି ସାଙ୍ଗରେ ମିଶି ଯାଇଛୁ ; ତାହାର ପାଖରେ ପଧାନ ମୁଣ୍ଡରେ ହାତଦେଇ ବସିଛୁ । ଓ୍ୱୋକେ ଲୋକ ସେ ଅଡକୁ ଗଲେ, ଧାନ ସମ୍ଭାଳି ରଖିବାରେ ଲାଗିପଡ଼ିଲେ ।

ପଧାନ ଘର ଗୃହଳ ଓଳଅଗୁଡ଼ାକ କେମିତ କେଜାଣି ଝଞ୍ଜାର ଧ୍ୱଂସ ମୁହଁରୁ ରକ୍ଷାପାଇ ଯାଇଥିଲା । ପଧାନ ପୁଅ ରଦ୍ଦୁନାଥ ସମସ୍ତଙ୍କୁ ସେଥିରୁ ଦୁଇ ଦୁଇ ପୋଷ ଦେଲେ । ତାକୁ ଭଜାଇ ଲୋକେ ସେମିତ ଗ୍ରେବାଇ ଦେଲେ । ପିଲା ଛୁଆମାନେ ସେହି ଭଜା ଗୃହଳରୁ ମୁଠାଏ ଲେଖା ମୁହଁରେ ଦେଇ ପେଟେ ଲେଖାଏ ପାଣି ପିଇ-ଦେଲେ ।

ଯେଉଁମାନଙ୍କର ଗାଈଗୋରୁ ଫିଟି ପଳାଇଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ତାକୁ ଖୋଜିବାକୁ ପାଖ ଗାଁ ପର୍ଯ୍ୟନ୍ତ ଗଲେ । ସେ ଗାଁରେ ଖଣ୍ଡେ ହେଲେ କାନ୍ଥ ଛିଡ଼ାହୋଇ ରହି ନ ଥିଲା; ଯେପରି କି ଗତ ତିନି ଦିନର ବର୍ଷା ପବନ ଦ୍ୱାରା ପୃଥିବୀଟା ଉପରେ ଉଙ୍ଗାଭୁଷାର ଗୋଟାଏ କୁହୁକବାଜି ଖେଳି ଯାଇଥିଲା । ଧ୍ୱଂସର ସେହି ଶ୍ମଶାନ ଭିତରେ ଜୀଅନ୍ତା ଲୋକଗୁଡ଼ାକ ପ୍ରେତ ପରି ଚଲାବୁଲା କରୁଥିଲେ ।

ଗାଁ ଭିତରେ ଯେଉଁମାନେ ବୁଢ଼ା ବୁଢ଼ା ବଞ୍ଚି ରହିଥିଲେ, ସେମାନେ କହିଲେ, ଗୋଟାଏ ଖଣ୍ଡପ୍ରଳୟ ହୋଇଗଲା ।

ରାତି ହେଲା । ଲୋକେ ଗଛମୂଳ, ପଧାନ ପିଣ୍ଡା—ଯେଉଁଠି ଯେ ସୁବିଧା ମନେ କଲେ—ଅଣ୍ଟାନେଇ ପଡ଼ିଗଲେ ! ଶାନ୍ତି, କ୍ଳାନ୍ତି, ଅବସନ୍ନତା , ତା ଉପରେ ନିରାଶା, ହତାଶା, ଦୁଶ୍ଚିନ୍ତା ମିଶି ଲୋକମାନଙ୍କୁ ନିଦ୍ରା ନୁହେଁ—ଦୁଃସ୍ୱପ୍ନପୂର୍ଣ୍ଣ ପ୍ରକାରେ ତୀବ୍ର ମୋହର କୋଳକୁ ଟାଣି ନେଲା ।

ତଳ ଦଳ ପୂର୍ବେ ସେମାନେ ଭାବୁଥିଲେ, ସେମାନଙ୍କର ପରିବାରଗୁଡ଼ିକୁ କିପରି ଭଲରେ ରଖିବେ; ଆଜି ଏମାନଙ୍କ ମଧ୍ୟରୁ କେତେକଙ୍କର ପରିବାର ନାହିଁ, ଯେଉଁମାନଙ୍କର ବା ଅଛି ସେମାନଙ୍କର ଭବିଷ୍ୟତ ସମ୍ବଳ ନଷ୍ଟ ହୋଇ ଯାଇଛି; ଭବିଷ୍ୟତ ଶକ୍ତି ମଧ୍ୟ ନାହିଁ । ଭବିଷ୍ୟତଟା ସେମାନଙ୍କ ଆଗରେ ଗୋଟାଏ ସୀମାହୀନ ମରୁଭୂମି ପରି ପଡ଼ିଥିଲା ।

---

## ପାଞ୍ଚ

ଉନବିଂଶ ବ୍ୟାପି ଝଡ଼ଝଞ୍ଜାର କୁଅର ଭିତରେ ପ୍ରମୋଦ ଘରୁ ବାହାର ପାର ନ ଥିଲା । ଛୋଟ ସହର । ଝଡ଼ର ଧକ୍କା ସେତେବେଳର ପର୍ଯ୍ୟନ୍ତ ଏ ଅଞ୍ଚଳକୁ ଆସି ନ ଥିଲେ । ତଥାପି ଏ ଦଳ ତଳିଟା ଯେଉଁ ପାଗ ସୃଷ୍ଟି କରିଥିଲା, ସେଥିରେ ପ୍ରମୋଦ ପରି ଲୋକ ପକ୍ଷରେ ବିଶେଷ ସୁବିଧା ନ ହେବା କଥା । ଏମିତି ପାଗରେ ବନ୍ଧୁବାନ୍ଧବଙ୍କ ସଙ୍ଗେ ଦେଖାସାକ୍ଷାତ କରିବା ସୁବିଧା-ଜନକ ନୁହେଁ । ଥିଏଟର ତ ବନ୍ଦ ହେବା କଥା, କାରଣ କଟକ ଭଳି ଗୋଟାଏ ମଫସଲ ଅମଳର ସହରରେ କଲିକତାର ନାଟ୍ୟଶାଳା ଆସିବ କୁଆଡୁ ? ଏଠିକାର ନାଟ୍ୟଶାଳାଗୁଡ଼ାକ ମଫସଲର ଗୋଶାଳା ପରି—ଗୁଳଘର, ବର୍ଷା ହେଲେ ସେଥିରେ ପାଣି ଗଳେ, ପବନ ହେଲେ ତାହା ଉଡ଼ିଯାଏ । ଏମିତି ପାଗରେ ସେଠାରେ ଥିଏଟର ହେବା ଅସମ୍ଭବ—ନିଶ୍ଚୟ ଅସମ୍ଭବ । ଅଛ

ବାକୀ ରହିଲା ସିନେମା, ଉନ୍ତ୍ରବୁଡ଼ ପବନ ମାଡ଼ ଖାଇ ଯାଇ ଦେଖିଲା ଭଲ ଛବି ଏ ଦୁର୍ଯୋଗ ସହିତ ଯେପରି ସହାନୁଭୂତି ପ୍ରକାଶ କରି କଟକକୁ ଆସି ନ ଥିଲା । ଘରର ରେଡ଼ିଓଟା—ତାର ଅନ୍ତରସ୍ଥାଗୁଡ଼ାକ ମଧ୍ୟ ମେଘ ଓ ଝାଣୁଆ ପବନ ପ୍ରଭାବରେ କମ୍ପି ଉଠି ରେଡ଼ିଓ ଷ୍ଟେସନରୁ ବାହି ଆସୁଥିବା ସ୍ୱର-ଲହରୀଗୁଡ଼ାକୁ ବିକୃତ କରି ଦେଉଥିଲା । ଏ ଅବସ୍ଥାରେ ଦିନରେ କଲେଜକୁ ଯିବା ଉଦ୍ରୋଚିତ କାମ ନୁହେଁ । ପ୍ରମୋଦ ନିଜକୁ ଜଣେ ଉଚ୍ଚ ଶ୍ରେଣୀର ଭଦ୍ରଲୋକ ମନେ କରୁଥିବାରୁ ସେ କାମ ସେ କରି ନ ଥିଲା । ଏପରି ବର୍ଷା ଝଡ଼ରେ ଭଲ ପଢ଼ାପଢ଼ି ହୁଏ ନା ବୋଲି ତାର ବିଶ୍ୱାସ । ସେ କାମରେ ବୃଥା ଶକ୍ତି ନଷ୍ଟ କରିବା ଭଲ ମନୋଭାବ ତାର ନୁହେଁ । ତେଣୁ ଆଜି ଗୋଟାଏ କାମ ଅବଶିଷ୍ଟ ରହିଲା—କମ୍ବଳ ଘୋଡ଼ିହୋଇ ଖଟରେ ସୁଖନିଦ୍ରା ।

ଏ କଷ୍ଟକର କାମଟା କରିବା ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିବାରେ ତ୍ରୁଟି କରି ନାହିଁ; କିନ୍ତୁ ବାରବାର ତା ମନରେ ଜାଗି ଉଠିଛି ଦୁଃସ୍ୱପ୍ନ ପରି ଗୋଟାଏ ଭୟ—ଉତ୍ତର ବାଲେଶ୍ୱର ଓ ମେଦିନୀପୁରର ଝଞ୍ଜା ବାବା ! କି ଭୀଷଣ ରକମର ପବନ ସେ ଅଞ୍ଚଳଟା ଉପରେ ବହିଗଲା ! ଘରଦ୍ୱାର ସବୁ ଗ୍ରୈପଠ୍ , ମଣିଷ-ଗୁଡ଼ାକ ଝଡ଼ଆ ପାଗର ଝଡ଼ପୋକ ପରି ମରିଗଲେ; ଆଉ ତମଲୁକକୁ କୁଆଡ଼େ ସମୁଦ୍ର ମାଡ଼ି ଆସିଲା । କଟକ ଉପରେ ଯେମିତି ପବନ ବୋହୁଥିଲା, ତାହା ଯଦି କ୍ରମେ କ୍ରମେ ସେହି ଆକାର ଧାରଣ କରନ୍ତା ତ ସର୍ବନାଶ । ପ୍ରମୋଦ ଖଟ ଉପରେ ପଡ଼ି ଏସବୁ ଚିନ୍ତାରେ ଏ ତିନି ଦିନର ବାଧ୍ୟତାମୂଳକ ଅବସର କଟାଇଲା । ହରେନ୍ଦ୍ର ବାବୁ ଡ଼େପୋଟିଙ୍କ ଗୋଟିଏ ବୋଲି ପୁଅ ସେ । ତାଙ୍କ ବାପ ବର୍ତ୍ତମାନ ସମ୍ବଲପୁରରେ ଅଛନ୍ତି । କଲେଜରେ ପାଠ ପଢ଼ିବା

ପାଇଁ ପ୍ରମୋଦ ଏଠାରେ ଥାଏ । ତାର ପଢ଼ାପଢ଼ିର ସୁବିଧା କରି ଦେବା ପାଇଁ ଥାଆନ୍ତି ଗୋଟିଏ ପୂଜାରୀ ଓ ଜଣେ ଗୃହର ।

ହରେନ୍ଦ୍ର ବାବୁ ତାଙ୍କର ମାସିକ ୯୦୦ ଟଙ୍କା ଦରମାରୁ ପୁଅର ଖର୍ଚ୍ଚ ପାଇଁ ଶହେ ଟଙ୍କା ପଠାନ୍ତି; ଏତକ କାଳେ ପୁଅ ପାଇ ଯଥେଷ୍ଟ ହେବ ନାହିଁ ବୋଲି ଲକ୍ଷ୍ମୀ ଗୋପନରେ ବୋଉ ପଠାନ୍ତି ଅଧିକ କିଛି କିଛି, ଏହି ଧାରାରେ ପ୍ରମୋଦର ସମୟ କଟେ ।

ତିନିଦିନ ପରେ ସକାଳଟା ଆସିଲା ସଙ୍ଗ ଫୁଟିଲା ପଦ୍ମ ଫୁଲ ପରି । ପ୍ରମୋଦ ସାଇକେଲ୍ 'ଖଣ୍ଡ ଧରି ବାହାରି ପଡ଼ିଲା ଲୀଳାଙ୍କ ଘର ଆଡ଼କୁ'।

ପଢ଼ାଘର ଟେବୁଲ୍ ପାଖରେ ଲୀଳା ବସି ଖଣ୍ଡେ ବଙ୍ଗଳା ମାସିକପତ୍ରରୁ ଗଳ୍ପଟାଏ ପଢୁଥିଲା । ପ୍ରମୋଦ ଆସିବାର ଦେଖି ମଧ୍ୟ ସେ ଗମ୍ଭୀର ଭାବରେ ପଢ଼ିବା ଉପରେ ମନୋନିବେଶ କଲାପରି ରହିଲା ।

ପ୍ରମୋଦ ଖଣ୍ଡେ ଚଉକି ଟାଣି ବସିପଡ଼ି କହିଲା,—'ଆପଣଙ୍କୁ ଏତେ ଗମ୍ଭୀର ଭାବରେ ବସିଲେ ଦିନର ପାଗଟା ଖରାପ ହେବ ବୋଲି ସୂଚନା ମିଳେ । ଅଚ୍ଛା, ଗଲା ତିନିଦିନ କେମିତି କଟିଲା ?'

ଲୀଳା ସେହି ପତ୍ରିକା ଉପରେ ଦୃଷ୍ଟିନିବଦ୍ଧ କରି କହିଲା, —'ଭଲରେ ।'

ପ୍ରମୋଦ ଟେବୁଲ୍ ଉପରୁ ଖଣ୍ଡେ ବହି ଟାଣି ଆଣି ସେ ଆଡ଼କୁ ଦୃଷ୍ଟିଦେଇ ପୁଣି କହିଲା, ଭଲରେ ତ ନିଶ୍ଚୟ; କିନ୍ତୁ ମାନସିକ ଅବସ୍ଥାଟା ଖୁବ୍ ଭଲରେ ଥିବା ପରି କାହିଁକି ମୋର ମନ ହେଉ ନାହିଁ ।

ଲୀଳା ପତ୍ରିକା ଖଣ୍ଡ ହଠାତ୍ ବନ୍ଦକରି ଟେବୁଲ୍ ଉପରେ ଥୋଇ ଦେଇ କହିଲା, 'ଦେଖନ୍ତୁ ପ୍ରମୋଦ ବାବୁ, ଆପଣ ତ ତର୍କ

ଅବସ୍ଥ କରୁଛନ୍ତି; କିନ୍ତୁ ଗତ ତିନି ଦିନ ଏ ଅଞ୍ଚଳେ ଯେମିତି ପବନ ବୋହୁଥିଲା, କୁଅଞ୍ଚଳେ କଅଣ ହୋଇ ଯାଇଥିବ ବୋଲି ଅପଣ ଭାବୁଛନ୍ତି କି ?'

ପ୍ରମୋଦ ବେପରୁଆ ଭାବରେ କହିଲା, 'କୁଅଞ୍ଚଳେ କଅଣ ହୋଇଥିବ, ସେ କଥା ଭାବିଲେ ବା ମୋ ଦ୍ୱାରା କଅଣ ହେବ ? ସେଥିପାଇଁ ସେ ଜାମଟା ଅନ୍ତକୁ ନିଘା ଦେଲି ନାହିଁ । ଏଇଠି ଯଦି କେମିତି କଅଣ ହୋଇ ଯାଇ ଥାଅନ୍ତା, ଆମ ଅବସ୍ଥା କଅଣ ହୁଅନ୍ତା, ସେଇକଥା ଭାବି ଏ ତିନି ଦିନ ଡିନି ଗତ କଟାଇଛୁ ।

ମିଲା କହିଲା, 'ଅର୍ଥାତ୍ ଅପଣ କେବଳ ନିଜ କଥା ଭାବୁଥିଲେ ?

'ପର କଥା ଭାବିବାର ଅବସର କାହିଁ ? ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ମୁଁ ନିଜ କଥା ଭାବିବା ସଙ୍ଗେ ସଙ୍ଗେ ନିଜ ସହିତ ଯେଉଁମାନଙ୍କର ଅଳ୍ପ ହାର୍ଦ୍ଦିକ ସମ୍ବନ୍ଧ ଅଛି । ସେମାନଙ୍କ କଥା ମଧ୍ୟ ଭାବୁଥିଲି ।'

'ଏଇଟା ଠିକ୍ ନୁହେଁ । ଅପଣ ଖବରକାଗଜ ପଢ଼ିଛନ୍ତି ?'

'ନା, ସେ ଦିଗରେ ବୃଥା ସମୟ ନଷ୍ଟ କରିବା ଅଭ୍ୟାସ ମୋର ନାହିଁ । ରବିବାର ଦିନର କାଗଜରେ 'ପୀଠ ଓ ପଟ୍ଟ' ଅଂଶଟା ସାଧାରଣତେ ପଢ଼ିଥାଏ । ତା ଛଡ଼ା କେଉଁଠି କଅଣ ହେଲା, କିଏ କଅଣ କଅଣ କଲା, କିଏ କଅଣ କହିଲା, ସେ ସବୁ ନେଇ ମୁଣ୍ଡ ଖେଲାଇବା ଦିଗରେ ଶକ୍ତି ଖର୍ଚ୍ଚ କରିବାଟାକୁ ମୁଁ କୌଣସି ଦିନ ପସନ୍ଦ କରିପାରେ ନାହିଁ ।'

'ଅଚ୍ଛା, ଏଇ ଯେ ତିନି ତିନି ଦିନ ଏପରି ଝଡ଼ ହେଲା ଏହା ଯଦି ଓଡ଼ିଶାର ଅନ୍ୟ କେଉଁଅଞ୍ଚଳେ ଖୁବ୍ ଜୋରରେ ବହିଥିବ, ତେବେ କି କ୍ଷତି କରିଥିବ, ଏହା ଅପଣ ଜାଣିବାକୁ ଚାହାନ୍ତି ନାହିଁ ?'

'ଧର, ମୁଁ ଗୃହେଁ । ଗୃହିଁଲେ ଲଭ କଅଣ ? ଧର ଓଡ଼ିଶାର ଗୋଟାଏ ଅଞ୍ଚଳରେ ଖୁବ୍ କ୍ଷତି ହୋଇଛି । ସେଥିରେ ବା ମୁଁ କରିବି କଅଣ ? ସେ ସବୁର ଦେଖାଶୁଣା କରିବା ପାଇଁ ସରକାର ରହିଛି । ମୁଁ ତ ମୋର ସବୁ ବିଷୟ ଦେଖାଶୁଣା କରିପାରୁ ନାହିଁ —କରିବାକୁ ବେଳ ଅଣ୍ଟୁ ନାହିଁ । ଏଇ ଧର ନା, ଗତ ତିନିଦିନ ତମେ କେମିତି କଟାଇଛ, ତାହା ଜାଣିବା ମୋର ଗୋଟାଏ କର୍ତ୍ତବ୍ୟ; ଗତ ତିନି ଦିନକାଳ ଖଣ୍ଡାଙ୍କ ପୁରାଣର ସେବାକରି ସେ କଥା ଜାଣିବା ପାଇଁ ତମ ପାଖକୁ ଆସିଲି କ୍ଷଣି ତମେ ତମ କଥା ନ କହି ବଡ଼ ବଡ଼ ଘଟଣା ବଡ଼ ବଡ଼ ବ୍ୟାପାର ଆଣି ମୋ ଆଗରେ ଥୋଉଛ ।'

ଲୀଳା ହସି ପକାଇଲା । ଦୁଃଖ ତାର ଲୋକଙ୍କ ପାଇଁ ନୁହେଁ; ଅନ୍ୟେ ତା'ର ପର ଦୁଃଖ ପାଇଁ ନୁହେଁ; ଦେଶପ୍ରେମର ବାହାନା କରିବା, ଦୁଃଖୀଙ୍କ ପ୍ରତି ସମବେଦନା ଦେଖାଇବା ତଥାକଥିତ ଭଦ୍ର ସମାଜର ଗୋଟାଏ ଫେସନ୍ । ସେହି ଫେସନ୍‌ର ଗୋଟାଏ ସୂକ୍ଷ୍ମ ଅଭିନୟ ଲୀଳା ପ୍ରମୋଦ ଆଗରେ ଆଗତ କଲା; କିନ୍ତୁ ପ୍ରମୋଦର ସରଳ ସ୍ୱାର୍ଥପରତା ଆଗରେ ତା'ହାର ବା ମୂଲ୍ୟ କେତେ ? ପ୍ରମୋଦ ଜାଣେ, ଲୀଳାର ଏ ପରାର୍ଥ କାତରତାରେ ଆନ୍ତରିକତାର ଲେଶମାତ୍ର ନାହିଁ । ସ୍ୱାର୍ଥପରତା ଉପରେ ଗୋଟାଏ ବୈରାଗ୍ୟର ଛାପ ମାରି ତାକୁ ଅଧିକ କାର୍ଯ୍ୟକ୍ଷମ ଅନୁଭବ ତାରୁ କରିବା ଏହାର ଉଦ୍ଦେଶ୍ୟ । ସେଥିପାଇଁ ସେ ନିଜର ମନର କଥାଟାକୁ ସରଳ ଭାବରେ କହିବାରେ କୁଣ୍ଠିତ ହୋଇ ନ ଥିଲା

ଲୀଳା ଓ ପ୍ରମୋଦ ଦୁହେଁ କଲେଜର ଫୋର୍ଥଇୟାରରେ ପଢ଼ନ୍ତି । ସୁଖ ଓ ବିଳାସ ବ୍ୟସନମୟ ଜୀବନ ସେମାନଙ୍କର ଲକ୍ଷ୍ୟ ।

କଲେଜର ଶିକ୍ଷା କେବଳ ସେଇଥିପାଇଁ ତାଙ୍କୁ ପ୍ରସ୍ତୁତ କରୁଛି । ଅତି ସାଧାରଣ ସମୟରେ ଦେଶରେ ଯେ ବିକଟ ଦୁଃଖଦୈନ୍ୟର ଦୈନନ୍ଦିନ ଲୀଳା ଲାଗିଥାଏ, ତାର କୌଣସି ପ୍ରକାର ପ୍ରଭାବ, କୌଣସି ଆକାରର ପ୍ରତିକ୍ରିୟାର ପ୍ରବେଶ ପାଇଁ ସେମାନଙ୍କ ପକ୍ଷରେ ଫାଟକ ବନ୍ଦ; କଲେଜ ଭିତରକୁ ପ୍ରବେଶ ନିଷେଧ । ଦୁଃଖୀର ପିଲା କଲେଜ ପାଖ ହୋଟେଲ ନିକଟରେ ପଡ଼ିଥିବା ଅଇଁଠା ପତରରୁ ଗୋଟି ଗୋଟି ଭାତ ଗୋଟାଇ ଗୋଟାଇ କଲେଜର ବିରାଟ ପ୍ରକାର ଆଡ଼କୁ ଦୃଷ୍ଟି ଦିଏ, ଆଉ ଭାବେ ଏଠାରେ ତା ପିଲାଦିନରେ ଶୁଣିଥିବା ଗଳ୍ପର ରଜାପୁଅମାନେ ରହନ୍ତି । ପାଖ ଗଛ ମୂଳରେ ବସି ସେ କଲେଜ ହତା ଆଡ଼କୁ ଚାହିଁ ରହେ; ଦେଖେ ନାନା ପ୍ରକାରର ସୌଖୀନ ବେଶପୋଷାକ ପିନ୍ଧି କଲେଜ ଛାତ୍ରମାନେ ବୁଲୁଥାନ୍ତି । ଛୁଟିବେଳେ କଲେଜ ପିଲାଏ ଚାଲି ଯାଆନ୍ତି; ବାଟ କଡ଼ରେ ଏହି ଭେଙ୍କଲା, ଛିଣ୍ଡା କନା ଖଣ୍ଡେ ପିନ୍ଧିଥିବା, ଭୁଖିଲା ଶୁଖିଲା ମଣିଷ ପିଲାଟି ଯେ ପଡ଼ିଛି, ସେ ଆଡ଼କୁ ସେମାନଙ୍କର ଦୃଷ୍ଟି ପଡ଼େ ନାହିଁ । ଆଉ ଯଦି ପଡ଼େ, ତେବେ ସେମାନଙ୍କ ମନରେ ଘୃଣାର ଉଦ୍ରେକ ହୁଏ । ଏମାନଙ୍କର ସହାନୁଭୂତିର ଶକ୍ତିକୁ ପଙ୍ଗୁ କରିଦେବା ପାଇଁ ବର୍ତ୍ତମାନ ଶିକ୍ଷା, କଲେଜ ଶିକ୍ଷାରେ ମୂଳରୁ ବ୍ୟବସ୍ଥା ହୋଇଛି । ଏମାନଙ୍କର ଭାବିବା ଶକ୍ତିକୁ ଲୋପ କରିବା ଏ ଶିକ୍ଷାର ଉଦ୍ଦେଶ୍ୟ ! ଏ ଉଦ୍ଦେଶ୍ୟ ଚରମ ଆକାରରେ ସଫଳ ହୋଇଛି । ଏ ଶିକ୍ଷା ଏ ଦେଶରେ ମନୁଷ୍ୟ ଶ୍ରେଣୀ ଭିତରେ ସୃଷ୍ଟି କରିଛି ଅତି ଉଦ୍ଭଟ, ଅତି ହିଂସ୍ର, ଅତି ଆଶ୍ଚର୍ଯ୍ୟ ଧରଣର ଗୋଟାଏ କାତର ଜୀବ । ଏମାନେ ଦେଶର ପିଲା ହୋଇ ମଧ୍ୟ ବିଦେଶୀ ଭାବାପନ୍ନ ହୋଇ ଯାଆନ୍ତି; ଆଉ ସେଥିରେ ଗର୍ବ ଅନୁଭବ କରନ୍ତି । ଏମାନଙ୍କଠାରେ ଯଦି ମନୁଷ୍ୟୋଚିତ ଚିନ୍ତାଶକ୍ତି ଖୁବ୍ ଅଳ୍ପ

ପରମାଣରେ ଥାଅନ୍ତା, ତେବେ ସେମାନେ ସହଜରେ ଅନୁଭବ କରିପାରନ୍ତେ ଯେ, କେଉଁ ଯୁଗରେ ସେମାନେ ଅଛନ୍ତି । ଦେଶରେ ଯେତେସବୁ ଦୁଃଖ, ଯେତେସବୁ ଦୈନ୍ୟ, ଯେତେସବୁ ଅନ୍ୟାୟ, ଯେତେସବୁ ଅତ୍ୟାଚାର ଘୂରିବୁଲୁଛି, ଏ ଦେଶର ଶିକ୍ଷା ଯଦି ପ୍ରକୃତ ଶିକ୍ଷା ହୁଅନ୍ତା, ଏ ଶିକ୍ଷା ଯଦି ଶିକ୍ଷିତଙ୍କ ମନରେ ପ୍ରକୃତ ଚେତନାଶକ୍ତି ଉନ୍ମେଷିତ କରନ୍ତା, ତେବେ ଏ ଦେଶରେ ଏକା ଦିନକେ ଭୀଷଣ ଓଲଟ-ପାଲଟ ଘଟି ଯାଆନ୍ତା ।

ଲୀଲା ଓ ପ୍ରମୋଦ ଶିକ୍ଷାର ଚରମ ଶ୍ରେଣୀରେ ଉପନୀତ ହୋଇଛନ୍ତି । ସେଥିପାଇଁ ସେମାନଙ୍କଠାରେ ଶିକ୍ଷାର ଚରମ ହୃଦୟ-ହୀନତା ଯଦି ବ୍ୟକ୍ତ ହେଉଥାଏ, ତେବେ ଦୋଷ ସେମାନଙ୍କର ନୁହେଁ, ଦୋଷ ସେମାନଙ୍କ ପରିସ୍ଥିତିର ।

ଲୀଲା ହସିଲା, ହସି ହସି କହିଲା, 'ଅଳ୍ପ ବଡ଼ ବଡ଼ କଥା କହି ଦୋଷ କରିଛି, ମାଫ୍ କରନ୍ତୁ; କିନ୍ତୁ ପ୍ରମୋଦ ବାବୁ, ହଠାତ୍ ଏତେ ସକାଳେ ପହଞ୍ଚିଗଲେ କିପରି ?'

ପ୍ରମୋଦ ଗମ୍ଭୀର ଭାବରେ କହିଲା, 'କି ଦୁଃସ୍ୱପ୍ନ ଭିତରେ ଯେ ଗତ ରାତିଟା ଦିନ କଟିଛି ତାହା ତମେ କଳ୍ପନା କରି ପାରିବ ନାହିଁ । ଏତିକି ବୁଝି ପାରୁ ନା, ଲୀଲା ?'

'ନିଶ୍ଚୟ, କିନ୍ତୁ ଦୁଃସ୍ୱପ୍ନଟାର କାରଣ ? ଦୁଃସ୍ୱପ୍ନର ଉପଲକ୍ଷ ?'

'ଅଃ ସେତିକି ଯଦି ତୁମକୁ ବୁଝାଇବା ଦରକାର ପଡ଼େ, ତେବେ ତାହାଠାରୁ ସେ ବିଷୟରେ ଚେଷ୍ଟା ନ କରିବା ମୋ ପକ୍ଷରେ ଉଚିତ । ଅଚ୍ଛା, ମିଥ୍ ମହାନ୍ତି, 'ଶିକ୍ଷା କଅଣ ନାରୀ-ହୃଦୟର କୋମଳତାକୁ ନଷ୍ଟ କରିଦିଏ ? ଲଜିକ୍, ହିଷ୍ଟ୍ରି ବଡ଼ ବଡ଼ ବହିର ଚାପରେ 'କଅଣ : ହୃଦୟର ସୂକ୍ଷ୍ମ ପ୍ରବୃତ୍ତିଗୁଡ଼ିକ ଭାରାକ୍ରାନ୍ତ ହୋଇ ଅକର୍ମଣ୍ୟ ହୋଇ ପଡ଼ନ୍ତି ?'

'ପ୍ରମୋଦ ବାବୁ, ଦେଖୁଛି ଆପଣ ଯେ ସ୍ୱଭମତେ ସାହିତ୍ୟିକ ବକ୍ତୃତା ଆରମ୍ଭ କଲେ । ଆଜିକାଲି ସିନେମା ଗ୍ଲାଉ ଥିଏଟର ଆଡ଼କୁ ବୋଧହୁଏ ଆପଣଙ୍କର ଦୃଷ୍ଟିଟା ବେଶୀ ପଡ଼ୁଛି । ଏ ଯେଉଁ ଉଚ୍ଚ ଧରଣର ନାଟକୀୟ ଭାଷା, ତାହା ଏ ଦଗକୁ ଇସାରା ଦେଉ ନାହିଁ କି ?'

'ମିସ୍ ମହାନ୍ତି !'

'ଆଜ୍ଞା ହଁ ! ହୃଦୟ, କୋମଳତା, ପ୍ରବୃତ୍ତି, ଏଇଗୁଡ଼ାକୁ ନେଇ ତ ଓଡ଼ିଆ ନାଟକ । ନା, ପ୍ରମୋଦ ବାବୁ ?'

ପ୍ରମୋଦ ଅତ୍ୟନ୍ତ ଗମ୍ଭୀର ହୋଇଗଲା । ସେ କିଛି ଉତ୍ତର ଦେଲା ନାହିଁ ।

ଲୀଳା ହସି ହସି କହିଲା, 'କଥା କହୁ ନାହାନ୍ତି ଯେ ? ଆଜ୍ଞା, ଆପଣ ପ୍ରେମ ନିବେଦନର ଯେଉଁ ଅଭିନୟଟା ଆରମ୍ଭ କଲେ ତାହା ଆପଣଙ୍କ ପକ୍ଷରେ କହିବା ଯେପରି ନୂତନ ନୁହେଁ, ମୋ ପକ୍ଷରେ ଶୁଣିବା ସେହିପରି ନୂତନ ନୁହେଁ । ଏଗୁଡ଼ା ତ ଆମ ଜୀବନର ସାଧାରଣ ଅଙ୍ଗ । ଏଗୁଡ଼ାକୁ ଧରି, ତାକୁ ବଡ଼ ବଡ଼ କଥାର ଆକାର ଦେଇ, ଗୋଟାଏ ଜଳୁସି ବା ଗୁରୁତର ବିଷୟ ରୂପେ ଚିତ୍ରିତ ନ କଲେ ଆଉ ଆପଣମାନଙ୍କର ମନ ସନ୍ତୁଷ୍ଟ ହୁଏ ନାହିଁ ?'

ପ୍ରମୋଦ ଅପ୍ରତିଭ ହୋଇ ପଡ଼ିଲା, କହିଲା; "ହୃଦୟର କଥାଟା ଯେତେବେଳେ ମୁହଁବାଟେ ବାହାରିବାକୁ ଚେଷ୍ଟା କରେ ସେତେବେଳେ ତାହା ଯଦି ଶୁଣାଶୁଣା ସାହିତ୍ୟିକ ଭାଷାରେ ବାହାରି ପଡ଼େ, ତେବେ ସେ ଦୋଷ ଆମ ହୃଦୟର, ଆମର ନୁହେଁ ।"

ଲୀଳା ହସି ହସି କହିଲା, "ଅର୍ଥାତ୍ ଆମପରି ନାରୀମାନଙ୍କ ଉଦ୍ଦେଶ୍ୟରେ ଆପଣମାନଙ୍କ ପରି ପୁରୁଷର ହୃଦୟ କେବଳ ଯାହାକୁ

କହନ୍ତି ସେ କଳାପଟା କେବଳ ସାହିତ୍ୟକ ଭାବଧାରା ସୃଷ୍ଟି କରୁଛି; ଅଚ୍ ସେ ଭାବ ସାହିତ୍ୟକ ଭାଷା ଆକାରରେ ଫୁଟି ଉଠୁଛି, ନା ?'

ପ୍ରମୋଦ ଉଠିପଡ଼ି କହିଲା, "ଦେଖ ମିଃ ମହାନ୍ତି, ମନୁଷ୍ୟର ହୃଦୟକୁ ଯେନ ଖୋଲିବା ଭଲ ନୁହେଁ, ତାର ହୃଦୟର ଅଭିବ୍ୟକ୍ତିକୁ ବ୍ୟଙ୍ଗ ବିଦ୍ରୂପ କରିବା ଉଚିତ ନୁହେଁ ।"

ପ୍ରମୋଦ ଘରୁ ବାହାରି ଚାଲିଗଲା ।

ଲୀଳା ସେ ଅଙ୍କକୁ ଚାହିଁଥାଏ । ତା ମୁହଁରେ ଫୁଟି ଉଠୁଥାଏ ସୂକ୍ଷ୍ମ ସ୍ମିତ ହାସ୍ୟର କ୍ଷୀଣ ରେଖା ଖଣ୍ଡେ ।

---

## ଛଅ

ପଧାନପଲ୍ଲୀର ଅନ୍ୟାନ୍ୟ ଲୋକପରି ଦୀନବନ୍ଧୁ ଜଙ୍ଗଲରୁ ତାଳପତ୍ର ଗୋଟାଇ ଆଣି ତା ଉପରେ ପଲ ଖଣ୍ଡେ ମାରିଛି । ଏହା ହିଁ ବର୍ତ୍ତମାନ୍ ତା'ର ବାସଗୃହ । ସମ୍ମୁଖ ଭାଗରେ ରହିଛି ଦୁଇ ତିନିଟା ପୁରୁଣା ହାଣ୍ଡି ମାଟିଆ । ଖଡ଼ା ଭଙ୍ଗା ଭଳି ଯାହା ଯେତେବେଳେ ଜୁଟେ ଦୁଇ ତିନି ଦିନରେ ମୁଠାଏ ଫୁଟାଇ ଦୁଇପ୍ରାଣୀ ମୁହଁରେ ଦିଅନ୍ତି, ସେ କୁଡ଼ିଆ ଖଣ୍ଡିକରେ ପଡ଼ି ରହନ୍ତି ।

ଦୀନା ସାରିଆକୁ ଚାହେଁ, ସାରିଆ ଦୀନାକୁ ଚାହେଁ, ଆଉ ଦୁହେଁ ଦୁହିଙ୍କର ଚେହେରା ଦେଖି ଦୁହିଙ୍କର ଅନ୍ତରାତ୍ମା ଶୁଖିଯାଏ । ଦୁହେଁ ଭାବନ୍ତି, ଏମିତି କେତେଦିନ ଚଳିବ ?

ଏ ସବୁ ଚିନ୍ତା ସେମାନଙ୍କୁ ଯେତେ ବାଧେ ନାହିଁ, ସେତେ ବାଧେ ଝିଅଟା ଚିନ୍ତା । କେମିତି ଏ ଗଣ୍ଡିକୁ ସେମାନେ ଏ ସଙ୍କଟ

...ଲା ମୁହଁରୁ ବଞ୍ଚାଇ ରଖିବେ? ବର୍ଷକ ପୂର୍ବେ ପିଲାଟା ...ଟୋଟୋଲା ତାଙ୍କ ଘରେ ଜନ୍ମ ହୋଇଥିଲା, ସେତେବେଳେ କ ...ଏ ଖେଳି ଯାଇ ନ ଥିଲା ସେ ଦୁହିଁଙ୍କ ମନରେ ? ଏ ପିଲାଟିର ...ଭବିଷ୍ୟତ୍ ବିଷୟ୍ରେ କେତେ ଆଶା ସେମାନଙ୍କ କଳ୍ପନାରେ ସ୍ଥାନ ପାଇ ନ ଥିଲା ? ସାବିଆ କହେ, ପିଲାଟିକୁ ପାଠ ପଢ଼ାଇବା, ସେ ବଡ଼ ହୁକିମରେ ହାକିମ ହୋଇ ଆସିବ; ସେତେବେଳେ ଦୀନା ଅଜ୍ ଧୀବରଆର କି ଗର୍ବ ନ ହେବ ? ଗାଆଁ ଲୋକେ ସେମାନଙ୍କୁ କେତେ ମାନିବେ, କେତେ ଆଦରଯତ୍ନ କରିବେ । ଦୀନା କହେ, ନା, ହାକିମ ହୁକୁମା ହେବା ଦରକାର ନାହିଁ, ସେଥିରେ ଦୁଃଖୀ ରଙ୍କୀଙ୍କ ଆଡ଼କୁ ନଜର ରହେ ନାହିଁ, ଗାଆଁ ଲୋକଙ୍କ ସହିତ ସମ୍ବନ୍ଧ ରହେ ନାହିଁ, ଗାଆଁଟାକୁ ଭଲ ଲାଗେ ନାହିଁ । ବୁଝିଲ, କେବଳ ସେତିକି ନୁହେଁ; ହାକିମ ହୁକୁମାମାନେ ଗରିବଙ୍କ ଉପରେ ଜୁଲମ କରନ୍ତି, ସେମାନଙ୍କ ଉପରେ ଗରିବଙ୍କ ନିଃଶ୍ୱାସ ପଡ଼େ । ଏଇଟା ବଡ଼ ଖରାପ କଥା । ନା, ଆମ ପିଲାଟା ହାକିମ ହୁକୁମା ହେବ ନାହିଁ, ସେ ହେବ ବଡ଼ ଗୃହୀଟାଏ । ତାର ବାଟିଏ ଜମି ଥିବ, ଦୁଆରେ ପାଞ୍ଚହଳ ବଳଦ ବନ୍ଧା ହୋଇଥିବେ, ଗୁହାଳରେ ଥିବ ପୃଞ୍ଜାଏ ଦୁଧୁଆ ଗାଈ, ବର୍ଷ ପାହିଲେ ଖଳାରେ ୫୦ ଶଗଡ଼ ଧାନ ଜମା ହେଉଥିବ । ଆମ ପିଲାଟାର ଦେହରେ ଥିବ ଗୃହସ୍ଥା ମଣିଷର ବଳ, ଲଙ୍ଗଳ ଧରିଲେ ଏକା ନିଃଶ୍ୱାସରେ ଦ ପାଆ ଜମିରେ ଗାର ପକାଇ ପାରୁଥିବ, କୋଡ଼ି ଧରିଲେ ପଲକରେ ଗୃହଗୁଣ୍ଡ ମାଟି କାଟି ପକାଇ ପାରୁ ଥିବ, ଦାଆ ଧରିଲେ ଦିନକରେ ଦ ଶଗଡ଼ କଳେଇ ବାନ୍ଧି ଆଣୁଥିବ, ତାକୁ ଦେଖିଲେ ହିଁ, ଗୋଟାଏ ମଣିଷ ପରି ମଣିଷ ବୋଲି ପାଞ୍ଚଜଣ ଭାବୁଥିବେ । ଦୀନାର ଏ ସବୁ କଳ୍ପନା ଅଜି ଧୂଳିରେ ମିଶିଯିବାକୁ ବସିଛି ।

ପିଲାଟିକୁ ମଣିଷ ପରି ଗଢ଼ିବ ବୋଲି ଗାଈଟାର କ୍ଷୀରରୁ ଯେ ଧନେ ଦେଲେ ଟୋପାଏ ଛୁଇଁ ନଥିଲା । କି କାଳ ବତାସ ଆସିଲା, ଚୁହାଳ କାନ୍ଥ ପଡ଼ି ଗାଈଟା ମଲା, ତା ସାଙ୍ଗେ ସାଙ୍ଗେ ବଳଦ ଦୁଇଟା ମଧ୍ୟ ଗଲେ ।

ଘର ଗଲା, ଘରର ସବୁ ଜିନିଷ ପତ୍ର ଭାଙ୍ଗିରୁଜି ଗଲା । ଆଉ ଦୁ'ମାସ ଚଳିବାପାଇଁ ଯେଉଁ ଟିକେ ଧାନ ସେ ଡୋଳିରେ ରଖିଥିଲା, ତାହା ମଧ୍ୟ ମାଟିରେ ମିଶିଗଲା । ମାଟି କାଦୁଅ ଭିତରୁ ଗୋଟେଇ ସାଉଁଟି ଯେଉଁ ଟିକେ ଧାନ ଆଣିଥିଲା, ସେଥିରେ ଆଠ ଦଶ ଦିନ ଚଳିଲା । ତାପରେ ଭଙ୍ଗା କଂସାବାସନ ବିକି ଚାଉଳ କିଣି ଖାଇଲା । ପାଲଖଣ୍ଡ ବାନ୍ଧିବା ପାଇଁ ସାରିଆର ଖଡ଼ୁ ବି ପଠ ଗଲା । ବର୍ତ୍ତମାନ ହଳ ନାହିଁ, ହଡ଼ା ନାହିଁ, ବିଲରେ ଧାନ ନାହିଁ, ଘରେ ଚାଉଳ କିଣି ଖାଇବା ପାଇଁ ଆଉ କିଛି ଜିନିଷପତ୍ର ନାହିଁ । ଏବେ ସେ କେମିତି ବଞ୍ଚିବ, ତାର ସାରିଆକୁ, ତାର ପିଲାଟିକୁ କେମିତି ବଞ୍ଚାଇବ, ତାକୁ କିଛି ବାଟ ଦିଶୁନାହିଁ । ଆଉ ଯେ ଆସନ୍ତା ବର୍ଷ ବେଳକୁ ବଞ୍ଚିରହି ପରିଶ୍ରମ କରି, ହଡ଼ା କିଣି, ମୂଲ ଶହାନ ଖରଚ କରି ପୁଣି ଚାଷ କରିବ. ଏ ଆଶା ମଧ୍ୟ ନାହିଁ । ସେ କରିବ କଅଣ ? ସେ ଚଳିବ କେମିତି ?

ସେତେବେଳକୁ ଦିନଦିନ ଖାଡ଼ାଖାଡ଼ି ଉପାସ । ସାରିଆ ବଣକୁ ଯାଇ ଗୁଡ଼ାଏ ଅନାବନା ଶାଗ ତୋଳି ଆଣିଥିଲା; ତାହା ମଧ୍ୟ ଜଣକ ପାଇଁ ଯଥେଷ୍ଟ ନୁହେଁ । ଗାଆଁର ସବୁ ଲୋକ ତ ସକାଳ ପାହିଲେ ସେ ସବୁ ଘାସପତ୍ରକୁ ଖୋଜି ଆଣୁଛନ୍ତି; କେତେ ଗଛର ବା ଯେ ତାହା ଯଥେଷ୍ଟ ହେବ ସାରା ଗାଆଁଟା ପାଇଁ ? ଓଳିଏ କାଳ ଖୁଣ୍ଟି ଖାଣ୍ଟି ସାରିଆ ଯେଉଁ ଟିକେ ଶାଗ ଆଣିଥିଲା ସେତକ ସିଝାଇ ଦାନା ଆଗରେ ଥୋଇଦେଲା । ସେଥିରୁ ଦି ମେଞ୍ଚା ପାଟିରେ

ଦେଇ ସେ ପେଟେ ପାଣି ପିଇଲା । ସାରଥି ପିଲାଟିକୁ ନେଇ ବାହାର ପଟେ ବସି ରହିଲା । ତିନି ଦିନ ତିନି ରାତି ଉପାସ, ଆଜି ମଧ୍ୟ କିଛି ଖାଦ୍ୟ ମିଳିବାର ଆଶା ନାହିଁ । ସାରଥି ପିଣ୍ଡାରୁ ଆଉ ଉଠି ପାରିଲା ନାହିଁ ।

ପିଲାଟି ଯଦି ଭୋକ ବିକଳରେ କାନ୍ଦି କାନ୍ଦି ଅଲଗା ହୋଇ ପଡ଼ି ନ ଥାନ୍ତା ତାହା ହେଲେ ଧୀନା ଓ ସାରଥିକୁ ଏ ଦୁଃଖ ସେତେ ବାଧନ୍ତା ନାହିଁ । ତାଙ୍କରି ଆଗରେ ମୁନ୍ଦାଏ ପେଜ ନ ପାଇ ସେ ପିଲାଟା ମରିବାକୁ ବସିଛି, ବାପ ମା ହୋଇ ସେମାନେ ତାହା ସହିବେ କିପରି ?

କୁଡ଼ିଆ ଭିତରେ ଧୀନା ଛିଣ୍ଡା ହେଁସ ଖଣ୍ଡେ ପାରି ଗଡ଼ିବାକୁ ଯାଉଥିଲା । ତିନିଦିନର ଉପାସରେ ତାର ଅଣ୍ଟା ଭାଙ୍ଗି ପଡୁଥିଲା; ଛିଡ଼ା ହେବାପାଇଁ ବଳ ପାଉ ନ ଥିଲା । ହଠାତ୍ ସେଠାରୁ ଉଠି କୁଅଁକୁ ଭ୍ରୂକ୍ଷେପ ନ ଦେଇ ପଧାନଙ୍କ ଭଙ୍ଗାପିଣ୍ଡା ପାଖରେ ଯାଇ ପହଁଚିଲା ।

ଧୀମାନ୍ ପଧାନେ ଘର ଭିତରେ ବସି ଖାତା ଲେଉଟାଉ ଥିଲେ; ଧୀନାକୁ ଦେଖି ପିଣ୍ଡାକୁ ବାହାରି ଆସି କହିଲେ, 'କିରେ ଧୀନା, ଏତେବେଳେ କୁଆଡ଼େ ?'

ଧୀନା ପିଣ୍ଡାତଳେ ବସିପଡି କହିଲା, 'ସାହୁକାରେ, ଆଉ କଅଣ ଛୁଆଟାକୁ ବଞ୍ଚାଇ ପାରିବି ନାହିଁ ? ତିନି ତିନି ଦିନ ହେଲା, ଖାଡାଖାଡ଼ି ଉପାସ । ତା ମୁହଁରେ ପେଜ ମୁନ୍ଦାଏ ଦେବି କୁଆଡୁ ?'

ପଧାନେ ସକାଳ ହେଲାଠାରୁ ପୁଣି ସକାଳ ହେଲା ପର୍ଯ୍ୟନ୍ତ ଶହ ଶହ ଥର ଏହି ଗୋଟାଏ କଥା ଶୁଣୁଛନ୍ତି । ଏହାର ସେ ଗୋଟିଏ ଉତ୍ତର ଠିକ୍ କରି ସାରିଛନ୍ତି, 'ସମସ୍ତଙ୍କ ତ ଏହି ଅବସ୍ଥା

ଯୋଚିଛନ୍ତି; କଅଣ କରାଯାଏ ? ଭଗବାନଙ୍କ ମାଡ଼, ମଣିଷର କି ହାତ ଅଛି ?' ଖୁବ୍ ନରମ ଭାବରେ ଧୀନାକୁ ପଧାନେ ସେହି କଥା କହିଲେ ।

ତାଙ୍କର ମଧ୍ୟ ଗୃହ କଅଣ ? ପଧାନଙ୍କର ଯାହା ଗୃଷ ଥିଲା, ସେଥିରେ ତାଙ୍କ ପିଲାପରିବାର ବର୍ଷକ ଚଳି ୧୦ ଭରଣ ବଳେ । ଏହାକୁ ହିଁ ସେ ଗାଆଁରେ ଦେବୀମହାଜନୀରେ ଲଗାନ୍ତି । ତାଙ୍କ ଧାନଘରେ କିଛି ହଜାର ହଜାର ଭରଣ ଧାନ ମହଜୁଦ୍ ନ ଥିଲା ଯେ, ସେ ସାରା ଗାଆଁର ଲୋକଙ୍କୁ ଚଳାଇ ପାରିବେ । ବିଶେଷତଃ, ଏ ବର୍ଷ ମଧ୍ୟ ତାଙ୍କର ସମୁଦାୟ ଜମିର ଫସଲ ବତାସରେ ବା ଶିଲକା ବଢ଼ିରେ ମରି ଯାଇଛି । ଆସନ୍ତା ବର୍ଷକ ସେ କେମିତି ଚଳିବେ, ଏହା ତାଙ୍କ ପକ୍ଷରେ ସବୁଠାରୁ ବଡ଼ ଚିନ୍ତା । ପବନବାତ୍ୟାରେ ତାଙ୍କର ଧାନ ଘର ଭାଙ୍ଗି ପଡ଼ି ଅନେକ ଧାନ ନଷ୍ଟ ହୋଇଯାଇଛି । ତା ପରେ ସାଧ୍ୟ ମତେ ସେ ଗାଆଁର ଲୋକଙ୍କୁ ସେରେ ଗଉଣିଏ କରି ସାହାଯ୍ୟ କରି ଆସିଛନ୍ତି । ଅବଶିଷ୍ଟ ଯାହା ଅଛି, ତାହା ମଧ୍ୟ ବର୍ଷକ ପାଇଁ ତାଙ୍କୁ ଯଥେଷ୍ଟ ନୁହେଁ । ସେ ବା କରିବେ କଅଣ ?

ଧୀନା ନିଜେ ନ ହେଲେ ମଧ୍ୟ ଗାଆଁର ଅନ୍ୟ ଲୋକେ ପଧାନଙ୍କଠାରୁ ଠିକ୍ ଏହି ଉତ୍ତର ପାଇଥିବା କଥା ସେ ଶୁଣିଛି । ସେ ଆଜି ଏପରି ଅବସ୍ଥାରେ ପହଞ୍ଚିଛି, ଯେଉଁଠି ତାକୁ ସେରେ ଚାଉଳ ଦରକାର । ସମୁଦାୟ ପୃଥିବୀର ମାଲିକ ଯଦି ସେ ହୋଇଥାନ୍ତା, ତଥାପି ସେରେ ଚାଉଳ ମୂଲ୍ୟରେ ସମୁଦାୟ ପୃଥିବୀକୁ ସେ ଖୁସିରେ ଦେଇ ଦିଅନ୍ତା ।

ସେ କହିଲା, 'ସାହୁକାରେ' ମୁଁ ଚାଉଳ ସେରେ ମାଗୁ ନାହିଁ କି ଧାନ ପାଞ୍ଚ ଗଉଣୀ ଋଣ ଲୋଡ଼ୁ ନାହିଁ । ମୁଁ ବର୍ତ୍ତମାନ ବଞ୍ଚି

ଯିବାକୁ ଚାହୁଁଛନ୍ତି । ମୋର, ମୋ ପିଲାପରିବାରର ଜୀବ ରହିଲେ ସିନା ଜମିବାଡ଼ି ଘରଦ୍ୱାର କରିବ ? ମୁଁ ତୁମର ଦୁଇଭରଣ ଧାନ ଧାରିଛି, ମତେ ଆଉ କିଛି ଚାଉଳ ଦିଅ । ମୋର ସବୁତକ ଜମି ମୁଁ ତମକୁ ଦେଇ ଦେଉଛି ।'

ପଧାନେ ବ୍ୟସ୍ତ ହୋଇ ପଡ଼ିଲେ । କହିଲେ, 'ସବୁତକ ଜମି ତ ମୋତେ ଦେବୁ, ଚଳିବୁ କେମିତି ?'

ଦୀନା ଧୀରସ୍ଥିର ଭାବରେ କହିଲା, 'ସେ ଚିନ୍ତା ବର୍ତ୍ତମାନ ନାହିଁ । ବର୍ତ୍ତମାନ ବଞ୍ଚିବା ଚିନ୍ତା । ମୁଁ ବଞ୍ଚିଥିଲେ ସିନା ଜମିରେ ଚାଷ କରିବି; ମୁଁ ମଲା ଉତ୍ତାରୁ ମୋର ଜମି କଅଣ ହେବ ? ବଞ୍ଚିଥିଲେ ତମ ଘରେ ମୂଲ ଲାଗି ଖାଇବି; ସେଥି ମୂଲ ଯା ପାଇବି ପିଲାକବିଲାଙ୍କ ମୁହଁରେ ପାଣିଟୋପାଏ ମୁନ୍ଦାଏ ଦେବି ।'

ଗଡ଼ ଭିତରେ ଦୀନାର ଜମି ଥିଲା, ସେ ଜମିପ୍ରତି ପଧାନଙ୍କର ଅନେକ ଦିନରୁ ଆଖି ଥିଲା । ବର୍ତ୍ତମାନ ଗୋଟାଏ ସୁବିଧା ପଡ଼ିଛି; ସେ ଛାଡ଼ନ୍ତି କେମିତି ? ତଥାପି ନିଜେ ଧରା ପଡ଼ି ନ ଯିବାପାଇଁ କହିଲେ, 'ଦେଖ ବୁଝିବିଚାରି ଯାହା କରିବାର କର । ହଁ, ଏ କଥା ସତ, ଆଗେ ବଞ୍ଚିରହିଥିଲେ ପୁଣି ଜମିବାଡ଼ି ହେବ । ଏ ଦୁର୍ଯୋଗ ଦାଉରୁ ଆଗେ ତୁ ପିଲାଛୁଆଙ୍କୁ ଧରି ବଞ୍ଚି ଯା । ଗୌଣିଏ ଚାଉଳ ନେଇ ଯା, ତା ପରେ ଯାହା କରିବାର କରିବା ।'

ପଧାନେ ଘର ଭିତରକୁ ଗଲେ । ଗୌଣିଏ ଚାଉଳ, ରସିଦ ଟିକଟ ମାରିଥିବା ଖଣ୍ଡେ ଅଲେଖା କାଗଜ, ଟିପ ଦେବା ସରଞ୍ଜାମ ଓ ଦୁଆତ କଲମ ନେଇ ଦିଣ୍ଡାକୁ ଆସି କହିଲେ, 'ଦେ ଏ ଟିକଟ ପାଖରେ ଗୋଟାଏ ଟିପ ମାଡ଼ି ଦେଇ ଦସ୍ତଖତଟା କରି ଦେ । ଭାବି-ଚିନ୍ତି ଦେଖ । ମୁଁ କିଛି କହୁ ନାହିଁ, ଏ ବର୍ଷ ନ ହେଲେ ଆରବର୍ଷ ଦେବୁ, ଆରବର୍ଷ ନ ହେଲେ ତା ଆରବର୍ଷ ଦେବୁ ।'

ଧାନା କାଣଧରେ ରସିଦ୍‌ ଟିକଲ ପାଖରେ ଟିପଦେଇ ଟିକଲ ଉପରକୁ ମଡ଼ାଇ ନିଜ ନାଆଁ ଦସ୍ତଖତ କରିଦେଲା; ତା ପରେ ଗୁଞ୍ଜଲ ଗୌଣିକ ନିଜ କାନରେ ବାନ୍ଧି କହିଲା, 'ସାହୁକାରେ, ଯେଉଁରେ ଗୁଞ୍ଜଲ ପାଇଁ ଯାହାର ସ୍ତ୍ରୀ ବାଳକ ତିନି ତିନି ଦିନ ଭୋକିଲା ଅଛନ୍ତି, ମରିବାକୁ ବସିଛନ୍ତି, ସେ ଆଉ ଭାବିବ କଅଣ ? ଭାବି ଲାଭ କଅଣ ? ମୁଁ କଅଣ ବୁଝୁ ନାହିଁ ଯେ, ଏ ଗୌଣିକ ଗୁଞ୍ଜଲ ପାଇଁ ମୁଁ ମୋର ବାପ ଗୋସେଇଁ ବାପର ଗୁରୁ ଗୁରୁମାଣ ସୁନା ଥାଳ ପରି ଜମି ତମକୁ ଦେଇଗଲି । ଏ ଗୌଣିକରେ କେତେ ଦିନ ଚଳିବ ? ନ ଖାଇ ମରିବାକୁ ତ ହେବ, ଏ କଥା ମୋତେ ସିଧା ସଳଖ ଦେଖା ଯାଉଛି । କଥା ଏତିକି ବାକି ରହୁଛି, ଜୀଇଁ ଥାଉ ଥାଉ ସାରଅର ଦୁଃଖ, ଛୁଆଙ୍କର ଦୁଃଖ ଦେଖୁଛି କେତେବେଳେ ? ମୁଁ ଆଗେ ଯାଏଁ, ତାପରେ ସେମାନଙ୍କ ଭାଗ୍ୟ ସେମାନେ ଭୋଗିବେ ?'

ନିଶା ଖାଇଲାପରି ଟଳି ଟଳି ସେ ପଧାନ ପିଣ୍ଡା ପାଖରୁ ନିଜର କୁଡ଼ିଆ ଅଡ଼କୁ ଆସିଲା । ତିନି ତିନି ଦିନ ଖାଡ଼ା ଉପାସ —ଏକା ନିଜେ ନୁହେଁ, ତାର ସ୍ତ୍ରୀ, ତାର ବର୍ଷକର ପୁଅ । ସେଥିରେ ସେ ବିଚଳିତ ହୋଇ ନ ଥିଲା । ପୂର୍ବପୁରୁଷର ଜମି-ଗୁଡ଼ାକ ପଧାନ ହାତକୁ ଟେକି ଦେଇ ଆସି ସେ ମନେ କଲା, ତାର ସଂସାର ସରିଗଲା; ତା ପଛରେ ଆଉ ଆକାଶ ପୃଥିବୀ ଶୂନ୍ୟ, ତାର ବର୍ତ୍ତମାନ କିଛି ନାହିଁ, ଭବିଷ୍ୟତ୍ ପାଇଁ ବି କିଛି ରହିଲା ନାହିଁ ।

ନିଜର ରକ୍ତ ଶୁଖାଇ, ନିଜର ପରିଶ୍ରମ ଦେଇ, ନିଜେ ଗଢ଼ିଥିବା, ବଢ଼ାଇଥିବା, ସନ୍ତାନକୁ ଅଭାବ ଉତ୍କଟ ତାଡନା ସମ୍ମୁଖରେ ବୁଭୁକ୍ଷାର ଯୂପକାଷ୍ଠରେ ନିଜ ହାତରେ ବାନ୍ଧି ନିଜେ ବଳିଦେଇ ଆସି ଲୋକ ଯେପରି ନିର୍ବାକ, ନିର୍ବେଦ, ଭୀଷଣ ଗମ୍ଭୀର ହୋଇପଡ଼େ, ଧାନାର ଅବସ୍ଥା ଠିକ୍ ସେହିପରି ହୋଇଗଲା ।

ଏହି ଜମି—ଏ ଗୃହର ସହିତ ତାହାର ପିଲାଦିନର ସମ୍ପର୍କ । ଏହାଂତାର କଳଙ୍କର ଅଧେ ଅଂଶ ମାଡ଼ି ରହିଥିଲା । ଏହାର କୋଳରେ ସେ ଲାଳିତପାଳିତ, ଏହାକୁହିଁ ଘେରି ଏ ପର୍ଯ୍ୟନ୍ତ ତାର ଜୀବନ କଟିଯାଇଛି । ଏହି ଜମି—ଦୀନା ପକ୍ଷରେ ଏହା ନିର୍ଜୀବ ମାଟିର କଅଁର ନୁହେଁ; ଜୀବନ୍ତ ଅସ୍ଥିତ୍ୱ । ଏହାର ପ୍ରତ୍ୟେକ ହିଡ଼, ପ୍ରତ୍ୟେକ ମୋଡ଼, ଏହାର ହିଡ଼ ଉପରେ ଥିବା ପ୍ରତ୍ୟେକ ବେଣାଚୁଦା ସହିତ ସେ ପରିଚିତ । ତାର ପିଲାଦିନର କେତେ ସ୍ମୃତି, ବଡ଼ଦିନର କେତେ କଳ୍ପନା, କେତେ ଆଶା, କେତେ ସୁଖ ଦୁଃଖର କଥା ଏହାର ମାଟି ସହିତ ଜଡ଼ିତ ହୋଇରହିଛି । ସାରିଆ ଯେତେବେଳେ ତାଙ୍କ ଘରକୁ ଆସେ ତାର କେତେ ମଧୁର ସ୍ମୃତିକୁ ହଳ କରିବା ସଙ୍ଗେସଙ୍ଗେ ସେ ଏହି ଜମିରେ ଖଣି ପକାଇ ଦେଇ ଯାଇଛି । ଦିନେ ସାରିଆ ତା ଗୁନ୍ଥରେ ହାତବୁଲାଇ କହୁଥିଲା, 'ତମେ ଶୁଖି ଯାଉଛ କାହିଁକି, ଏତେ ଖଟୁଣି ଖଟ ନା' । ତହିଁ ଆରଦିନ ହଳ କରୁ କରୁ ସେ କଥା ତାର ମନେ ପଡ଼ିଗଲା, ସେ ହସିଲା । ଯେଉଁଦିନ ତା ଘରେ ପୁଅଟିଏ ଜନ୍ମ ହେଲା, ତହିଁ ଆର ଦିନ ସେ ହିଡ଼ ମୁଣ୍ଡରେ ବସି ଭାବିଥିଲା । ଏ ପୁଅଟି ବଡ଼ ହେଲେ ତାର ପରି ଏ ଜମି ଚାଷ କରିବ । ଏ ସବୁ କଥା ଏ ଜମିର ପ୍ରତି ଧୂଳିକଣା ସହିତ ଜଡ଼ିତ ହୋଇ ରହିଛି । ଆଜି ଆଜ ? ସେ ନିଜର ଖାଲି ଅଙ୍ଗକୁ ଦୃଷ୍ଟି ଦେଲା —ହାଡ଼ ବାହାରି ପଡ଼ିଲାଣି; ତା ସାରିଆ ତିନି ଦିନ ଉପାସରେ କୁଡ଼ିଆ ପିଣ୍ଡିରେ ପଡ଼ିଛି, ତା ପୁଅ ପେଜ ମୁନ୍ଦାଏ ନ ପାଇ ମରିବାକୁ ବସିଛି, ଆଜି ସେ ତାର ଅତି ଆପଣାର ଜମିଗୁଡ଼ିକ ପଧାନ ହାତକୁ ଟେକି ଦେଇ ଗଉଡ଼ୀଏ ଗୃହଳ କାନରେ ବାନ୍ଧି ବୁଲିଛି ।

ମନକୁ ମନ ଦୀନା ହସିଲା । ଅତି ମାର୍ମିକ ଏ ହସ । ଅତି ଦାରୁଣ ଏହାର ଅର୍ଥ । ଅତି ନିର୍ମମ ଏହାର ଅଭିବ୍ୟକ୍ତି ।

ପ୍ରଳୟର ଚରମ ସୀମାରେ ଜନ୍ମ ବ୍ରୁଦ୍ର ଦେବତାର ଧ୍ୱଂସ-ତାଣ୍ଡବର ପ୍ରତି ପଦକ୍ଷେପରେ ଯେତେବେଳେ ଗ୍ରହରେ ଗ୍ରହରେ, ନକ୍ଷତ୍ରରେ ନକ୍ଷତ୍ରରେ, ଧ୍ୱଂସର ଅଗ୍ନି ତରଙ୍ଗ ଖେଳଯାଏ, ସେତେବେଳେ ତାଙ୍କ ହୃଦୟରେ ବୋଧହୁଏ ଏହିପରି ହଳାହଳମୟ ହାସ୍ୟ ଫୁଟି ଉଠଥାଏ ।

---

## ସାତ

୧୯୦୨ ଖ୍ରୀଷ୍ଟାବ୍ଦ । ଅଶ୍ୱିନ ମାସରେ ଓଡ଼ିଶାର ଉତ୍ତର ଭାଗ, କାର୍ତ୍ତିକରେ ତାର ଦକ୍ଷିଣ ଭାଗ ବାତ୍ୟାରେ ଧ୍ୱଂସ ହୋଇଗଲା; ଧାନ ଫସଲ ନଷ୍ଟ ହୋଇଗଲା । ମାର୍ଗଶୀର, ପୌଷରେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳର ଚଷା ବିଲକୁ ଦାଆ ଧରିଗଲା, ଫସଲ କାଟିଲା, ଖଳାକୁ ଆଣି ଅମଳ କରି ଦେଖିଲା, ତାହା ଗଲାବର୍ଷ ଫସଲର ତିନିଭାଗରୁ ଭାଗେ ମଧ୍ୟ ନୁହେଁ । ତା ବିଲର ଫସଲକୁ ମଧ୍ୟ ପବନ ପିଟି ଝଡ଼ାଇ ଦେଇଛି, ରହିଯାଇଛି କେବଳ ଅଗାଡ଼ି ଅଡ଼ି କଣ୍ଟା । ପ୍ରଦେଶର ଯେଉଁ ସବୁ ଅଂଶ ଉପରେ ଝଡ଼ ବୋହିଯାଇଥିଲା, ସେ ସବୁ ଅଞ୍ଚଳରେ ତ ସେ ସମୟରୁ ଦୁର୍ଭିକ୍ଷ ଲାଗିଥିଲା । ପୁଷ ମାସ—ଯେତେବେଳେ ଚାଉଳ ହାଣ୍ଡିରେ ମଧ୍ୟ ପେଜ ବହିବା କଥା—ତାହାରି ମଝିରୁ ପ୍ରଦେଶସାରା ଦୁର୍ଭିକ୍ଷର କରାଳ ଛବି ଦେଖା ଦେଲା । ମାଘମାସ ବେଳକୁ ଖାଦ୍ୟ ଅଭାବରେ ଲୋକ ମଲେ, ଫାଲ୍‌ଗୁନ ମାସବେଳକୁ ଗୃହଅଡ଼େ ହାହା-କାର ପଡ଼ିଗଲା । ଯେଉଁମାନେ କ୍ଷିରପୁର ଖାଉଥିଲେ, ସେମାନେ

ଢୁଣ୍ଢିଲ ଶୁଙ୍ଘିଲରେ ଚାଲିଲେ ; ଯେଉଁମାନେ ଦୁଇବେଳା ପେଟ ପୁରାଇ ଖାଉଥିଲେ, ସେମାନେ ବେଳାଏ ଖାଇ ବଞ୍ଚିଲେ; ଯେଉଁମାନେ ଦିନକରେ ବେଳାଏ ଖାଇବାକୁ ପାଉଥିଲେ, ସେମାନେ ଶାଗପତ୍ର ଖାଇ ବଞ୍ଚିବାପାଇଁ ଚେଷ୍ଟାକଲେ । ଶାଗପତ୍ର ସରିଲା; ବାଡ଼ିର ବଣସାରୁ ମଧ୍ୟ ସରିଲା; ସେମାନେ ଅନାହାରରେ ରହିଲେ, ଘର ଛାଡ଼ିଲେ, ପିଲାକବିଲାଙ୍କୁ ଛାଡ଼ିଲେ ବା ବିକିଲେ, ଦୁର୍ଭିକ୍ଷର ପ୍ରେତମୂର୍ତ୍ତି ପରି ଦେଶସାରା ବୁଲିଲେ, ବାଟ କଡ଼ରେ ପଡ଼ି ମଲେ ।

ଗାଁ ଗହଳର ବାଟ କଡ଼; ମଲେ ଗଣୁଛି କିଏ ? କହିଲେ ଶୁଣୁଛି କିଏ ? ଅନାହାରରେ ପ୍ରାଣ ହରାଇଥିବା ଏହି ଲୋକଗୁଡ଼ାକର ଶେଷ ନିଃଶ୍ୱାସ ବିଷାକ୍ତ ବାଷ୍ପପରି ଦେଶର ପବନରେ ଭାସି ବୁଲିଲା, ବାୟୁମଣ୍ଡଳକୁ ଭାରାକ୍ରାନ୍ତ କରି ପକାଇଲା । ଯେଉଁମାନେ ଏହା ବୁଝି ପାରିଲେ, ସେମାନେ ଶଙ୍କିତ ହେଲେ, ବ୍ୟସ୍ତ ହେଲେ, ବିବ୍ରତ ହେଲେ, ଶେଷରେ ପାଟି ତୁଣ୍ଡ କଲେ; କିନ୍ତୁ ତାଙ୍କ ଅଡ଼କୁ ଚାହୁଁଛି କିଏ ? ତାଙ୍କ କଥା ଶୁଣୁଛି କିଏ ? ଯେଉଁମାନେ କର୍ତ୍ତା, ଯେଉଁମାନେ ଏ ଅବସ୍ଥାରେ କିଛି ପ୍ରତିକାର କରି ପାରନ୍ତେ; ସେମାନେ ହୁଏତ ମୂର୍ଖ, ଅନ୍ଧ, ଅଯୋଗ୍ୟ ବା ମାରାତ୍ମକ ରୂପେ ସ୍ୱାର୍ଥପର ।

ଦେଶରେ ଧାନ ନାହିଁ; ଅଥଚ ଏହି କର୍ତ୍ତା ଓ ତାଙ୍କ ଅନୁଗତ ଅନୁଚରମାନେ ଉଚ୍ଚକଣ୍ଠରେ ପ୍ରଚାର କରିବାରେ ଲାଗି ପଡ଼ିଲେ ଯେ, ଓଡ଼ିଶା ପ୍ରଦେଶ ଧାନ ଓ ଧନରେ ପରିପୂର୍ଣ୍ଣ ଅଛି; ଓଡ଼ିଶା ବାହାରେ ଯାହାର ଯେତେ ଦରକାର, ସେ ସେତେ ଧାନ ନେଇ ପାରିବ । ସେମାନଙ୍କର ଏପରି କହିବାରେ ଅର୍ଥ ଥିଲା । ଏ ଦେଶରୁ ଧାନ ବାହାରକୁ ଯିବ; ବାହାରର ଧାନବ୍ୟବସାୟୀମାନେ ଧାନ କିଣିବେ; ଲକ୍ଷ ଲକ୍ଷ ଟଙ୍କା କାରବାର ହେବ; ହୁଏତ ଭେଟିଦର୍ଶନୀ,

ଲାଭ ବା କମିସନ ସ୍ୱରୂପରେ ସେମାନଙ୍କ ଭାଗ୍ୟରେ ଲକ୍ଷ ନ ହେଉ ହଜାର ହଜାର ଟଙ୍କା ପଡ଼ିଲା। ଏ ଦେଶରେ କେତେ ହଜାର ଲୋକ ମଲେ, କେତେ ଶହ ଘର ଭାଙ୍ଗିଗଲା; ସେଥିରେ ସେମାନଙ୍କର ଯାଏ କେତେ, ଆସେ କେତେ ? ମନ୍ତ୍ରୀମାନଙ୍କର ଏ ଉଦାର ନୀତି ଏପରି ଭାବରେ ସଫଳ ହୋଇଗଲା ଯେ ତାଙ୍କର ବେଶ୍ବୁହା ଅନୁଚର, ଯେ ଖାଇବାକୁ ନ ପାଇ ପେଟବଳରେ ମାସ କେତେଟା ଆଗରେ ନିଜର ଇଜ୍ଜତ ରଖିଥିଲା, ତାର ଚାହାଘର ମଜଲିସରେ ଅମିର-ଓମରାମାନେ ଭୋଜି ଖାଉଥିଲେ, ଲାଟ- ବେଲାଟ ନିମନ୍ତ୍ରିତ ହୋଇ ଆସିଥିଲେ।

ଦେଶରେ ଲୋକେ ଖାଇବାକୁ ନ ପାଇ ମଲେ; ଏଣେ ବାହାରକୁ ଧାନ ବୁହା ଚାଲିଲା। ହୁକୁମ ଜାରି ହେଲା, ଖାଇବାକୁ ନ ପାଇ ଲୋକେ ମରୁଛନ୍ତି ବୋଲି କେହି କହିପାରିବେ ନାହିଁ। ସେମାନେ ତ ନିଜ ଘରେ ନିଜେ ମରୁଛନ୍ତି; ମିଛରେ କାହିଁକି ପାଟିତୁଣ୍ଡ କରି ମନ୍ତ୍ରୀଙ୍କ କାମରେ ବାଧା ଦେବ ? ଅବସ୍ଥା ଯେତେ-ବେଳେ ନିତାନ୍ତ ଗୁରୁତର ହେଲା, ସତ୍ୟର ଗଣ୍ଠି ଖସିଧରି ତାର ଚିତ୍କାରକୁ ପ୍ରତିରୋଧ କରିବା ଯେତେବେଳେ ଅସମ୍ଭବ ହେଲା, ସେତେବେଳେ ମଧ୍ୟ ଖାଇବାକୁ ନ ପାଇ, ମୁଠାଏ ଭାତ ନ ପାଇ ଲୋକେ ମରୁଛନ୍ତି, ଏ କଥା ମନ୍ତ୍ରୀମାନେ କହିଲେ ନାହିଁ। କହିଲେ, ଖାଦ୍ୟସାର ଊଣା ହେବାରୁ ଲୋକଗୁଡ଼ାକ ମରି ଯାଉଛନ୍ତି। ଖାଦ୍ୟ ତ ନାହିଁ; ସାର ଆସିବ କୁଆଡ଼ୁ ? ଲୋକଙ୍କର ମୁହଁର ଖାଦ୍ୟ କାଢ଼ି ନେଇ ଯେଉଁମାନେ ନିଜର ପେଟ ପୂର୍ଣ୍ଣ କଲେ, ସେମାନଙ୍କ ପକ୍ଷରେ ନିଜ ଖାଦ୍ୟର ସାରାଂଶ ଚିନ୍ତାରେ ବ୍ୟସ୍ତ ହେବା ସ୍ୱାଭାବିକ; କିନ୍ତୁ ଯେଉଁମାନେ ଖାଦ୍ୟାଭାବରେ ଶୁଖି ଶୁଖି ମଲେ, ସେମାନଙ୍କ

ବିଷୟରେ ଖାଦ୍ୟର ସାରାଂଶ ବିଷୟ ଅବତାରଣା କରି ସେମାନଙ୍କର ଅସ୍ମାକୁ ବ୍ୟଙ୍ଗ କରିବାର କି ଅଧିକାର ଅଛି ଏମାନଙ୍କର ?

ଦୁର୍ଭିକ୍ଷର ମହାମାରୀ ଓଡ଼ିଶାର ଗାଆଁଗହଳ ଅଞ୍ଚଳକୁ ଅତିକ୍ରମ କରି ସହରମାନଙ୍କୁ ଆକ୍ରମଣ କଲା । ସହରର ଅସଂଖ୍ୟ କୋଠାବାଡ଼ି, ଧନଜନ ଉପରେ ସେ ତାର ନିର୍ମମ ହସ୍ତ ବୁଲାଇ ଦେଲା । ସହରରେ ମଧ୍ୟ ହା ହାକାର ପଡ଼ିଗଲା । ବଜାରରୁ ଧାନ-ଚାଉଳ ଅଦୃଶ୍ୟ ହୋଇଗଲା । କଦବା କ୍ୱଚିତ୍ ଯଦି ଦେଖାଦେଲା, ତେବେ ଟଙ୍କାକୁ ସେରେ ଦୁଇସେର ଦରରେ । ଯେଉଁମାନଙ୍କର ଟଙ୍କା ଅଛି, ସେମାନେ କିଣି ଖାଇଲେ । ଯେଉଁମାନଙ୍କର ଟଙ୍କା ନାହିଁ ସେମାନେ ଚାହିଁ ରହିଲେ, ଉପାସ ରହିଲେ, ଶେଷକୁ ବାଟକରେ କୋଳଥ ସିଝାଇ ଗିଳିଗଲେ । ବଜାରରେ ଗହମ ନାହିଁ, ଚାଉଳ ନାହିଁ, ବିରି, ମୁଗ, ହରଡ଼, ବୁଟ କିଛି ନାହିଁ, ଶେଷରେ କୋଳଥ ମଧ୍ୟ ଉଭେଇଗଲା ! ବଡ଼ ବଡ଼ ସହରରେ ହଜାର ହଜାର ଲୋକଙ୍କ ଜୀବନରେ ଶୋକ ଉପାସ ନିତ୍ୟନୈମିତ୍ତିକ ଘଟଣା ହୋଇଗଲା ।

ପୁରପଲ୍ଲୀ, ସହରବଜାର ସବୁ ଅଞ୍ଚଳର ଅବସ୍ଥା ସମାନ । ଚାରିଆଡ଼େ ହା ଅନ୍ନ, ହା ଅନ୍ନ । ଏ ଦୁର୍ଭିକ୍ଷ ୧୮୬୨ ନଅଙ୍କକୁ ମଧ୍ୟ ବଳିଗଲା ।

କେବଳ ଧାନ ଚାଉଳ ନୁହେଁ, କେବଳ ଖାଦ୍ୟ ନୁହେଁ, ଲୁଗା-ପଟାଠାରୁ ଛୁଞ୍ଚି ଦିଆସିଲିର ମଧ୍ୟ ଦୁର୍ଭିକ୍ଷ ପଡ଼ିଲା; ଏ ସବୁର ଦାମ ୭ । ୮ ଗୁଣ ବଢ଼ିଗଲା । ସମସ୍ତ ସମୟରେ ମଧ୍ୟ ମିଳିଲା ନାହିଁ; କଲମ ନାହିଁ, ପେନସିଲ ନାହିଁ —ମିଳିରେ ତାର ଦାମ ୯ । ୧୦ ଗୁଣ ବଢ଼ି ଯାଇଛି; ବହି ପତ୍ର ନାହିଁ — ଅନେକ ପିଲାଙ୍କ ପଢ଼ାପଢ଼ି ବନ୍ଦ ହୋଇଗଲା । ଯେଉଁମାନଙ୍କ ହାତରେ ପଇସାପତ୍ର

ଯଥେଷ୍ଟ ଥିଲା, ସେମାନେ ଯେ କୌଣସି ମତେ, ପିଲାଙ୍କୁ ପଢ଼ାଇ-ବାଟା ବଜାଏ ରଖିଲେ । ଜିନିଷିପତ୍ର ନାହିଁ, ଲୁଗା ବା ପୋଲିଙ୍ଗ ତେଲର ଦାମ ୧୦ ଗୁଣ ବଢ଼ିଗଲା; ଲୋକେ ଅନ୍ଧାରରେ ରହିଲେ । ଦୁର୍ଭିକ୍ଷ କେବଳ ଖାଦ୍ୟର ନୁହେଁ; ଗୃହଅଡ଼େ, ସବୁ ବସ୍ତୁରେ ଦୁର୍ଭିକ୍ଷ ଘୋଟିଗଲା । ନଅଙ୍କ ଦୁର୍ଭିକ୍ଷର ଲୀଳାକ୍ଷେତ୍ର ଓଡ଼ିଶାରେ ମଧ୍ୟ ଏପରି ବ୍ୟାପକ ଦୁର୍ଭିକ୍ଷ କେବେ ପଡ଼ିଥିଲା ବୋଲି ଇତିହାସରୁ ଦେଖାଯାଏ ନାହିଁ ।

ଯେ କୌଣସି ସମାଜ ଏଡ଼େ ପ୍ରଚଣ୍ଡ ଆଘାତ ସହି ପାରନ୍ତା ନାହିଁ, ଭାଙ୍ଗି ପଡ଼ିଲା । ଗ୍ରାମକୁ ଗ୍ରାମ ଶ୍ମଶାନରେ ପରିଣତ ହେଲା । ବୃତ୍ତି, ବସ୍ତ୍ର ଚ୍ୟୁତ ଘଟିଲା; ଜୀବିକା ଭ୍ରଷ୍ଟ ଘଟିଲା; ସମାଜରେ ଚରମ ନୀତିଭ୍ରଷ୍ଟ ଦେଖା ଦେଲା । ଭାରତର ଜୀବନୀଶକ୍ତି, ଓଡ଼ିଶାର ଜୀବନୀଶକ୍ତି ଖୁବ ଠାଣି; ନଚେତ୍ ଦେଶ ଏ ଆଘାତ ସମ୍ଭାଳି ଛିଡ଼ା ହୋଇପାରି ନ ଥାନ୍ତା ।

ଏ ଏକ ଗୋଟାଏ ଭୀଷଣ ଅବସ୍ଥା, ଅତି ସାଘାତିକ ପରିସ୍ଥିତି; କିନ୍ତୁ ଦେବତାର ଅଭିଶାପ ଏଥିପାଇଁ ଦାୟୀ ନୁହେଁ । ମୂଳରୁ ଶେଷ ପର୍ଯ୍ୟନ୍ତ ଏହା ମାନବକୃତ । ଏଥିପାଇଁ ଦୃଢ଼ତଃ ଦାୟୀ ସେମାନେ, ଯେଉଁମାନଙ୍କ ହାତରେ ଦେଶର ଭାଗ୍ୟଡୋରି ନିହିତ ଥିଲା; ଯେଉଁ-ମାନେ ଇଚ୍ଛାକଲେ ଏ ଅବସ୍ଥାକୁ ବଦଳାଇ ଦେଇ ପାରିଥାନ୍ତେ ।

ହଁ, ଯେଉଁମାନଙ୍କ ହାତରେ ଦେଶର ରାଜନୀତି, ଅର୍ଥନୀତିର ମୂଳସୂତ୍ର ନିହିତ ସେମାନଙ୍କ ଅକ୍ଷମତା, ଅପାରଗତା, ବସ୍ତୁବୁଦ୍ଧି-ହୀନତା, ସ୍ୱାର୍ଥପରତା, ହୃଦୟହୀନତା, ନୀତିହୀନତା ଚରମ ଓ ନୃଶଂସ ଅମନୁଷ୍ୟତା ଯୋଗୁଁ, ସେହିମାନଙ୍କ ଦ୍ୱାରା, ଦେଶରେ କ୍ରୁର ଦୁର୍ଭିକ୍ଷ, ଦୁର୍ନିବାର ଅନଟନର ସୀମାତୀତ ବିଭୀଷିକା ଦେଖା ଦେଲା;

ଯେଉଁମାନଙ୍କ ଯୋଗୁଁ ଶତଶତ ଗୃହସଂସାର ଛିନ୍ନଭିନ୍ନ ହୋଇଗଲା; ହଜାର ହଜାର ବୃଦ୍ଧ-ବନିତା, ବାଳକ-ଯୁବକ ଗଣ୍ଡାଏ ଭାତ, ମୁଠାଏ ଖାଦ୍ୟ ନ ପାଇ ମୃତ୍ୟୁମୁଖରେ ପତିତ ହେଲେ । ଯେଉଁ ଅର୍ଥନୀତି ସେମାନଙ୍କ ମୁଖର ଗ୍ରାସ କାଢ଼ିନେବା ସଙ୍ଗେ ସଙ୍ଗେ ଶରୀରରୁ ଶେଷ ନିଃଶ୍ୱାସଟିକ ଭିଡ଼ି ବାହାର କରି ଦେଲା, ସେ ଅର୍ଥନୀତି ନାରକୀୟତାର ଚରମ ପରାକାଷ୍ଠା; ଯେଉଁ ରାଜନୀତି ସେମାନଙ୍କ ଦୁଃଖ ମୋଚନ କରି ପାରିଲା ନାହିଁ, ସେମାନଙ୍କୁ ମୃତ୍ୟୁ ମୁଖକୁ ଟାଣି ନେଇଗଲା, ସେଥିରେ ରାକ୍ଷସୀ ରକ୍ତଲୋଲୁପତାର ଚରମ ଛବି ପ୍ରସ୍ଫୁଟିତ । ୧୯୪୨—୪୩ର ଦୁର୍ଭିକ୍ଷ ଅନଟନ ଭାରତର ଅର୍ଥନୀତିକ, ରାଜନୀତିକ ପରସ୍ଥିତିର କ୍ରୂର ସ୍ମୃତିସ୍ତମ୍ଭରୂପେ ଇତିହାସ ପୃଷ୍ଠାରେ ଚିରକାଳ ରହିଥିବ; ଆଉ ଯେଉଁମାନଙ୍କ କ୍ରୂର କର୍ମରୂପେ ଏ ମହାମାରୀ ସଂଘଟିତ ହୋଇଥିଲା, ସେମାନଙ୍କ ଅସ୍ଥିମାଂସ ଧୂଳିରେ ପରିଣତ ହେଲାପରେ ମଧ୍ୟ ୧୯୪୨-୪୩ର ନରକଙ୍କାଳ ଶ୍ରେଣୀ ଏମାନଙ୍କ ଆଡ଼କୁ ଅଙ୍ଗୁଳି ସଙ୍କେତ କରି ବଜ୍ରନିନାଦରେ ଘୋଷଣା କରୁଥିବ—‘ଏହା ଏମାନଙ୍କର ରକ୍ତାକ୍ତ କୀର୍ତ୍ତି !’

---

## ଆଠ

‘ଆମ ଗୃହଅଙ୍ଗେ ଯେତେବେଳେ ଶହ ଶହ ଲୋକ ମୁଠାଏ ଭାତ ପାଉ ନାହାନ୍ତି, ବାପ ଯେତେବେଳେ ସନ୍ତାନକୁ ବିକି ଦେଉଛନ୍ତି, ମୁଠାଏ ଭାତ ବଦଳରେ ମାଆ ଯେତେବେଳେ ମୁମୂର୍ଷୁ ଶିଶୁ ମୁହଁରେ ଟୋପାଏ ଦୁଧ ଦେଇ ବଞ୍ଚାଇ ପାରୁ ନାହିଁ,

ଯେତେବେଳେ କ ଅଧିକାର ଅଛି ଆମମାନଙ୍କର, ଗୃହବେଳା ଗୃହଅର ଖାଇ ସୁଖରେ ଶୋଇବୁ' ଭଲ ଲୁଗା ପିନ୍ଧିବୁ, ମଉଜ କରିବୁ, ମଜଲିସ କରିବୁ ? ଆମେମାନେ ତ ମଣିଷ ! ଏହି ପ୍ରପୀଡ଼ିତ ମନୁଷ୍ୟଗୁଡ଼ିକ ପ୍ରତି ଆମର କଣ କିଛି କର୍ତ୍ତବ୍ୟ ନାହିଁ ? କ୍ଷୁଧା ଯଦି କଲେରା ବା ବସନ୍ତଠାରୁ ଭୟଙ୍କର ସଂକ୍ରାମକ ବ୍ୟାଧିରୂପ ଧାରଣ କରନ୍ତା, ଆମର ନିଜ ଜୀବନ ଯଦି କ୍ଷୁଧା-କୀଟାଣୁର ମାରାତ୍ମକ ରୋଗାକ୍ରାନ୍ତ ହେବାର ସମ୍ଭାବନା ଥାଆନ୍ତା, ତେବେ ହଜାର ହଜାର ଲୋକର ଏ ଅବସ୍ଥା ଦେଖି ଆମେ ନିଶ୍ଚିନ୍ତ ହୋଇ ରହି ପାରନ୍ତୁ କି ? ଆଜି ଏଇ କଟକ ସହର, ଏହାର ପ୍ରତି ରାସ୍ତାରେ ପ୍ରତି ଗଳିରେ ଦୁର୍ଭିକ୍ଷର ପ୍ରେତ ପରି ଶତଶତ ନରକଙ୍କାଳ ଘୂରି ବୁଲୁଛନ୍ତି । ସେମାନଙ୍କୁ ଦେଖିଲେ ଆଖିରୁ ରକ୍ତ ଫାଟିପଡ଼େ । ସେମାନେ ତ ଆମରି ପରି ମନୁଷ୍ୟ । ସେମାନଙ୍କର ତ ଆମରି ପରି ଦିନେ ଗୃହସଂସାର ଥିଲା । ଆଜି ସେମାନେ ଦାଣ୍ଡର ଭିକାରି, ଅନ୍ନର କାଙ୍ଗାଳ ! କାହିଁକି ? ମୁଠାଏ ଭାତ ପାଇଁ, ଗଣ୍ଡାଏ ଖାଇ ଜୀବନଟା ରଖିବା ପାଇଁ ତ । ଆଉ ଆମେ ?

ସନ୍ଧ୍ୟାର ଧୂସର ଆଲୋକ ପୃଥ୍ୱୀ ଉପରେ କ୍ରମେ ମାଡ଼ି ଆସୁଥିଲା । ଶରତ୍ ମହାନଦୀ କୂଳରେ ବୁଲୁଥିଲା ଆଉ ଭାବୁଥିଲା । ଗୃହଅନ୍ନେ ଘୋଟିଯାଇଥିବା ଅନଟନର ଛବି ତାକୁ ଉତ୍କ୍ଷିପ୍ତ କରି ପକାଉଥିଲା । ଅଭାବ ତାର ଅଳ୍ପ । ନିଜ ପରିଶ୍ରମରେ ସେ ଯାହା ଉପାର୍ଜନ କରେ ତାହାହିଁ ତା ପକ୍ଷରେ ଯଥେଷ୍ଟ । ସଂସାରରେ ଏପରି କୌଣସି ଆତ୍ମୀୟ ତାର ନ ଥିଲା, ଯେଉଁମାନଙ୍କ ଲାଗି ସେ ସବୁବେଳେ ଅସନ୍ତୋଷର ବୋଝ ମୁଣ୍ଡରେ ଧରି ସାରା ଦିନ ଧାଇଁ ବୁଲିବ । ନିଜର ବୋଲିବାକୁ ତାର କେହି ନ ଥିଲେ ; ସେଥିପାଇଁ ସେ ସ୍ୱ.କ

ପୃଥିବୀର ମନୁଷ୍ୟଙ୍କୁ ନିଜ ହୃଦୟ ଭିତରେ ନିବିଡଭାବେ ଅନୁଭବ କରିପାରିଥିଲା । ଶରତ୍ ମନୁଷ୍ୟ ମୁହଁରେ ହସ ଦେଖିବାରେ ଆନନ୍ଦ ପାଉଥିଲା; ସେଥିପାଇଁ ଯେଉଁଠାରେ ଦୁଃଖ, ଯେଉଁଠାରେ ଯନ୍ତ୍ରଣା, ସେଠାକୁ ଶରତ୍‌ର ହୃଦୟ ସହାନୁଭୂତିର ବାହୁ ବିସ୍ତାର କରି ଆପେ ଆପେ ଧାଇଁ ଯାଉଥିଲା, ସେହିଠାରେ ହିଁ ସେ ଉତ୍‌କ୍ଷିପ୍ତ ହୋଇ ପଡୁଥିଲା, ବିଚଳିତ ହୋଇ ପଡୁଥିଲା, ନିଜ ଅକ୍ଷମତାରେ ନିଜେ ବିରକ୍ତ ହେଉଥିଲା ।

ଚାରିଆଡ଼େ ହାହାକାର, ଚାରିଆଡ଼େ ଅଭାବର କଙ୍କାଳଶ୍ରେଣୀ । ଶରତ୍ ବିଚଳିତ ହୋଇପଡ଼ିଲା; ତାର ଦମ ବନ୍ଦ ହୋଇଗଲା ପରି ଏବେ ହେଲା । ଶରତ୍ ବାଟରେ ଗଲେ, ନରକଙ୍କାଳଟିଏ ସାମନାରେ ଦେଖିଲେ କ୍ରୋଧରେ ତାର ରକ୍ତ ଫେନିଳ ହୋଇ ଉଠେ । ସେ ଗୋଟାଏ କିଛି କରି ପକାଇବା ପାଇଁ ଉଦ୍ୟତ ହୋଇପଡ଼େ । ଦୁର୍ଭେଦ୍ୟ ପ୍ରସ୍ତର ପ୍ରାଚୀର ପଛରେ ଆବଦ୍ଧ ଥିବା ବନ୍ଦୀ ପରି ଅକ୍ଷମତାର ବଜ୍ରମୁଷ୍ଟି ଆବେଷ୍ଟନୀ ଦେହରେ ସେ ମୁଣ୍ଡ ପିଟି ଦିଏ; ତାର ଶକ୍ତି କେତେ କ୍ଷୁଦ୍ର, କ୍ଷମତା କେତେ ସୀମାବଦ୍ଧ, ଏହା ଅନୁଭବ କରି ସେ ନିଜ ଉପରେ ବିରକ୍ତ ହୋଇଉଠେ । ସେ ପଳାଇ ଯିବାକୁ ଚାହେଁ—ନିଜ ପାଖରୁ, ନିଜର ଏସବୁ ଭାବନା ପାଖରୁ; କିନ୍ତୁ ଯିବ କୁଆଡ଼େ ? କୁଆଡ଼କୁ ଗଲେ ସେ ନିଜର ଅନୁଭୂତି ହାତରୁ ମୁକ୍ତି ପାଇବ ? ନା, ସେ ଆଡ଼େ ବାଟ ନାହିଁ । କିନ୍ତୁ ଆଉ କୌଣସି ଆଡ଼େ କିଛି କରିବାର ତ ଉପାୟ ନାହିଁ । ନିଜର ଶକ୍ତି ଅନୁସାରେ, ନିଜର ସାମର୍ଥ ଅନୁସାରେ କିଛି କରି ଶାନ୍ତି ଲାଭ କରିବାର ତ କୌଣସି ପନ୍ଥା ଦିଶୁ ନାହିଁ । ଗୋଟାଏ ପଦଶର୍, ଗୋଟାଏ ଛାତିର ଲୋକ ଯେତେବେଳେ ବୁଭୁକ୍ଷିତ ହୋଇ

ଛନ୍ତି, ସେତେବେଳେ ବ୍ୟକ୍ତିଗତ ସାମର୍ଥ୍ୟଦ୍ୱାରା କ ପ୍ରତିକାର କରାଯାଇ ପାରେ ତାର ?

ପ୍ରଥମେ ପ୍ରଥମେ ସେ ନିଜ ଖରଚ, ନିଜର ଖାଇବା କମାଇ ଜଣେଅଧେ ଦୁଃସ୍ଥଙ୍କ ମୁହଁରେ ପାଣି ମୁନ୍ଦାଏ ଦେଉଥିଲା । ରାତି ୧୧ ଟା । ସେ ଦିନ ସେ ବସାକୁ ଫେରୁଛି । ଗୋଟାଏ ୧୦ ୧୨ ବର୍ଷର ପିଲା, ଅସ୍ଥିଚର୍ମ ରହିଛି, ଖଣ୍ଡେ ଛିଣ୍ଡାକନା ଗୁଡ଼େଇ ହୋଇ ହାତରେ ଟିଣ ଡାଟିଆ ଖଣ୍ଡେ ଧରି ଶରତକୁ କହିଲା, 'ବାବୁ, ପଇସାଟିଏ ।'

ଶରତ୍ ଛିଡ଼ା ହୋଇପଡ଼ିଲା ; ତାକୁ ପଚାରିଲା, 'ପଇସାଟିଏ ନେଇ କଅଣ କରିବୁ ?'

'ଦୁଇଦିନ ହେଲା କିଛି ଖାଇ ନାହିଁ ; କିଛି କିଣି ଖାଇବି ।

'ଏଡ଼େ ବଡ଼ ସହରରେ ଦୁଇଦିନ ହେଲା ତୋତେ କେହି କିଛି ଦେଲେ ନାହିଁ ?'

'ବାବୁ, ଆମପରି ତ ହଜାର ହଜାର ବୁଲୁଛନ୍ତି; କିଏ କେତେ ଦେବ'' ?

ଶରତ୍ ଭାବିଲା, ଏହା ଅକାଟ୍ୟ ସତ୍ୟ । କିଏ କେତେ ଦେବ ? ପୁଣି କେତେ ଦେବ ଯେ ହଜାର ହଜାର ଲୋକଙ୍କର ଦିନକର ନୁହେଁ, ମାସକର ନୁହେଁ, ବର୍ତ୍ତମାନ ଓ ଭବିଷ୍ୟତର କ୍ଷୁଧା ମେଣ୍ଟିବ ? ସେ ତୁନି ହୋଇଗଲା ।

ପିଲାଟା ପୁଣି ମାଗିଲା, 'ବାବୁ, ଦିଅ !'

ନିକଟରେ ଥିବା ଗୋଟିଏ ଗୁଡ଼ିଆଦୋକାନ ପାଖକୁ ଶରତ୍ ତାକୁ ଡାକିନେଇ କହିଲା, 'ତୁ ଯେତେ ଖାଇବାର ଖାଅ ! ମୁଁ ଦେଉଛି, ଯେତେ ପଇସା ହେବ ଦେବି ।'

ପିଲଟି କହିଲା, 'ନାହିଁ ବାବୁ' ତମେ ଯାହା ଦେବାକୁ ହିଅ; ମୁଁ ନେଇଯିବି । ମୋର ବାପ, ମାଆ, ଦୁଇଟି ସାନ ସାନ ଭାଇ ଦୁଇଦିନ ହେଲା କିଛୁ ଖାଇ ନାହାନ୍ତି ।'

ଶରତ୍ ଚମକି ପଡ଼ିଲା । ଏଇ ପିଲଟି ଦୁଇଦିନ ହେଲା ଖାଇ ନାହିଁ । ସାମନାରେ ଗୁଡ଼ିଆଦୋକାନରେ ରୁଚିକର ଖାଦ୍ୟ-ସମ୍ଭାର । ପିଲାଟି ଯେତେ ଖାଇବ ଶରତ୍ ଦେବାକୁ ରାଜି; କିନ୍ତୁ ଏ ପିଲଟିର ନିଜର ପେଟର ଚିନ୍ତା ଯେତେ ନାହିଁ, ତାର ମାଆ ବାପ, ତା ଭାଇ ଦୁଇଟିର ପେଟର ଚିନ୍ତା ସେତେ ! ମନୁଷ୍ୟ ଭିତରେ କେବଳ ମହାପୁରୁଷ ମାନେହିଁ ଏତେ ବଡ଼ ପ୍ରଲୋଭନ ମୁଖରେ ଏପରି ଅଭ୍ରଭେଦୀ ସଂଯମ ସାଧନା କରି, ଏହିପରି ସ୍ୱାର୍ଥ ତ୍ୟାଗ କରି ପାରନ୍ତି । ଆଜି ଏ—ଛିଣ୍ଡା କନା ପିନ୍ଧିଥିବା ଅସ୍ଥିକଙ୍କାଳସାର ଦଶବାର ବର୍ଷର ଏ ପିଲାଟାଏ ! ଶରତ୍ ଭାବିଲା ; ବୁଝିଲା ଦୁଃଖ ଯନ୍ତ୍ରଣା ଏମାନଙ୍କ ଭିତରେ ଥିବା ମନୁଷ୍ୟତାକୁ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କରୁଛି ।

ଏ ପିଲାଟି—ଏହା ତୁଳନାରେ ସମାଜରେ ଯେଉଁମାନେ ବଡ଼, ଯେଉଁମାନେ ମାନ୍ୟଗଣ୍ୟ, ଦୋତାଲା କୋଠାର ବିଦ୍ୟୁତାଲୋକିତ କକ୍ଷରେ ଦୁଗ୍ଧଫେନନିଭ ସୁଖଶଯ୍ୟାରେ ଶୟାନ ହୋଇ ଯେଉଁମାନେ ଲୋକଙ୍କଠାରୁ ସମ୍ମାନ ଦାବୀକରନ୍ତି—ସେମାନେ କେତେ ହୀନ, କେତେ ନୀଚ, କେତେ ଅପଦାର୍ଥ ! ନିଜର ସ୍ୱାର୍ଥ ପାଇଁ ଏମାନେ ନରହତ୍ୟା କରି ପାରନ୍ତି । ଆଇନସଂଗତ ନରହତ୍ୟା କରିବାରେ ଏମାନେ ଅଭ୍ୟସ୍ତ ମଧ୍ୟ । ଏମାନେ ମନୁଷ୍ୟ ନୁହନ୍ତି, ମନୁଷ୍ୟ ପଦବାଚ୍ୟ ନୁହନ୍ତି— ଏମାନେ ରାକ୍ଷସ, ପିଶାଚ, ରକ୍ତ-ଲୋଲୁପ ଦାନବ ! ଏଇ କୋଠା, ଏଇ ସମ୍ପତ୍ତି, ଏଇ ବାଙ୍କ

ବ୍ୟସନର ସାମଗ୍ରୀ, ଏଇ ମାନସମ୍ମାନର ସମ୍ବଳ—ଏସବୁ ଏହି ଦେଶର ଏହିପରି ନରକଙ୍କାଳମାନଙ୍କର ରକ୍ତରେ ଗଠିତ ! ଏମାନଙ୍କର ମୁଖର ଗ୍ରାସ କାଢ଼ି ନେଇ ବଡ଼ ଲୋକର ବଡ଼ଲୋକୀ ସମ୍ଭବ ହୋଇଛି । ଦୁଃଖୀର ଝାଳରେ, ଗରିବର ପରିଶ୍ରମରେ ଧନୀର ଧନ ଉଅର । ଧନ ଦୁଃଖୀର, ଗରିବର ସମ୍ପତ୍ତି—ବଡ଼ଲୋକର ସେଥିରେ ଅଧିକାର ନାହିଁ । ବଡ଼ଲୋକ କେବଳ ଚୋରି କରି, ଡକାୟତି କରି; ଧସ୍ତାବାଜି କରି ଗରିବଠାରୁ ତାହା କାଢ଼ି ନେଉଛି । ଆଇନକାନୁନ, ପୁଲିସଫୌଜ ସାହାଯ୍ୟରେ ସେ ତାକୁ ରକ୍ଷା କରୁଛି । ଦେଶରେ ଗରିବ ଶତକଡ଼ା ଅନେଶୋତ ଭାଗ । ଏମାନେ ଗରିବ—ତେଣୁ ଅଳ୍ପରେ ସନ୍ତୁଷ୍ଟ ମନୁଷ୍ୟ । ଏ ବଡ଼ ଲୋକଗୁଡ଼ାକର ଚୋରି ବଦମାସୀ ସେମାନେ ସହି ଯାଉଛନ୍ତି । ଗରିବମାନେ ଯଦି ଏକାଠି ମିଶି ଧନୀଠାରୁ ତାଙ୍କର ନ୍ୟାଯ୍ୟ ଗଣ୍ଡାକ କାଢ଼ି ନେବାକୁ ଉଦ୍ୟତ ହୁଅନ୍ତି; ତେବେ ପୃଥିବୀରେ କେଉଁ ଶକ୍ତି ଅଛି ସେମାନଙ୍କୁ ବାଧା ଦେବ, ପୃଥିବୀରେ କାହାର ସାଧ ଅଛି ସେମାନଙ୍କ ଆଗରେ ବାଧାରୂପେ ଛିଡ଼ା ହେବ ?

ଶରତ ମନେକଲା, ଏ ଯେଉଁ ସମୟ, ଏଥିରେ ଦୁଃଖୀ-ଗରିବର ସଂଯତ ସନ୍ତୋଷ ଉପରେ ପ୍ରଚଣ୍ଡ ଆଘାତ ବାଜୁଛି । ମୁଠାଏ ଖାଇବାକୁ ନ ପାଇ ସେମାନେ ଏକ ବିରାଟ ବିପ୍ଳବର ଅଗ୍ରଦୂତ ରୂପେ ଦେଶର ଚାରିଆଡେ଼ ଘୂରି ବୁଲୁଛନ୍ତି । ଏ ପରିସ୍ଥିତିର ଅନ୍ତସ୍ତଳରେ ଲେଲିହାନ ଅଗ୍ନିତରଙ୍ଗ ଧୀରେ ଧୀରେ ଜଳି ଉଠୁଛି; ଆଉ ତାର ସ୍ଫୁଲିଙ୍ଗ ଚାରିଆଡ଼େ ବିଚ୍ଛୁରିତ ହୋଇ ପଡ଼ୁଛି । କେବଳ ଗୋଟାଏ ପାଦ—ଆଉ ଗୋଟିଏ ପାଦ ଆଗକୁ—ତାପରେ ଦେଶରେ ପ୍ରଳୟଙ୍କର ଦାବାନଳ ଜଳିଉଠି ପୋଡ଼ିଜାଳି ସମସ୍ତଙ୍କୁ ଭସ୍ମସାତ୍ କରିଦେବ ।

ତା' ପାଖରେ ଯେତେ ପଇସା ଥିଲା, ଶରତ୍ ସବୁତକ ପିଲାଟି ହାତରେ ଦେଇ ଏକମୁହାଁ ହୋଇ ଚାଲିଗଲା । ପିଲାଟି ତା ଆଡ଼କୁ ଚାହିଁ ରହିଥାଏ ।

ନା, ବ୍ୟକ୍ତିଗତ ସାମର୍ଥ୍ୟ, ଜଣ ଜଣଙ୍କର ଦୟାଦାକ୍ଷିଣ୍ୟ ଦ୍ୱାରା ଏପରି ବ୍ୟାପକ ଅବସ୍ଥାର କିଛି ପ୍ରତିକାର ହେବ ନାହିଁ । ଏ ଗୋଟାଏ ବିରାଟ ରୋଗ । ଏ ରୋଗଟା ସବୁବେଳେ ଜାତିର ମେରୁଦଣ୍ଡ ଭିତରେ ଜାଗ୍ରତ ହୋଇଥିଲା । ଆଜି ତାହା ପଦାକୁ ଫିଟି ପଡ଼ିଛି—ପ୍ରଭେଦ ଏତିକି । ଏ ଦେଶର ଅଧିକାଂଶ ଲୋକ ଚିରକାଳ ଗରିବ, ଅନ୍ନ ଚିରକାଳ ସେମାନଙ୍କ ପକ୍ଷରେ ଗୋଟାଏ ବଡ଼ ସମସ୍ୟା, ଅଭାବ ଅନଟନ ସେମାନଙ୍କ ଚିରସହଚର । ଏହା ସାଧାରଣ ଦିନର କଥା ; ତେଣୁ ଏହା ଏତେ ସାଧାରଣ ହୋଇ ଯାଇଥିଲା ଯେ, ସେ ଆଡ଼କୁ ମହାତ୍ମା ମହାପୁରୁଷ ଛଡ଼ା ଆଉ କେହି ଦୃଷ୍ଟି ପକାଉ ନ ଥିଲେ । କିନ୍ତୁ ଏହି ଅବସ୍ଥା ଗର୍ଭରେ ବର୍ତ୍ତମାନର ମହାମାରୀ ଚିରକାଳ ଲୁଚି ରହିଥିଲା । ନିକଟ ଦିନରେ ସେ ଦୋହଲି ଗଲା, ଆଉ ବର୍ତ୍ତମାନର ଏ ବିକଟ ପରସ୍ଥିତି ବ୍ୟାପକ ଆକାର ଧାରଣ କରି ସମୁଦାୟ ଦେଶଟାକୁ ଗ୍ରାସକଲା ।

ଶରତ୍ ଭାବେ, କାହିଁକି ଏପରି ହେଲା ? ଦେଶରେ କଅଣ ହଠାତ୍ କୌଣସି ଅଦୃଶ୍ୟ କାରଣରୁ ଶସ୍ୟ ଭଣ୍ଡାର ଲୁଣ୍ଠିତ ହୋଇଗଲା ? ନା, ତାହା ତ ନୁହେଁ । ସବୁ ବର୍ଷ ଦେଶର ସବୁ ସ୍ଥାନରେ ତ ସମାନ ଫସଲ ଫଳେ ନାହିଁ ; କେଉଁ ବର୍ଷ ଭାରତ-ବର୍ଷର କେଉଁ ସ୍ଥାନରେ ଫସଲ ବେଶି ହୁଏ, ଆଉ କେଉଁଠାରେ ହୁଏ କମ୍ । ଦେଶରେ ମୋଟ ଯେତେ ଫସଲ ହୁଏ ତାହା ସାରା ଭାରତର ଲୋକଙ୍କ ପକ୍ଷରେ ଯଥେଷ୍ଟ । ଓଡ଼ିଶାରେ ଫସଲ କମ

ହେଲେ ବୋମ୍ବାଇରୁ ଅପେ, ମାନ୍ଦ୍ରାଜରୁ ଅପେ, ପଞ୍ଜାବରୁ ଅପେ—ଅଭାବ ଦୂର ପଡ଼ଯାଏ । ଏପରି ହୋଇ ମଧ୍ୟ ଦେଶ ବାହାରକୁ ଲକ୍ଷ ଲକ୍ଷ ମହଣ ଫସଲ ଯାଏ । ହଠାତ୍ ହେଲା କଅଣ ଯେ, ସାରା ଭାରତରେ ଏକା ସାଙ୍ଗରେ, ଏକ ସମୟରେ ଏକାବେଳକେ ଭୀଷଣ ଦୁର୍ଭିକ୍ଷ ପଡ଼ିଗଲା ? ଓଡ଼ିଶାରେ ଦୁର୍ଭିକ୍ଷ—ତା ସାଙ୍ଗକୁ ବଙ୍ଗଳାରେ ଦୁର୍ଭିକ୍ଷ. ମାନ୍ଦ୍ରାଜରେ ଦୁର୍ଭିକ୍ଷ, ବୋମ୍ବାଇରେ ଦୁର୍ଭିକ୍ଷ, ଦେଶସାରା ସବୁ ସ୍ଥାନରେ ଖାଦ୍ୟ ଦୁର୍ମୂଲ୍ୟ, ଏତେ ଦୁର୍ମୂଲ୍ୟ ଯେ ଲୋକଙ୍କ ପକ୍ଷରେ କିଣି ଖାଇବା ସାଧାରଣତଃ ଅସମ୍ଭବ । ସାରା ଭାରତର ୪୦ କୋଟି ମନୁଷ୍ୟ ଏପରି ଭାବରେ ହଠାତ୍ କାହିଁକି ଦୁର୍ଭିକ୍ଷର କରାଳ କବଳରେ ପଡ଼ିଗଲେ ? ସାରା ଦେଶ ଏକସମୟରେ କାହିଁକି ଦୁର୍ଭିକ୍ଷର ଲୀଳାକ୍ଷେତ୍ର, ଅଭାବଅନାଟନର ମହାଶ୍ମଶାନରେ ପରିଣତ ହେଲା ? ଏହାର କାରଣ ଅତି ସୂକ୍ଷ୍ମ, ଅତି ନିର୍ମ୍ମଳ, ଅତି ସତ୍ୟ—ଶରତ୍ ତାହା ବୁଝିଲା । ତାର ବକ୍ଷର ରକ୍ତ ଅଙ୍ଗମତାର କ୍ରୋଧରେ ଫେନିଳ ହୋଇ ଉଠିଲା । ସେ ଭାବିଲା, ୪୦ କୋଟି ଜୀଅନ୍ତା ମନୁଷ୍ୟର ଜୀବନକୁ ନେଇ ଯେଉଁମାନେ ଏପରି ନୃଶଂସ ଖେଳ ଖେଳନ୍ତି ସେମାନଙ୍କୁ ରାକ୍ଷସ କୁହାଯିବ ନାହିଁ ତ କୁହାଯିବ କଅଣ ?

ପ୍ରଶ୍ନ ହେଉଛି, ସେ କରିବ କଅଣ ? ଏ ଅବସ୍ଥାରେ ମଧ୍ୟ ଯେଉଁମାନେ ନିଶ୍ଚିନ୍ତ ଅଛନ୍ତି, ଯେଉଁମାନେ ନିଜେ ମୁଠାଏ ଖାଇବାକୁ ପାଉଛନ୍ତି, ଚିରକାଳ ପାଇବେ ବୋଲି ନିଜକୁ ଧନ୍ୟ ମନେ କରୁଛନ୍ତି, ଯେଉଁମାନେ ଏ ଅତକୁ ଆଖି ଫେରାଇ ଗୃହୁଁ-ନାହାନ୍ତି—ସେମାନେ ଅମନୁଷ୍ୟ ହୋଇ ପାରନ୍ତି, ହୃଦୟହୀନ ହୋଇ ପାରନ୍ତି କିନ୍ତୁ ସେମାନେ ଶାନ୍ତିରେ ଅଛନ୍ତି । ସେ ନିଜେ

ସେହିପରି ବହୁ ପାଚନ୍ତା, ଛଡ କଅଣ ? ତାଦ୍ୱାରା ବା ହେବ କଅଣ ? ଅକ୍ଷମ ସମବେଦନାର ବା କି ଅର୍ଥ ଅଛି ? ସେଥିରେ ତା କାହାର କି ଲଭ ହେବ ? ସେ ଠିକ୍ କଲା, ଆଉ ଏ ସବୁ କଥା ଭାବିବ ନାହିଁ । ସେ ଏସବୁ ବ୍ୟଥାଜନକ ଚନ୍ତାରୁ ମୁକ୍ତି ପାଇବା ପାଇଁ ପ୍ରାଣାନ୍ତ ପରିଶ୍ରମ କଲା, ଥିଏଟର ଦେଖିଲା, ସିନେମା ଦେଖିଲା; କିନ୍ତୁ ବୁଝିଲା— ନା, ଏସବୁ ଦ୍ୱାରା ଏତେ ସତ୍ୟଟାକୁ ଭୁଲି ପାରିବା ଅସମ୍ଭବ । ସିନେମା ଘରୁ ବାହାରିଲେ ନରକଙ୍କାଳ, ବାଟରେ ଗଲେ ନରକଙ୍କାଳ, ଘରେ ଭିତ୍ରି ହୋଇ ବସିଲେ ନରକଙ୍କାଳର ହା-ଅନ୍ନ ଚିତ୍କାର । ଏହି ନରକଙ୍କାଳଗୋଷ୍ଠୀ ଯେପରି କି ଏକ ସ୍ୱରରେ ତା ବିରୁଦ୍ଧରେ ଅଭିଯୋଗ ଆଗତ କରି କହୁଛି, 'ଶରତ୍, ତୁମେ ମନୁଷ୍ୟ; ଆମେ ମଧ୍ୟ ମନୁଷ୍ୟ; ମନୁଷ୍ୟତା ପୀଠରେ ଆମେ ନ୍ୟାଯ୍ୟ ଅଂଶର ଦାବୀ କରୁଛୁ ।'

ଠିକ୍ କଥା । ବଞ୍ଚିବାର ଅଧିକାର କଅଣ ତାହାର ଅଛି, ଏମାନଙ୍କର ନାହିଁ ? ଏମାନଙ୍କର ବଞ୍ଚିବାର ଅଧିକାର ପ୍ରତି ଯଦି ସେ ଭ୍ରୂକ୍ଷେପ ନ କରେ, ତେବେ କି ଅଧିକାର ବଳରେ ସେ ନିଜେ ବଞ୍ଚିବା ପାଇଁ ଦାବୀ କରିବ ?

ସମସ୍ୟା ପରେ ସମସ୍ୟା, ପ୍ରଶ୍ନ ପରେ ପ୍ରଶ୍ନ ତାକୁ ବିବ୍ରତ କରି ପକାଇଲା । ଶରତ୍ ଭାବିଲା, ସେ ବୋଧହୁଏ ପାଗଳ ହୋଇଯିବ ।

ସନ୍ଧ୍ୟାର ଧୂସର ଆଲୋକରେ ମହାନଦୀ କୂଳର ଗୋଟାଏ ବେଞ୍ଚ ଉପରେ ବସି ଭାବୁ ଭାବୁ କେତେବେଳେ ଯେ ବେଶୀ ରାତି ହୋଇ ଯାଇଛି ସେ ଜାଣି ପାରିଲା ନାହିଁ ।

ପାଖ ଗଛଗହଳ ଭିତରୁ ଗୋଟାଏ ପେଚା ଡ଼ାକ ଉଠିଲା । ବାରବାଟୀ ଦୁର୍ଗ ଭିତରେ ଥିବା ଗୋଟାଏ ଘଣ୍ଟାରେ ଏଗାରଟା ବାଜିଲା ।

ଶରତ୍ ବେଞ୍ଚ ଉପରୁ ଉଠ ଧୀରେ ଧୀରେ ଚାଲିଲା ଅନ୍ଧାର ଭିତରେ ।

---

## ନଅ

ଭୁବନେଶ୍ୱରର ବାସ୍‌ଷ୍ଟାଣ୍ଡ । ଆଗରେ ମୋଟର୍ ଷ୍ଟେଶନର ତିନି ଘର । ଦୀନା ତାର ଗୋଟାଏ କଣରେ ପଡ଼ିଛି ।

ଦୀନା ବର୍ତ୍ତମାନ ଅଗର ପଧାନପଲ୍ଲୀର ଦୀନବନ୍ଧୁ ହୋଇ ଆଉ ନାହିଁ; ବର୍ତ୍ତମାନ ପୂର୍ବେ ତାକୁ ଯେ ଦେଖିଥିବ, ସେ ଆଜି ତାକୁ ଚିହ୍ନି ପାରିବାର ସମ୍ଭାବନା ଅଳ୍ପ । ତାର ଆଉ ଚେହେରା ନାହିଁ; ଆଉ ଦେହ ନାହିଁ । ବାଟରେ ଘାଟରେ ବୁଲି ବୁଲୁଥିବା ହା-ଅନ୍ନ ଗୋଷ୍ଠୀ ଭିତରେ ସେ ମଧ୍ୟ ଗୋଟାଏ ନରକଙ୍କାଳ ଜାତୀୟ ଜୀବ । ତାର କୋଟରଗତ ଚକ୍ଷୁ, ରୁକ୍ଷ୍ମ୍ରାଶ୍ମଶ୍ରୁଳ କେଶ; ମୁହଁରେ ଦାଢ଼ୀ, ଦେହରେ ସବୁତକ ଗଣି ହେଉଥିବା ହାଡ଼ ଉପରେ ପତଳେ ଶୁଖିଲା ଚମଡ଼ା, ଆଉ ଏସବୁ ଉପରେ ଦୁର୍ଭିକ୍ଷ ତାର ନିର୍ଦ୍ଦୟ ହାତରେ ବୋଲି ଦେଇଥିବା ଧୂଳିମଳି ଦୀନାକୁ ଏକ ଅଦ୍ଭୁତ ଜନ୍ତୁରେ ପରିଣତ କରିଛି । ତାର ଗୃହ ନାହିଁ, ସଂସାର ନାହିଁ,

ଦୁଇଖଣ୍ଡ ଛିଣ୍ଡାଲୁଗା ଖଣ୍ଡେ ପୁରୁଣା ଆଲୁମିନିୟମ୍ ଡାଟିଆ ଛଡ଼ା ଏ ପୃଥିବୀରେ ତାର ବୋଲିବାକୁ ଆଉ କିଛି ସମ୍ବଳ ନାହିଁ । ସେ ମଣିଷ ନୁହେଁ । ସେ ମଣିଷପରି ଚାଲି ପାରୁ ନାହିଁ; ସେ ସିଧା ହୋଇ ଛିଡ଼ା ହୋଇପାରୁ ନାହିଁ—ଯୁଗଯୁଗାନ୍ତର ମହାକ୍ଷୁଧା ମହାଅଭାବଅନଟନ ଯେପରି ପୁଞ୍ଜୀଭୂତ ହୋଇ ତା ମୁଣ୍ଡ ଉପରେ ଦୁର୍ବହ ବୋଝ ପରି ଲଦି ହୋଇପଡ଼ିଛି ।

କେତେ ଯାତ୍ରୀ ଯାଉଛନ୍ତି, କେତେ ଯାତ୍ରୀ ଆସୁଛନ୍ତି; କେତେ ମୋଟର ଯାଉଛି, କେତେ ମୋଟର ଆସୁଛି । ସକାଳ ଯାଇ ସଞ୍ଜ ହେଲା । ଧୀନା ସେହି ମୋଟର ଷ୍ଟାଣ୍ଡର ଗୋଟାଏ କଣରେ ପଡ଼ିଛି । କିଏ ବା ତା ଆଡ଼କୁ ଚାହୁଁଛନ୍ତି, କିଏ ବା ସେ ଆଡ଼କୁ ଦୃଷ୍ଟି ଦେଉଛି । ଚାରିଆଡ଼େ ତ ଏହି ଦୃଶ୍ୟ, ଏପରି ନରକଙ୍କାଳ; ଏଠାରେ ପଡ଼ିଥିବା ନରକଙ୍କାଳଟି ବା କାହିଁକି କାହାର ବିଶେଷ ଦୃଷ୍ଟିରେ ପଡ଼ିବ ?

ଧୀନା ପଡ଼ିଛି । ସେ ଠିକ୍ କରିଛି, ସେଠାରୁ ଆଉ ଉଠିବ ନାହିଁ । ଜୀବନଟା ରଖିବାପାଇଁ ବହୁତ ଚେଷ୍ଟା କଲା; ଆଉ ସେ ପାରିବ ନାହିଁ । କେତେ ସେ ମାଗିବ କାହାକୁ ? କିଏ ବା କାହିଁକି ଦେବ ତାକୁ ? ସହରରେ ତ ତା ପରି ଶହ ଶହ ବୁଲୁଛନ୍ତି; କାହାକୁ କିଏ ଦେବ ? ନା, ଆଉ ସେ ମାଗିବ ନାହିଁ । ଏପରି ମାଗିଲେ ବା ସେ କେତେ ଦିନ ବଞ୍ଚିବ ? ବଞ୍ଚିଲେ ବା ଲାଭ କଅଣ ? ତାର ସାରିଆ, ତାର ପୁଅଟି ତ କେବେଠୁଁ ମରି ଗିଲେଣି; ସେ ବଞ୍ଚି ଆଉ ଅଧିକ କଅଣ କରିବ ?

ଗତ କାଲି ଦ'ପହର ବେଳେ ବିଜପୁର ବଜାର ମୋଡ଼ରେ ଥିବା ହୋଟେଲଟା ପାଖ ନଳାରେ ପଡ଼ିଥିବା ଆଠ ଦଶ ଖଣ୍ଡ ଅଇଁଠା

ପଟରୁ ଗୋଟିଗୋଟି କରି ଯାଉଁଛି ମୁଠାଏଖଣ୍ଡେ ଭାତ ଖାଇ ବଙ୍କପୁର ବନ୍ଧରୁ ସେ ପାଣି ପିଉଥିଲା । ଦି ଚାଲି ପାଣି ପିଇ ହଠାତ୍ ତାଙ୍କ ମନେ ପଡ଼ିଗଲା ତା ପୁଅ । ତା ମୁଣ୍ଡଟା କେମିତି ହୋଇଗଲା; ସେ ପାଣି ତୁଠରୁ ଉଠି ପାରିଲା ନାହିଁ । ଅଳ୍ପକୁ ଗୃହମାୟ ହେବ ଶୋକ ଉପାସ ସହିତ ସେ ଲଢ଼ି ଅଛନ୍ତି; ଉପାସଟା ତାର ଦେହସହା ହୋଇ ଯାଇଛି; ଭୋକିଲା ପେଟର ଯେ ଯନ୍ତ୍ରଣା ତାହା ସହିତ ଦୀନାର ଘନିଷ୍ଠ ପରିଚୟ ହୋଇ ସାରିଛି । ସେ ବୁଝି ସାରିଛି, ଜୀବନଟାଯାକ ତାକୁ ଏମିତି ଶୋକ, ଏମିତି ଉପାସ ସହିବାକୁ ହେବ । ନ ସହି ବା ତାର ଗୃତ କଅଣ ? ଏକଥା ନେଇ ଭାବିଲେ କିଛି ଲାଭ ନାହିଁ । ଏ କଥା ଉପରେ ଦୁଃଖ କଲେ ପେଟ ପୂରିବ ନାହିଁ । ଏକଥା ଉପରେ ମୁଣ୍ଡ ପିଟିଦେଲେ ମଧ୍ୟ ତାର ପୂର୍ବ ଅବସ୍ଥା ଫେରି ଅସିବ ନାହିଁ । ସେ ଶୋକରେ ରହୁଛି, ଉପାସରେ ରହୁଛି, ଭୋକ ଦାଉରେ ଗାଆଁ ଛାଡ଼ି, ନିଜର ସ୍ତ୍ରୀ ପିଲାଙ୍କୁ ଛାଡ଼ି ପଳାଇ ଆସିଛି । ମୁଠାଏ ଭାତ ତାକୁ ମିଳୁ ନାହିଁ, ମୁଠାଏ ଭାତ ଉପରେ ତାର ଅଧିକାର ନାହିଁ । ଏକଥା ଗୁହାରି କଲେ କେହି ଶୁଣିବାକୁ ନାହାନ୍ତି, ନାଲିସ କଲେ କେହି ବିଚାର କରିବାକୁ ନାହାନ୍ତି । ସେ ଖାଇବାକୁ ପାଉ ନାହିଁ, ଖାଇବାକୁ ନ ପାଇ ତାର ଅସ୍ଥି କେବଳ ରହିଲାଣି, ହୁଏତ ଆଉ କେତେଟା ଦିନ ଏପରି ଚାଲିଲେ ତାକୁ ମରିବାକୁ ହେବ; ଅଥଚ ଦେଶରେ ଏପରି କୌଣସି ଆଇନ ନାହିଁ, ତା ମୁହଁକୁ ଦିନାନ୍ତେ ମୁଠାଏ ଭାତ—ଖାଲି ଭାତ— ଯୋଗାଇ ଦେବ; ଏପରି କେହି ଲୋକ ନାହାଁନ୍ତି, ଏ ଲୋକଟା ଖାଇବାକୁ ନ ପାଇ ମରିବାକୁ ବସିଛି ବୋଲି ଭାବିବ । ଅଥଚ ସେ ବି ଜଣେ ମନୁଷ୍ୟ । ନା, ଭୋକିଲା ଲୋକର କେହି ଯାହାଁ

ନାହାନ୍ତି, କେହି ସହାୟ ନାହାନ୍ତି; ଏପରି ସାହାଯ୍ୟହାସ୍ୟ ଦାବୀ କରିବା ଅଧିକାର ମଧ୍ୟ ତାର ନାହିଁ। ମଣିଷର ଏକୁଟିଆ ପ୍ରେତ ପରି ସେ ଯେଉଁ ଅନ୍ଧ ମନ ସେ ଅନ୍ଧ ବୁଲିବ, ଯେଉଁଠି ମରିବ, ସେଇଠି ପଡ଼ିବ। ତଥା ଯେତେ ଦିନ ଗୁଲୁଛି ଗୁଲୁ; ଯେଉଁ ଦିନ ବ୍ରିଡ଼ିବ ସେ ଦିନ ଶେଷ।

ଏ ସବୁ କଥା ସେ ଏହି ଗୁରୁମାସ ଭିତରେ ବହୁତ ଭାବିଛି। ସେ ବୁଝିଛି, କାହାରି ଉପରେ ତାର ଦାବୀ ସରି ଯାଇଛି, ମରିବାଟା ତା ପକ୍ଷରେ ସ୍ୱାଭାବିକ ଅନ୍ତ ନିଷ୍ଠୁର। ସେଥିପାଇଁ ତାର ଦୁଃଖ ନ ଥିଲା। ହଠାତ୍ ଆଜି ତା ପୁଅ କଥା ମନେ ପଡ଼ିଗଲା। ତ.ର ମନେ ହେଲା, ସେ ପିଲାଟା ଏମିତି ଭୋକରେ, ଏମିତି ଉପାସରେ, ଏମିତି ଶୁଝି ଶୁଝି, ଏମିତି କଷ୍ଟ ସହି ସହି ମରିଥିବ। ତାର ଛାତିର ହାଡ଼ କେତେଖଣ୍ଡିକୁ ହୋହଲାଇ, ତାର ଶୁଖିଲା କଣ୍ଠକୁ ଭେଦ କରି ଗୋଟାଏ ଅସ୍ପଷ୍ଟ ଶବ୍ଦ ଉଠିଲା। ତାପରେ ତାର ଆଉ ଉଠିବା ଶକ୍ତି ରହିଲା ନାହିଁ—ଯେପରି ତାର ସମୁଦାୟ ଦୁଃଖ, ସମୁଦାୟ ଯନ୍ତ୍ରଣା, ଏକ ମୁହୂର୍ତ୍ତ ମଧ୍ୟରେ ଏକତ୍ରିତ ହୋଇ ତାକୁ ଅଭିଭୂତ କରି ପକାଇଲା। ସେ ମୂକ ପରି ଶୂନ୍ୟ ଦୃଷ୍ଟିରେ ବନ୍ଦରର ପାଣି ଆଡ଼କୁ ଗୁହିଁ ରହିଲା।

ଘଣ୍ଟାଏ ଗଲା; ଦୁଇଘଣ୍ଟା ଗଲା; ସେ ସେହି ପାଣି ଆଡ଼କୁ ଗୁହିଁ ରହିଛି। ତାର ଚିନ୍ତା ଶକ୍ତି କ୍ରମେ କ୍ରମେ ଫେରି ଆସିଲା। ସେହି ପାଣି ଭିତରେ ଦିଶିଗଲା ସାରଥିର ନୁଖୁରା କେଶ, ଶୁଖିଲା ମୁହଁ, କୋଟରଗତ ଚକ୍ଷୁ। ତା ଛାତି ଭିତରଟା ଡ଼ାକି ଉଠିଲା—"ସାରଥି! ତୁ ବଞ୍ଚିଛୁ?" ନା, ସମ୍ଭବ ନୁହେଁ। ସାରଥି ଆଜଯାଏ ବଞ୍ଚିରହି ନାହିଁ। ସାରଥି ଉପାସ ରହୁଛି, ଜାନା ଉପାସ ରହୁଛି।

ଯଢ଼ କରୁଛ ମିଳେ ସାରଅ ତାହା ଫୁଟାଇ ଦୀନା ଆଗରେ ଥୋଇ-ଦଏ, ପଚାରିଲେ କହେ, 'ମୋ ପାଇଁ ଅଛି ।' ଭୋକ—ତୀବ୍ର, ପେଟଜ୍ୱଳା ଭୋକ—ଦୀନା ହୁଏତ ସବୁ ଖାଇଦିଏ; ସାରଅ ସେହିପରି ପେଟର ଜ୍ୱାଳାକୁ ପେଟରେ ମାରି ଶୋଇପଡ଼େ; ପଚାରିଲେ କହେ, 'ଖାଇଛି ଯେ, ଦେହଟା କେମିତି ଭଲ ଲାଗୁ ନାହିଁ ।' ଭୁଲିଯାଇ ଥିବା କେଉଁ ପୁରୁଣା କାଳର ଭଙ୍ଗା ଘର ଭିତରେ ସାରଅ ମୁହଁରେ ସମୟ ସମୟରେ ଯେଉଁ ହସ ଫୁଟି ଉଠୁଥିଲା, ସେହି ହସ, ତାର ଗୋଟାଏ ଇଙ୍ଗିତ, ତାର ଗୋଟାଏ ଅଣସ୍ପଷ୍ଟ ପ୍ରେତର ଚିହ୍ନ ସାରଅର ଶୁଖିଲା ମୁହଁରେ ଫୁଟି ଉଠେ । ସେହି ସାରଅ, ସେ ଆଜି ଅଛି ? ନା, ନାହିଁ । ଅସମ୍ଭବ, ଥିବା ଅସମ୍ଭବ । ସାରଅ ଯାଇଛି—ଯାଉ; ସରିଛି—ସବୁ ସରିଛି । ଦୀନାର ଶୁଖିଲା ଆଖିର ଚମଡ଼ା ପତା ଦ ଟାକୁ ଠେଲି କେତେ ବୁନ୍ଦା ଲୁହ ଗଡ଼ିଆସିଲା ପରି ହେଲା; ଆସି ପାରିଲା ନାହିଁ—ଦୀନା ଆଖିରେ ଜଳି ଉଠିଲା ଶବଦାହର ଦୁ'ପହରିଆ ନିଆଁ ପରି ଗୋଟାଏ ଅସ୍ୱାଭାବିକ ଜ୍ୟୋତି ।

ଦୀନା ସେଇ ତୁଠ ଉପରେ ବସି ରହିଲା ।

ଜଣେ ଲୋକ ବାନ୍ଧଘାଟକୁ ଆସି ଦେଖିଲା, ପାଣି ତୁଠରେ ଗୋଟାଏ ନରକଙ୍କାଳ ନିଶ୍ଚୂନ ଭାବରେ ବସିଛି । ଭାବିଲା, ଏଇଟା ସମ୍ଭବତଃ ମରିଗଲାଣି । ପାଖକୁ ଯାଇ ଚାହିଁଲା; ଛାତି ହାଡ଼ ଉପରେ ଥିବା ଚମଡ଼ା ଖଣ୍ଡିକ ଉଠୁଛି ପଡୁଛି । ଲୋକଟି ବୁଝିଲା, ବଞ୍ଚିଛି । ଡାକିଲା, 'ହେ, ଏଠି କାହିଁକି ବସିଛୁ ?'

ଦୀନା ତା ଆଡ଼କୁ ଚାହିଁଲା, ଧୀରେ ଧୀରେ ଉଠିଲା । ମନେ-ମନେ ଠିକ୍ କଲା—ଆଜି କାହିଁକି ? ନା, ଆଜି ନୁହେଁ ।'

ଅନିଶ୍ଚିତ ପଦକ୍ଷେପରେ ସେ ଚାଲିଲା ।

---

# ଭଣ

ଦେଢ଼ମାସ ତଳେ ଦୀନା ଘରୁ ଚୁଲି ଉଠିଥିଲା ।

ଜମି ବଦଳରେ ପଧାନ ଘରୁ ଚାଉଳ ନେଇ ଦିନକୁ ଥରେ ଦୁ'ଦିନରେ ଥରେ ଫୁଟାଇ ଖାଇ ସେ କିଛିଦିନ ଚଳିଲା । ତା'ମଧ୍ୟ ସରିଲା । ସେତେବେଳକୁ ଗାଆଁ ଚାରିଆଡ଼ର ଶାଗ, ପତ୍ର, ଓଲଅ, ବଣସାରୁ, ବଣର ଝୁଙ୍ଗା, କଡ଼ବା, ଶଙ୍ଖପ ଗଛ, ପୋଖରୀର କଳମ ନଡ଼ା, ଶୁନୁଶୁନିଆ, ପିତା ଶାଗ—ସବୁ ସରିଥିଲା । ଖାଇବାକୁ ନ ପାଇ ପୋକମାଛି ପରି ଲୋକେ ଝରି ପଡ଼ୁଥିଲେ । ଯେ ଯେଉଁଠି ପଡ଼ୁଥିଲା, ସେଇଠି ମରୁଥିଲା । ଅଧିକାଂଶ ଲୋକ ଗାଆଁ ଛାଡ଼ି କିଏ କୁଆଡ଼େ ପଳାଇ ଯାଇଥିଲେ । ଯେଉଁ କେତେ ଜଣ ମାଟି କାମୁଡ଼ି ପଡ଼ିଥିଲେ, ସେମାନେ ହୋଇ ଯାଇଥିଲେ ଅସ୍ଥିକଙ୍କାଳ ।

ଦୀନା, ତାର ସ୍ତ୍ରୀ ଓ ପିଲା ତିନିଜଣ ଉପାସ । ଘରେ ବାହାରେ ଯେଉଁ ଆଡ଼କୁ ଚାହିଁଲେ କେଉଁଠାରେ ପୋଷେ ଚାଉଳ ମିଳିବାର ଆଶା ନ ଥିଲା । ସାବିଆ ଓ ତାର ପୁଅ କୁଡ଼ିଆ ଭିତରେ ପଡ଼ିଥାନ୍ତି । ଦୀନା ପଡ଼ିଥାଏ ବାହାର ପିଣ୍ଡାରେ । ପିଲାଟା ଟିକିଏ କାନ୍ଦୁଥାଏ, ବେଦମ ହୋଇ ଟିକିଏ ରହି ଯାଉଥାଏ । ସାବିଆ ତା ମୁହଁରେ ଶୁଖିଲା ସ୍ତନଟାକୁ ଧସାଇ ଦେଇ ଭାବୁଥାଏ, କିଛି ନ ଥାଉ, ପିଲାଟିର ପେଟ ତା ମାଂସରେ ପୂରି ଯାଆନ୍ତା କି !

ଚାରିଆଡ଼େ ଅନ୍ଧାର—ଯେପରି ଗୋଟାଏ ବଡ଼ଟ ପ୍ରେତ ସାରା ଦୁନିଆର ଛାତ ଉପରେ ମାଡ଼ି ବସିଛି, ଆଉ ତରଗୁଣୀ ଅଲିଅ

ପର ଭାଗଗୁଡ଼ାକ ଉପରେ ମିଛି ମିଛି ହେଉଛନ୍ତି । ମୀନା ପିଣ୍ଡାରେ ପଡ଼ି ପଡ଼ି ଅକାଶକୁ ଚାହିଁ ରହିଥାଏ ।

ପିଲାଟା ଅତି କ୍ଷୀଣ ସ୍ୱରରେ କାନ୍ଦି ଉଠିଲା । କ୍ଷୁଧା ଓ ଯନ୍ତ୍ରଣାର ତୀକ୍ଷ୍ଣ ଦଂଶନରେ ମୀନାର ମସ୍ତିଷ୍କ ଉତ୍କ୍ଷିପ୍ତ ହୋଇ ପଡ଼ିଥିଲା; ପିଲାର ଏ କ୍ଷୀଣ ସ୍ୱରଟା ବଜ୍ରାଘାତ ପରି ତାର ଶୁଷ୍କ ଶୀର୍ଣ୍ଣ ବକ୍ଷ ପଞ୍ଜରକୁ ଆଲୋଡ଼ିତ କରି ପକାଇଲା । ସେ ଦ୍ୱାରମୁହଁକୁ ଚାହିଁଲା; ଘର ଭିତରକୁ ଦୃଷ୍ଟି ଦେଲା; ତା ଭିତରେ ମଧ୍ୟ ଅନ୍ଧାର—ସୂଚିଭେଦ୍ୟ ଅନ୍ଧାର । ମୀନାକୁ କିଛି ଦିଶିଲା ନାହିଁ ।

ସେ ବାହାରକୁ ଆସିଲା । ଚାରିଆଡ଼କୁ ଚାହିଁଲା । ଚାରିଆଡ଼େ ଅନ୍ଧାର, ସେହିପରି ଅନ୍ଧାର । ପୃଥିବୀ ଉପରେ ଆଲୁଅର କ୍ଷୀଣ ରେଖାଟିଏ ମଧ୍ୟ ନାହିଁ । ଟିକଏ ଛିଡ଼ା ହେଲା ଧୀର ନିଶ୍ଚଳ ଭାବରେ; ତା ପରେ ଚାଲି ଚାଲି ଚାଲିଲା ଅନ୍ଧାର ଭିତରକୁ ।

ହଠାତ୍ ତାର ମନେ ପଡ଼ିଲା—'ମୋ ଘର !' ସେତେବେଳକୁ ସେ ଖଣ୍ଡେ ବାଟ ଚାଲି ଆସିଥିଲା । ଅନ୍ଧାର ଦେହରେ ପଧାନପଲ୍ଲୀର ଗଛଟା କାଳକାଳିଆ ଦିଶୁଥିଲା । ହେ ସେଇ—ସେଇ ସେଠା ତାଳଗଛ ଗଛ ସଳଖେ ତା ଘର । ମୀନା ନିର୍ବେଦ ନିସ୍ତବ୍ଧ ହୋଇ ଛିଡ଼ାହୋଇ ରହିଲା ସେ ଆଡ଼କୁ ଚାହିଁ । ତା' ପରେ ଧୀରେ ଧୀରେ ଆଗକୁ ଚାଲିଲା ।

ତା ଘର ? ହଁ, ଦିନେ ତାର ଘର ଥିଲା । ସେଥିରେ ସୁଖ ଥିଲା, ଶାନ୍ତି ଥିଲା, ଶତ ସ୍ମୃତି ବିଜଡ଼ିତ ହୋଇ ଦୁଃଖରେ ଅଭାବରେ ଅନାଟନରେ ତାହା ତାକୁ କୋଳକୁ ଟାଣି ନେଉଥିଲା । ଦୁନିଆରେ ଯେତେବେଳେ ସେ ପାଇଛି ଲାଞ୍ଛନା ଅପମାନ, ସେତେବେଳେ ଘର ତାକୁ ଆଶ୍ରୟ ଦେଇଛି, ରକ୍ଷା କରିଛି ।

ଦୁନିଆର ଅନେକମଣ ମୁହୂର୍ତ୍ତରେ ଦୁର୍ଭେଦ୍ୟ ସୀମାରେଖା ଟାଣି-ଦେଇ; ଆଜି ଯେତେବେଳେ ସେ ପାଉଛି ସମ୍ମାନ, ପାଉଛି ପ୍ରଶଂସା,. ପାଉଛି ଜୟଟୀକା ତାର ପରିଶ୍ରାନ୍ତ ଲଲାଟରେ, ଯେତେବେଳେ ତା ଘର ତାକୁ ଅଭିନନ୍ଦିତ କରୁଛି, ସ୍ୱାଗତ କରି ନେଉଛି ଆନନ୍ଦ କୋଳାହଳ ଭିତରେ ଦୀପ ଜାଳି । ସମ୍ରାଟର ସାମ୍ରାଜ୍ୟ, ରାଜାର ରାଜ୍ୟ; ଜମିଦାରର ଜମିଦାରୀ—ସେମାନଙ୍କ ପକ୍ଷରେ ଗର୍ବର ସାମଗ୍ରୀ ହୋଇପାରେ ; ତା ଘର ଖଣ୍ଡିକ, ତା କୁଡ଼ିଆ ଖଣ୍ଡକ, ତାର ଗର୍ବର ସାମଗ୍ରୀ—ତା ପକ୍ଷରେ ସାମ୍ରାଜ୍ୟ, ରାଜ୍ୟ, ଜମିଦାରୀ ଠାରୁ ମୂଲ୍ୟବାନ୍—ବହୁତ ବଡ଼ । ତା ଘର ଖଣ୍ଡିକ ପାଇଁତ ସେ ଗାଁଅ-ଟା ଗାଁଅ, ଦେଶଟା ତା ଦେଶ, ଏ ପୃଥିବୀଟା ତା ପୃଥିବୀ ।

ସେଇ ଘର—ସେଇ ତାର ଘର—ଆଜି ତା ପକ୍ଷରେ ଶ୍ମଶାନ ଠାରୁ ଭୀଷଣ ହୋଇ ପଡ଼ିଛି । ସେଇ ଘର ଭିତରେ ଦୁଇ ଦୁଇଟା ମହାପ୍ରାଣୀ—ତାର ଅତି ଆପଣାର ଲୋକ—ଦଣ୍ଡେ ଦଣ୍ଡେ ପଳେ-ପଳେ ମୃତ୍ୟୁ ଆଡ଼କୁ ଗୁଳିଛନ୍ତି—ହୁଏତ ଏଇ ରାତିଟା ସେମାନଙ୍କର ଶେଷ ରାତି—ଆଉ ପଡ଼ିପଡ଼ି ସେ ଦୃଶ୍ୟ ଦେଖିବା ଛଡ଼ା ଅନ୍ୟ ଉପାୟ ନାହିଁ ତା ପକ୍ଷରେ । ଗଣ୍ଡାଏ ଭାତ, ମୁଠାଏ ଗୁଡ଼ଜଳ ପାଇଁ ସାରିଆ ମରିବ, ତା ପୁଅଟି ମରିବ—ଆଉ ସେ ପଡ଼ିପଡ଼ି ସେ ଦୃଶ୍ୟ ଦେଖିବ ସ୍ୱାମୀ ହୋଇ, ବାପ ହୋଇ ସେ ଏହା ସହିବ କିପରି ? ଗଣ୍ଡାଏ ଭାତ ! ମୁଠାଏ ଗୁଡ଼ଜଳ ! ! ବର୍ଷରେ ଚଢ଼େଇ, ବଲ୍ଲିଭ୍ ମୂଷା, ଗାଁଅର ପିଲାଏ ତା ଷେତରୁ ଦାନକେ ଯାହା ନେଇ ଯାଆନ୍ତି—ଆଉ ସେଥିରେ ଦୀନା ଆନନ୍ଦ ଅନୁଭବ କରେ—ସେତକ ଧାନର ପାଞ୍ଚ ଭାଗରୁ ଭାଗେ ଗୁଡ଼ଜଳ ଏ ବିଶ୍ୱବ୍ରହ୍ମାଣ୍ଡରୁ ଯଦି ଏ ମୁହୂର୍ତ୍ତରେ ତାକୁ ମିଳନ୍ତା, ତେବେ ତା ସାରିଆଟା, ତା ପୁଅଟା ଅନ୍ତତଃ ବଞ୍ଚି-

ଦିନ ଦିନ ବଞ୍ଚି ଯାଆନ୍ତେ । ନା ସେତେବେଳ ତାଙ୍କୁ ମିଳିବ ନାହିଁ—ମିଳିବାର ନୁହେଁ ।

ଅନ୍ଧାର ଗାଢ଼ତର ହୋଇଆସିଲା । ପଶ୍ଚିମ ଆକାଶ କୋଳରେ ଖଣ୍ଡେ ମେଘ ଧୀରେ କ୍ରମେ କ୍ରମେ ଫୁଲି ଫୁଲି ଉଠିଲା । ରହି ରହି ବିଜୁଳି ଚମକି ଚମକି ଉଠିଲା । ଘଡ଼ଘଡ଼ର ଗୁରୁଗମ୍ଭୀର ନିନାଦର ପ୍ରତିଧ୍ୱନି ପାହାଡ଼ କନ୍ଦରରେ ଜାଗିଉଠିଲା । ଦୀନା ଚାଲିଛି—ଚାଲିଛି ଆଗକୁ । କୁଆଡ଼କୁ ସେ ଯାଉଛି, ସେ ଜାଣେ ନା । କାହିଁକି ଯାଉଛି, ତା ମଧ୍ୟ ସେ ଜାଣେ ନା । ସେ ଚାଲିଛି ।

ଟିପି ଟିପି ବର୍ଷା ଆରମ୍ଭ ହୋଇଗଲା । କଡ଼ କଡ଼ ଶବ୍ଦ କରି ତା ପାଖରୁ ଅଳ୍ପ ଦୂରରେ ବଜ୍ର ପଡ଼ିଲା । ପାଖରେ ଗୋଟାଏ ଗଛ । ତାର ମୂଳରେ ଦୀନା ବସିପଡ଼ିଲା । ବିଜୁଳିର ଚମକ ପରି ଗୋଟାଏ କଥା ତା' ମନେ ପଡ଼ିଲା—ସାରଥି ତାର ପିଲାଟି ପାଇଁ କଅଁଣ ଆଜି ସେ କିଛି କରିପାରିବ ନାହିଁ ? ହୁଏତ ପାରିବ; ହୁଏତ ସେମାନେ ବଞ୍ଚିଯିବେ । ତା ସ୍ମୃତିର ଅନ୍ଧକାର ଭିତରେ ଅଣାର ଗୋଟାଏ କ୍ଷୀଣ ରଶ୍ମି ଫୁଟି ଉଠିଲା । ଭଲ ଦିନେ ତ ସେ ଦେଖିଛି ଶହ ଶହ ଲୋକ ଭିକ ମାଗି ବଞ୍ଚନ୍ତି । ସେ ଭିକ ମାଗିବ—ଭିକମାଗି ସେ ତାର ସ୍ତ୍ରୀକୁ, ତାର ପିଲାକୁ ବଞ୍ଚାଇବ । ହଁ, କେବଳ ସେଇ ଗୋଟାଏ ବାଟ ରହିଛି ତା ଆଗରେ । ସେତେବେଳକୁ ସେମାନେ ବଞ୍ଚିଥିବେ ତ ? ହଁ ବଞ୍ଚିଥିବେ—ନିଶ୍ଚୟ ବଞ୍ଚିଥିବେ । ସେ ଯାଉଛି ସେମାନଙ୍କ ଲାଗି ଭିକମାଗିବା ପାଇଁ; ଆଜି ସେମାନେ ବଞ୍ଚିବେ ନାହିଁ ? ସାରଥି ତା ବାଟ ଚାହିଁ ରହିବ ନାହିଁ ? ରହିବ, ନିଶ୍ଚୟ ରହିବ ! ଏତେ ଦିନଧରି ଏତେ ରୋଗ, ଏତେ ଉପାସରେ ହାଡ଼ଚମ ହୋଇ ଯଦି ସେମାନେ ବଞ୍ଚି ରହିଛନ୍ତି, ଆଉ ଦିନ ଦୁଇଟା ସେମାନେ ବଞ୍ଚିବେ ନାହିଁ ?

ଗଛ ମୂଳରୁ ସେ ଉଠିଲା । ସେତେବେଳକୁ ମେଘ ଉଡ଼ି ଯାଇଛି । ଧୀରେ ଧୀରେ ଆଗକୁ ଚାଲିଲା । ସେ ଦେଖିଛି, ବ୍ରହ୍ମପୁରରେ ବହୁତ କୋଠାବାଡ଼ି, ଖୁବ ବଡ଼ ବଡ଼ ଲୋକ ରହନ୍ତି; ବହୁତ ଗାଡ଼ି ମୋଟର ସେଠାରେ ଅଛି । ସହର ବଜାର, ସେଠାକୁ ଗଲେ ସେ ଦ' ସେର ଚାଉଳ ପାଇବ—ହଁ, ଚାର ସେରେ ଚାଉଳ ମଧ୍ୟ ମିଳିପାରିବ ! ଦୁଇଟା ଦିନ ଅଦୌ, ଦୁଇଟାଦିନ—ତା ପରେ ସେ ଗାଁ କୁ ଫେରିବ ; ସାରିଆ ମୁହଁରେ ଭାତ ଦୁଇଟା—ତା ପୁଅ ମୁହଁରେ ପେଜ ମୁନାଏ ଦେବ । ସେ ସେମାନଙ୍କୁ ବଞ୍ଚାଇ ପାରିବ ।

ବୁଡ଼ି ଯାଉଥିବା ଲୋକ କୁଟା ଖିଅକୁ ଧରି ଭାସି ଉଠିବାକୁ ଆଶା କରେ; ଦୀନା ମଧ୍ୟ କୁଟାଖିଅ ଧରି ଆଗକୁ ଚାଲିଲା ।

ସେତେବେଳକୁ ଦୀନା ପରି ହଜାର ହଜାର ଲୋକ ଏହିପରି ଖିଏ ଖିଏ କୁଟା ଧରି ଓଡ଼ିଶାର ଚାରିଆଡ଼ୁ ସହରଗୁଡ଼ାକ ଅଭିମୁଖରେ ଚାଲିଥିଲେ । ସହର ବଜାର ଜୀଅନ୍ତା ନରକଙ୍କାଳ-ଗୁଡ଼ାକରେ ପୂରି ଉଠୁଥିଲା; ଆଉ ସହର ଆଡ଼କୁ ଥିବା ବାଟ କଡ଼-ଗୁଡ଼ାକ ପୂରି ଉଠୁଥିଲା ଏମାନଙ୍କ ଶବରେ । ସାରା ଦେଶ କ୍ରମେ କ୍ରମେ ଗୋଟାଏ ବିରାଟ ଶ୍ମଶାନର ଆକାର ଧାରଣ କରିଥିଲା; ଆଉ ତା ଭିତରେ ନାଚୁଥିଲା ନୈରାଶ୍ୟର ନିର୍ମ୍ମମ ତାଣ୍ଡବ ।

---

## ଏଗାର

ବ୍ରହ୍ମପୁର ଲଞ୍ଜିପଲ୍ଲୀ ପାଖର ଖଣ୍ଡେ ଠାଙ୍ଗର ଭୂଇଁ । ତା ମଝିରେ ଖଣ୍ଡେ କୋଠା । ପାଖରେ ଗୋଟାଏ ଖାଲରେ ଜମିଥିବା କଳୁଷ ପାଣି । ସେଇଠି ଗୁଡ଼ାଏ ନରକଙ୍କାଳ ଥାଆନ୍ତି । ସକାଳ

ହେଲେ ଏମାନେ ବନ୍ଧୁପୁର ଓ ତା ଅଖପାଖରେ ବୁଲନ୍ତି; ଦନ ସାରା ଘୂର ଘୂର ଯେତେବେଳେ ଯାହା ଭାଗ୍ୟରେ ମୁଠାଏ ଗୃଜଳ ହୁଏ, ସେ ଏଇ ଚୋଟାକୁ ଫେରି ଆସେ । ଗଛମୂଳରେ ପଥର ତନି ଖଣ୍ଡର ଚୁଲି; ତାରି ପାଖରେ ହୁଏତ ମଶାଣି ପଦାରୁ କ ଗାଆଁ ମୁଣ୍ଡରୁ ସାଉଁଟି ଆଣିଥିବା ଗୋଟାଏ ଭୂଲଟା ହାଣ୍ଡି । ସେଥିରେ ଗୃଜଳ ମୁଠାଏ ଫୁଟାଇ ଗିଳି ଦଅନ୍ତି । କେତେ କେତେ ନୂଆ ନରକଙ୍କାଳ ଏଠି ଆସି ପହଁଚନ୍ତି; କେତେ ପୁରୁଣା ନରକଙ୍କାଳ ଭୁଅଢ଼େ ଅଦୃଶ୍ୟ ହୋଇ ଯାଆନ୍ତି । ପୁଞ୍ଜୀଭୂତ ଦୁର୍ଭିକ୍ଷ, ଅନାଚାର, ଯନ୍ତ୍ରଣାର ଏକ ବଭତ୍ସ ଛବି ଏଠାରେ ଫୁଟିଉଠେ ଦୂରରେ ଦେଖା ଯାଉଥିବା ବନ୍ଧୁପୁର ସହରର କୋଠାବାଡ଼ି ପ୍ରତି ମୁହୂର୍ତ୍ତରେ ବ୍ୟଙ୍ଗ କରୁଥାଏ ।

ଦନ ଦୁଇ ପ୍ରହର; ଯାନା ଆସି ଏ ଚୋଟାର ଗୋଟାଏ ଗଛ ଛାଇରେ ଲେଟି ପଡ଼ିଲା । ବସିବା ପାଇଁ, ଆଉ ପାଦେ ଆଗକୁ ଯିବା ପାଇଁ ତାର ଶକ୍ତି ନ ଥିଲା । ସେ ସେଇଠି ପଡ଼ିରହିଲା ।

ଅଳ୍ପ ଦୂରରେ ଆଉ ଗୋଟାଏ ଗଛ ଛାଇରେ ଶୋଇ ଥିଲା ଗୋଟାଏ ବୁଢ଼ା—ଜୀଅନ୍ତା ଅସ୍ଥିକଙ୍କାଳ । କିଛି ସମୟପରେ ନିଜର ଛିଣ୍ଡା କନାର ଗଣ୍ଠିରୁ ଗୁଡ଼େଇ ସହର ଆଡ଼କୁ ଯେତେବେଳେ ସେ ଚାହାଁଇଲା, ଦେଖିଲା ଗଛମୂଳରେ ଗୋଟାଏ ନୂଆ ଜୀବ ପଡ଼ିଛି । ତା ଦେହର ହାଡ଼ଗୁଡ଼ାକ ତ ଗଣି ହେଉଛି— ଏଠି ସମସ୍ତଙ୍କର ତାହା ହିଁ ; କିନ୍ତୁ ସିଏ ଶୁଖିଲା ପରି ତା ପେଟର ଚମଟା ମେରୁହାଡ଼ ଦେହକୁ ଲାଗିଗଲାଣି '। ହଉ, ଏ ଅଳ୍ପ ସତରେ ଯିବେ । ସକାଳୁ ସବକାଗ ହାଡ଼ ଆସି ଯୋଷାର, ଯୋଷାର୍ ଏହାକୁ ପକାଇ ଦେବ । ଏଠାକୁ ଆସିଲା ଦନୁଁ ଏମିତ ଦୃଶ୍ୟ ସେ

ବହୁତ ଦେଖିଛୁ । ଚାଲ, ଦେଖିବା କୁଆଡ଼ୁ ଦ'ମୁଠା ଚାଉଳ ? ବୁଢ଼ା ଚାଲିଲା ; ଖଣ୍ଡେ ବାଟରୁ ପଛକୁ ଫେରି ଧାନା ଯେଉଁଠି ଶୋଇଥିଲା ସେ ଆଡ଼କୁ ଚାହିଁଲା; ପୁଣି ଚାଲିଲା ସହର ଆଡ଼କୁ ।

କେତେବେଳେ ଯେ ଧାନା ସେମିତି ଗଛମୂଳେ ପଡ଼ିଛି, ତା ସେ ଜାଣେ ନା ।

'ହେ, ହେ, ଉଠ—'

ଧାନା ଉଠି ଚାହିଁଲା । ଗଛତଳେ ଜଳୁଥିବା ଚୁଲି ଆଲୁଅରେ ଦେଖିଲା, ସାମନାରେ ଗୋଟାଏ ବୁଢ଼ା ।

ବୁଢ଼ାଟି କହିଲା—'ଉଠ, ନେ—ଏତକ ପିଇ ଦେ ! ଛେଲିଅ ଫେଲିଅ ଟିଣିଫିଣି କରୁଛୁ ଅଛୁ ?'

ଛିଣ୍ଡାକନାରେ ଗୁଡ଼ା ହୋଇଥିବା କଣା ଆଲୁମିନିୟମ୍ ଥାଳିଅ ଖଣ୍ଡିକ ଧାନା ଦେଖାଇଲା ।

ବୁଢ଼ା ସେଥିରେ ଝାଡ଼ପର ପେଙ୍ଗ ଘଣ୍ଟା ଭାତ ଓ ସଢ଼ା ଖଣ୍ଡେ ଢାଳିଦେଇ କହିଲା, 'ଦେ, ପିଇଦେ ।'

ଧାନା ଏକ ନିଃଶ୍ୱାସରେ ସବୁ ପିଇଦେଲା ।

ବୁଢ଼ା କହିଲା, 'ପାଖରେ-ହେଇଟି ସେ କଡ଼ରେ ପାଣି ଅଛି; ଯା, ପିଇ ମୁହଁ ଧୋଇବୁ !'

ବୁଢ଼ା ଧାନା ପାଖରୁ ତା ଗଛ ମୂଳକୁ ଚାଲିଗଲା ।

ଧାନା କିଛି ସମୟ ସେ ଆଡ଼କୁ ଚାହିଁ ବସି ରହିଲା; ଧୀରେ ଧୀରେ ଉଠି ପାଣି ପାଖକୁ ଯାଇ ପେଟେ ପାଣି ପିଇଲା; ପୁଣି ଆସି ଗଛ ମୂଳରେ ବସିଲା ।

ବୁଢ଼ା ଗଛମୂଳରେ ଖଣ୍ଡେ ଛିଣ୍ଡା ଅଖା ପାରି, କନା ବୁଜୁଲାକୁ ମୁଣ୍ଡ ପାଖରେ ରଖି ପୁଣି ଆସିଲା ଧାନା ପାଖକୁ; କହିଲା, 'ତୋ ଗାଆଁ କୁଆଡ଼େ ? ଘର, ଘ··· ର କେଉଁଠି ?'

'ପ୍ରଧାନପକ୍ଷୀ ।'

'ଅଜ ଅପେଲୁ , ନା । ମୁଁ , ଗଲବେଳେ ଦେଖିଲି, ତୁ ଏଠେ ପଡ଼ିଛୁ । ଭାବିଲି, ଅଜ ରାତରେ ତୁ ଖସିବୁ । ସହରକୁ ଗଲି । ଗୋଟାଏ ବେହୁ ପଇସାବାଲାର ପିଣ୍ଡ ଓ ଶ୍ରାଦ୍ଧ । ଗ୍ରାମଲୋକ ବଜବଢ଼ ବାଟରେ ଗୃହଲଛି; ଦେଖିଲି, ଗୋଟାଏ ହାଣ୍ଡିରେ କେତେରେ ଖଣ୍ଡେ ଅଲୁଅ ଗୃହଳ ଅଣି ବଜପାଖରେ ଥିବା ବରଗଛ ମୂଳରେ ଥୋଇ ଦେଇଗଲେ । ଗୃହଅଡ଼କୁ ଗୃହିଁଲି; କେହୁ ଲୁଅଡ଼େ ନାହାନ୍ତି । ଦୁଇଟା କୁକୁର ହାଣ୍ଡିଅଡ଼କୁ ଧାଇଁ ଅସୁଥିଲେ, ବୋଲୁଅ ଦ'ଟା ପକାଇଲି, ସେମାନେ ହଟିଗଲେ । ଗୃହଅଡକୁ ଗୃହିଁ ସେତକ ଙ୍କାନ୍ତର ଡାଳନେଇ ହାଣ୍ଡିଟାକୁ ଗଡ଼େଇ ଦେଲି । ବୁଝିଲୁ, ସେତେ ଗୃହଳ । ମୋର କଅଣ ହବ ? ସବୁତକ ଫୁଟାଇ ଦେଲି , ନିଜେ ଖାଇଲି, ତାଲୁ ପାଇଁ ରଖିଲି । ହେଇଟି ହେଇ ସେ ଗଛ ମୂଳରେ ସାଧବର ସାନ ଝିଅଟା —ବୁଝିଲୁ, କଅଁଳା ପିଲା—ସେଇଟା ଅଉ ଦିନେ କି ଦ'ଦିନରେ ଖସିଯିବ, ତାକୁ ମୁନ୍ଦାଏ ଦେଇ ଅସିଲି । ମନେ ପଡ଼ିଗଲା ତୋ କଥା । ତୋତେ ମୁନ୍ଦାଏ ଦେଲେ ତୁ ଅଜ ରାତଟା ଟପିଯିବୁ, ତେଣିକ ସକାଳ ହେଲେ ଟେବୁଲ ତୋ ବାଟ ତୁ ଖୋଜିବୁ, ତତେ ମୁନ୍ଦାଏ ଦେଲି—ବୁଝିଲୁ ।'

ବୁଢ଼ା ଅଣ୍ଟିରୁ ଖଣ୍ଡେ ଦରପୋଡ଼ା ବଢ଼ କାଢ଼ି ଅଉ ଗଛ ମୂଳ ଚୂଲରେ ଥିବା ନିଆଁରେ ଲଗାଇବାକୁ ଗଲା । ସନ୍ଧ୍ୟାରେ ଯାଉ ଯାଉ ଏ ପୋଡ଼ା ବଢ଼ଖଣ୍ଡକ କେତେ ଲୋକ ପକାଇ ଦେବାର ଦେଖି ସେ ସାଉଁଟି ଅଣିଥିଲା ।

ବଢ଼ ଖଣ୍ଡକ ଲଗାଇ ବୁଢ଼ା ପୁଣି ପାନା ପାଖକୁ ଅସିଲା, ତା ପାଖରେ ବସିପଡ଼ି ପଗ୍ରରିଲା, 'ତୋର ପୁଅ ଝିଅ କେତୋଟି ?'

—'ଗୋଟିଏ ।'

—'ଅଛୁ ନା, ଯାଉଛୁ ?'

'ଏଁ ?'

ଯାନା ଆଉ କିଛୁ କହିପାରୁ ନାହିଁ । ତା ଗୁଡ ଭିତରୁ ଗୋଟାଏ କଅଣ ଉଠିଆସି ତାର ନିଃଶ୍ୱାସ ରୁଦ୍ଧ କରିବାକୁ ବସିଲା ।

ବୁଢ଼ା ତା ଆଡ଼କୁ ଗୁହିଁଲା, ଉଠି ଛିଡ଼ା ହୋଇପଡ଼ କହିଲା, 'ହୁଁ ବୁଝିଲି ବୁଝିଲି । ହଉ, ଶୋଇ ପଡ଼, ଶୋଇ ପଡ଼ ।'

ଯାନା ସେହିପରି ଗଛକୁ ଅଉଜି ବସି ରହିଲା ।

ବୁଢ଼ା ଯାଇ ବନ୍ଦ ହୋଇଥିବା ଛୁଣ୍ଡା ଅଖାରେ ବସି ଉଚ୍ଚ ସ୍ୱରରେ ହସିଉଠିଲା; ତା ପରେ ସେ ଅତି ଧୀରେ ଧୀରେ ଉଚ୍ଚାରଣ କଲାପରି କହିଲା, 'ପୁଅ, ପୁ—ଅ ।' ତା ପରେ ପୁଣି ବୁଢ଼ାର ଉଚ୍ଚ ହାସ୍ୟରେ ଛୋଟା ଭିତରଟା ଥର ଉଠିଲା ।

ସ୍ପଷ୍ଟ ସ୍ପଷ୍ଟ ସମସ୍ତଙ୍କର ଦୃଷ୍ଟି ସେ ଆଡ଼କୁ ଟାଣି ହୋଇଗଲା । ଯାନା ସେ ଆଡ଼କୁ ମୂକପରି ଗୁହିଁ ରହିଲା ।

---

## ଚାରି

ସକାଳ ହେଲା । ସେ ଛୋଟାରେ ଯେଉଁ ନରକଙ୍କାଳମାନେ ବସା ବାନ୍ଧି ଥିଲେ, ସେମାନେ ଗ୍ଭଲିଲେ ସହର ଆଡ଼କୁ । ଯାନା ମଧ୍ୟ ଗଲା ।

ବ୍ରହ୍ମପୁର ବଡ଼ ସହର; ବଡ଼ ବଡ଼ କୋଠାବାଡ଼; ଏଠି ବଡ଼ ବଡ଼ ଲୋକେ ଥାଆନ୍ତି । ଭିକ ଏଠି ମିଳିବ, ସେମାନେ

ବଞ୍ଚିବେ 'ଓଡ଼ାଳ ଅଣା 'ପୋଷି ଗୃହଅଙ୍କ୍ ଯେଉଁ ନରକଙ୍କାଳ-ଗୁଡ଼ାକ ସହର ଅଡ଼କୁ ଧାଇଁ ଆସିଥିଲେ, ସେମାନଙ୍କର ସେ ଆଶା ଅନେକ ଦିନରୁ ଲୋପ ପାଉଛି । ଆଉ ଯିବେ ବା କେଉଁଠାକୁ ? ସେମାନଙ୍କ ପାଇଁ କେଉଁଠିବା ସ୍ଥାନ ଅଛି ? ସେମାନେ ପଡ଼ି ରହୁଛନ୍ତି ସହର ପାଖରେ । ଏହି ସହରରେ ସେମାନଙ୍କର ବଞ୍ଚିବା ଆଶା ଶେଷ ହୋଇଛି । ସେମାନେ ମଧ୍ୟ ଏଇଠି ଶେଷ ହେବାକୁ ଅପେକ୍ଷା କରୁଛନ୍ତି । ସହରରେ ଖୁବ୍ ବଡ଼ ବଡ଼ ଲୋକ ଅଛନ୍ତି; ସେମାନଙ୍କର ପେଟ ମଧ୍ୟ ଖୁବ୍ ବଡ଼ ବଡ଼; କିନ୍ତୁ ମନଟା, ହୃଦୟଟା ଅତି କ୍ଷୁଦ୍ର—ନିହାତି ସାନ । ଏତେ ବଡ଼ ହାତୀର ଆଖି ଦୁଇଟା ଯେପରି ଏତେ ଟିକିଏ ଟିକିଏ, ସେଇପରି ଏମାନଙ୍କର ଏତେ ଏତେ ପେଟ ଉପରେ ଏତେ ଟିକିଏ ଟିକିଏ କଳିଜା ରହିଥାଏ । ଏମାନେ ବଡ଼ ମଣିଷ—ଧନରେ ବଡ଼; ତେଣୁ ଏମାନଙ୍କର କ୍ଷୁଧା ମଧ୍ୟ ଖୁବ୍ ବଡ଼, ବୁଭୁକ୍ଷୁ ନରକଙ୍କାଳଗୁଡ଼ିକ—ଦିନକୁ ଓଳିଏ ଅଧସେର ଚାଉଳ ହେଲେ, ଏମାନଙ୍କର ଭୋକ ମେଣ୍ଟିବ; ଏଇ ଯେଉଁ ବଡ଼ଲୋକଗୁଡ଼ାକ—ଦିନକୁ ଅଧସେର ରୁପା, ଅଧସେର ସୁନା ହେଲେ ମଧ୍ୟ ଏମାନଙ୍କର ଭୋକ ମେଣ୍ଟିବ ନାହିଁ । ଏମାନଙ୍କର ଭୋକ ପେଟର ନୁହେଁ—ମନର । ତାହା ଅନ୍ନଗ୍ରାସରେ ପୂର୍ଣ୍ଣ ହୁଏ ନାହିଁ; ବିଶ୍ୱଗ୍ରାସ କରିବାକୁ ସବୁବେଳେ ଉଦ୍ୟତ । ଏମାନେ ଯେତିକି ପାଆନ୍ତି—ସେତିକି ହା ହା ହୁଅନ୍ତି । ଧନରେ ଏମାନେ ଯେତିକି ବଡ଼, ଅଭାବ ତାଙ୍କର ସେତିକି ବେଶି । ଅଭାବର ତାଡ଼ନାରେ ନରକଙ୍କାଳଗୁଡ଼ିକ କାଙ୍ଗାଳ—ଅଥଚ ଏମାନଙ୍କର ଅଭାବ କେତେ କମ୍ ? ଦିନକୁ ଅଧସେରେ ଚାଉଳ । ଆଉ ବଡ଼ ଲୋକଗୁଡ଼ାକ—ସେମାନେ ମଧ୍ୟ ଅଭାବର ତାଡ଼ନାରେ କାଙ୍ଗାଳ; ସେମାନଙ୍କର ଅଭାବ ଅତି ବଡ଼—ହଜାର ହଜାର ଟଙ୍କା, ଲକ୍ଷ ଲକ୍ଷ ଭରଣ ଧାନ ।

ଏମାନେ ଯେତକ ପାଇବେ ଅଭାବ ସେତକ ବଢ଼ିଯିବ । ନରକଙ୍କାଳ-ଗୁଡ଼ିକ କାଙ୍ଗାଳ ପେଟପାଇଁ; କିନ୍ତୁ ସେମାନେ ମନୁଷ୍ୟ । ବଡ଼ଲୋକ-ଗୁଡ଼ାକ କାଙ୍ଗାଳ ଲୋଭପାଇଁ; ଲାଭପାଇଁ, ତେଣୁ ସେମାନେ ପଶୁ । ନରକଙ୍କାଳଗୁଡ଼ିକ ଏହି ପଶୁମାନଙ୍କ ମନୁଷ୍ୟତା ଉପରେ ବିଶ୍ୱାସରାଖି ସହର ଅଭିମୁଖରେ ଧାଇଁ ଆସିଥିଲେ । ସେମାନଙ୍କର ଭ୍ରମ ଅତି ତୀବ୍ର ଭାବରେ ଦୂରୀଭୂତ ହେଲା । ପଶୁପାଖରେ ମନୁଷ୍ୟତ୍ୱ ଖୋଜିବା ବିଡ଼ମ୍ବନାର ପୂଜାବେଦୀରେ ଏମାନଙ୍କ ମଧ୍ୟରୁ ଶହ ଶହ ନରକଙ୍କାଳ ଜୀବନ ଉତ୍ସର୍ଗିତ କରି ତାହାର ପ୍ରାୟଶ୍ଚିତ୍ତ କରିଥିଲେ ।

ଦୀନା ବଜାର ଭିତରେ ବୁଲିଲା । ଅନେକ ବଡ଼ଲୋକର ବଡ଼ ବଡ଼ କୋଠାବାଡ଼ି ଟପି ଗଲା । ସହର—ଏଠି କେଉଁଠି ମାଗିବ, କାହାକୁ ମାଗିବ, କିଏ ଦେବ ସେ କିଛି ସ୍ଥିର କରି ପାରିଲା ନାହିଁ । ବାଟରେ ଗଲେ, ଦେଖେ ବଡ଼ଲୋକର ଘର, ଭାବେ ଏଠି ମାଗିଲେ ମିଳିବ ପରା ! ସାହସ ହୁଏ ନାହିଁ, ବିଶ୍ୱାସ ହୁଏନାହିଁ, ତାର ଡାକ ବଡ଼ ଲୋକର କାନରେ ପହଞ୍ଚିବ । ଆଗକୁ ଗଲେ । ଭିକ ମାଗିବାର ଅଭ୍ୟାସ ତାର ଏ ପର୍ଯ୍ୟନ୍ତ ହୋଇ ନାହିଁ, ଭୋକଜ୍ୱାଳାର ତାଡ଼ନା ଏ ପର୍ଯ୍ୟନ୍ତ ତା ଭିତରେ ଥିବା ନିଜ ପ୍ରତି ସମ୍ମାନଜ୍ଞାନ ଟିକକୁ ମାରି ପକାଇ ନାହିଁ । ସେ ଥିଲା ଚାଷୀ, ତା ହାତର ସ୍ପର୍ଶରେ ଭରଣ ଭରଣ ଧାନ ଫଳି ଉଠୁଥିଲା । ତାର ଏ ଜ୍ଞାନ ଏପର୍ଯ୍ୟନ୍ତ ଲୁପ୍ତ ହୋଇ ନାହିଁ । ସେ ମାଗି ପାରୁ ନ ଥିଲା; ମାଗିବାରେ ଭୋକଜ୍ୱାଳାଠାରୁ ତାକୁ ବେଶି ଦୁଃଖ ହେଉଥିଲା ।

ପଧାନପଲ୍ଲୀରୁ ବ୍ରହ୍ମପୁର—ଏତେ ବାଟ । କେତେ ଗାଁ-ଗଣ୍ଡା ସେ ଟପି ଆସିଛି । ଭୋକରେ ତା ପେଟ ଜଳି ଯାଉଥିଲେ ମଧ୍ୟ ମୁହଁ ଫିଟାଇ ସେ ମାଗିପାରୁ ନ ଥିଲା ପଡ଼ିଲା ପଡ଼ିଲା ।

ଘରଛାଡ଼ି ଅସିବା ପରଦିନ । ଗୋଟାଏ ଗାଆଁ ଭିତରେ ଯାଇ ଯାଇ ଅଉ ସେ ଚାଲିପାରିଲା ନାହିଁ । ଅଗରୁ ଚାରି ଦିନର ଉପାସ; ତା ଉପରେ ଦାଣ୍ଡଚାଲିର ପରିଶ୍ରମ, ଦୁଶ୍ଚିନ୍ତା । ସବୁଅଡ଼େ ଅନ୍ଧାର ହୋଇଗଲା, ବାଟ କଡ଼ରେ ଥିବା ଗୋଟାଏ ପିଣ୍ଡାତଳେ ସେ ପଡ଼ିଗଲା । କେତେବେଳ ସେ ସେମିତି ପଡ଼ିଥିଲା ତାକୁ ଜଣା-ନାହିଁ । ତାର ଜ୍ଞାନ ହେଲାକ୍ଷଣି ସେ ଦେଖିଲା, ତା ମୁହଁ ପାଖରେ ଗୋଟିଏ ବୁଢ଼ୀ ବେଲାଏ ତୋରାଣି ପିଆ ଭାତ ଧରିଛି । ଏକା ନିଃଶ୍ୱାସକେ ସେତକ ପିଇଦେଇ ସେ ଚାରିଆଡ଼କୁ ଚାହିଁଲା; ଦେଖିଲା ତାକୁ କେତେଜଣ ଲୋକ ଘେରି ରହିଛନ୍ତି । ଦେହରେ ହାତମାରି ଦେଖିଲା, ତାର କନାପଟାତକ ଓଦା ହୋଇଯାଇଛି । ବୁଝିଲା, ଏମାନେ ତା ମୁଣ୍ଡରେ, ମୁହଁରେ ପାଣିମାରି ତାକୁ ଚେତା କରାଇଛନ୍ତି, ଏମାନେ ତାକୁ ଖାଇବାକୁ ଦେଇଛନ୍ତି, ଏମାନେ ତାକୁ ବଞ୍ଚାଇଛନ୍ତି । ମୂକଭାବରେ ସେ ସେଠାରେ ପଡ଼ି ରହିଲା । ରାତିରେ ଅଉ ଜଣେ ତାକୁ ମେଞ୍ଚାଏ ଜୋଳଅ ଜାଉ ଦେଇଗଲା । ସେତକ ଖାଇ ସେ ସେଇଠି ଶୋଇ ରହିଲା । ଧୀନା ଦେଖିଲା, ଏ ଗାଆଁରେ ମଧ୍ୟ ଦୁର୍ଭିକ୍ଷ ତାର ମରଣ ହାତ ବୁଲାଇ ଦେଇଛି; ଶହ ଶହ ଲୋକ ଏ ଗାଆଁ ଛାଡ଼ି ଚାଲି ଯାଇଛନ୍ତି; ବହୁତ ଘର-ଦ୍ୱାର ଖାଲି ପଡ଼ିଛି; ଯେଉଁମାନେ ଅଛନ୍ତି, ସେମାନେ ବଡ଼ କଷ୍ଟରେ, ଅତି ଦୁଃଖରେ ଚଳୁଛନ୍ତି; ତଥାପି ନିଜେ ନ ଖାଇ ଏମାନେ ତା ପରି ଅପରିଚିତ ବାଟୋଇକୁ ଖାଇବାକୁ ଦେଇ ପାରନ୍ତି; ତା ପରି ଲୋକର ଜୀବନ ବଞ୍ଚାଇବା ପାଇଁ ଚେଷ୍ଟା କରନ୍ତି । ଏମାନେ ଗରିବ, ଏମାନେ ଦୁଃଖୀ କି ନା, ଏମାନେ ଦୁଃଖୀର ଦୁଃଖ ବୁଝନ୍ତି, ଲୋକ ସହିତ ଏମାନଙ୍କର ଘନିଷ୍ଠ ପରିଚୟ କି ନା, ସେଥିପାଇଁ ଏମାନେ ନ ଖାଇ ଲୋକଙ୍କୁ ଖୁଆଇ ପାରନ୍ତି । ସେ ପିଣ୍ଡାଟାରେ

ପଡ଼ି ପଡ଼ି ରାତରେ ଧାନା ଏସବୁ ଭାବିଲା; ରାତ ପାହିବା ଆଗରୁ ସେ ଗାଆଁ ଛାଡ଼ି ବ୍ରହ୍ମପୁର ଆଡ଼କୁ ଚାଲିଲା ।

ବାଟେଠାଉଠୁଁ ସେ ମୁଢ଼ି ମାଗି ଖାଉଛି । ମଶାଣିରୁ ପିଣ୍ଡ ଭାତ ସାଉଁଟି ଖାଉଚି । ଅଉ ଯେ କୌଣସି ମତେ ନିଜର ଜୀବନଟାକୁ ରଖି ସେ ବ୍ରହ୍ମପୁରରେ ପହଞ୍ଚିଛି ।

ସହର ଭିତରେ ବୁଲି ବୁଲି ସକାଳ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ, ସେ ଅଧାମରା ହୋଇ ଗୋଟାଏ ପିଣ୍ଡାରେ ବସିପଡ଼ିଲା ।

କିଛି ସମୟ ପରେ ସେ ଘରୁ ଜଣେ ଲୋକ ବାହାରି ଆସି କହିଲା, 'ହେ ତୁ ଏଠି କାହିଁକି ବସିଛୁ, ବାହାର—ପଳା—ପଳା ?'

ଧାନା ବହୁ କଷ୍ଟରେ ଉଠି ସେଠାରୁ ଚାଲିଲା । ତା ମୁଣ୍ଡ ଭିତରଟାରେ କୁହୁଡ଼ି ମାଡ଼ି ଯାଉଛି ବୋଲି ତାର ମନେହେଲା ।

ବାଟରେ ପଡ଼ିଲା ରାଜା ନଅର ପରି ଗୋଟିଏ ବଡ଼ ଘର । ତା ଦ୍ୱାର ଆଗରେ ବାଜା ବାଜୁଛି—ବୋଧହୁଏ ଏ ଘରେ ବାହାଘର । ବାହାଘର—ଶହ ଶହ ଲୋକ 'ଖାଇବେ । ଏଠି ମାଗିଲେ ମୁଠାଏ ତାକୁ ଖାଇବାକୁ ମିଳିବ । ଧାନା ତଳ ପାହାଚ ପାଖରେ ଛିଡ଼ାହୋଇ ଦୁଆରେ ଗୋଟିଏ ଟୁଲ୍ ଉପରେ ବସିଥିବା ଲୋକକୁ କହିଲା, 'ବାବୁ, ମୁଁ କାଲିଠୁଁ କିଛି ଖାଇ ନାହିଁ ।'

ସେ ଲୋକଟା ଚିଡ଼ି ଉଠିଲା । କହିଲା, 'କାଲିଠୁଁ ଖାଇ ନାହୁଁ । କାଲିଠୁ ତୁ ନ ଖାଉଛୁ ତ ମୋ ବାପର କ'ଣ ଗଲା ? ପଳା—ଏଠୁ ପଳା । ଆଖି ନାହିଁ—ଦିଶୁ ନାହିଁ । ଏଟା ଅନ୍ନଛତ୍ର ନୁହେଁ ।'

ପାଖରେ ଥିବା ଆଉ ଜଣେ ଲୋକକୁ ସେ ଲୋକଟା କହିଲା, 'ଏ ଗୁଡ଼ାକ ଯୋଗୁଁ ସହରରେ ହଇଜା ଦେଖା ଦେଲାଣି । ଏଗୁଡ଼ାକ ସବୁଆଡ଼େ ରୋଗ ଲଗାଇ ଦେଉଛନ୍ତି । ସହର ଭିତରକୁ ଏଗୁଡ଼ାକ

ମାଛି ଅସୁଛନ୍ତି ନାକେ ମରିବାକୁ ଆଉ ଅପମାନକୁ ମାରିବାକୁ । ଏଗୁଡ଼ାକୁ ନ ତଡ଼ିଲେ ରକ୍ଷା ନାହିଁ ।'

ଦୀନା ମୃତପର ଲୋକଟା ଅଡ଼କୁ ଚାହିଁ ରହିଥାଏ ।

ଭାଙ୍ଗାଲଣ୍ଠାଏ ଛୁଡ଼ା ହୋଇଥିବାର ଦେଖି ଲୋକଟା ରାଗିଗଲା । ତା ପାଖକୁ ଉଠି ଆସି ତା ଉପରକୁ ନୋଟାଏ ଖଣ୍ଡେ ପାଣି ଛାଟିଦେଇ କହିଲା, 'ପଳା—ପଳା—ଯା ।'

ଦୀନାର ଅଖିରେ ଟିକେ ପାଣି ପଶିଗଲା । ତାର ସାରା ଦେହ, ପିନ୍ଧିଥିବା ଲୁଗା ସବୁ ଭିଜିଗଲା ।

ସେ ଅଖି ମଳମଳ କରି ସେଠାରୁ ଚାଲିଗଲା ।

---

## ତେର

ଚପ୍‌ରୁ ଖଣ୍ଡେ କାମୁଡ଼ିଦେଇ ପ୍ରମୋଦ କହିଲା, 'ହେ ପୂଜାରୀ ମଷ୍ଟାର୍ଡ ଅଛି ?'

ଅର ପାଖରୁ ପୂଜାରୀ କହିଲା—'ନେଇଛୁ ବାବୁ ।'

ପ୍ରମୋଦ ବିରକ୍ତ ହୋଇ କହିଲା, 'ତମର ଏମିତ ସବୁ ସର୍ଭିସ୍ ଯୋଗୁଁ ଏ ହୋଟେଲକୁ ଅସିବା ପାଇଁ ମନ ହୁଏ ନାହିଁ । ହଁ, ମୁଁ କଅଣ କହୁଥିଲି କ୍ଷିତୀଶ ବାବୁ, ଏଇ ସେଣ୍ଟିମେନ୍‌ସଟା । ସେଣ୍ଟିମେନ୍‌ସଟା ନ ଥିଲେ ଲୋକ ବଞ୍ଚିପାରନ୍ତା ନାହିଁ । ଏ କଥା ଠିକ୍ । ବୁଝିଲ, ଜୀବନଟା ଦୁର୍ବହ ହୋଇ ପଡ଼ନ୍ତା, ଲୋକ ବେଦମ ହୋଇ ପଡ଼ନ୍ତେ, ଜୀବନ ଉପରୁ ସେମାନଙ୍କର ମମତା ଛୁଟି-ଯାଆନ୍ତା । ଅଉ......'

ପୂଜାସ୍ତ ଜନୈକ ସାନ ସାନ ଚୀନା ଥାଳିଆରେ ଟିକିଏ ଟିକିଏ ମଷ୍ଟାର୍ଡ ଆଣି ଥୋଇଦେଲା ।

'ହଁ, ଏଇଟି ଏଇଟି । ଏଗୁଡ଼ାକ ଦେଶୀ ମଷ୍ଟାର୍ଡ ପରି ଦିଶୁଛି ନା, ପୂଜାସ୍ତ ?' ପ୍ରମୋଦ କହିଲା ।

କଫେକର ଗୋଟିଏ ବଡ଼ ହୋଟେଲ । ଉପରେ ବିଜୁଳି ଆଲୁଅ, ତଳେ ମର୍ମର ପଥର ବିଛା ହୋଇଥିବା ଟେବୁଲ; ଟେବୁଲକୁ ଘେରି ବସିଛନ୍ତି ପ୍ରମୋଦ, କ୍ଷିତୀଶ ଓ ବନମାଳୀ ।

ସେମାନଙ୍କ ସାମନାରେ ରଖା ହୋଇଛି ଚୀନା ଥାଳିଆରେ ଲେଫ, ଟୋଷ୍ଟ, ମଟନ୍‌ଚପ୍; କଟଲେଟ୍, ଓମଲେଟ୍ ଆଉ ବଡ଼ ବଡ଼ କ୍ଷୀରମୋହନ ଦୁଇଟା ଲେଖାଏଁ ।

ନଈକୂଳରେ ବୁଲି ବୁଲି ଏମାନେ ଗଳ୍ପ କରୁଥିଲେ । ପ୍ରମୋଦର ମନେ ହେଲା, ଗୃହା ଟେବୁଲ ଉପରେ ଗଳ୍ପଟା ଭଲ ଜମିବ । ବିଷୟଟା ଯେତେବେଳେ ଲୀଳା ସଂପର୍କରେ, ସେତେବେଳେ ପ୍ରମୋଦ ଅତ୍ତ୍ଵ ସହଜରେ ଗଳ୍ପଟା ସରିବା ଉଚିତ ହେବ ନାହିଁ । କଲେଜର ଛାତ୍ରମହଲରେ ପ୍ରମୋଦ ଗୋଟାଏ ହିରୋ—ଅର୍ଥାତ୍ ନାୟକ; କାରଣ ଲୀଳା ସହିତ ତାର ଏକପ୍ରକାର ଘନିଷ୍ଠତା ଥିବା କଥା ଦୂରରୁ ସମ୍ମାନଦୃଷ୍ଟିରେ ଛାତ୍ରମାନେ ଲକ୍ଷ୍ୟ କରନ୍ତି । ଆଉ ପ୍ରମୋଦ ଏ ପ୍ରସଙ୍ଗ ଉପରେ ପ୍ରେମର ଟିକିଏ ଗୋଲାପୀ ଆଭା—ରୋମାନ୍‌ସର ଟିକିଏ ମଧୁର ରଶ୍ମି—ଲେପିଦେଇ ତାକୁ ଅଧିକ ଆକର୍ଷଣଶୀଳ—ଅର୍ଥାତ୍ ଗ୍ଲାମେରସ୍ କରିବାକୁ ଚେଷ୍ଟା କରିବାର କୌଣସି ତ୍ରୁଟି କରେନାହିଁ ବା ଏ ଦିଗରେ କୌଣସି ସୁବିଧା ଛାଡ଼େ ନାହିଁ ।

ପ୍ରମୋଦ କହିଲା, 'ବୁଝିଲେ, ଆମର ଏ ଓଡ଼ିଆ ଭାଷାରେ ଏଇ ଲଭ୍—ଅର୍ଥାତ୍ ପ୍ରେମର ସମର୍ଥକ, ପରିପୂରକ ବା ଭାବବ୍ୟଞ୍ଜକ

ଶବ୍ଦ ନାହିଁ; ଅର୍ଥାତ୍ କି ନା ଏସବୁ ବିଷୟରେ ମନୋଭାବର ଟ୍ରୁ ସେନ୍ସ୍ — ଠିକ୍ ଢଙ୍ଗ — ବ୍ୟକ୍ତ କରିବା ଏକ ଭୀଷଣ ବ୍ୟାପାର । ଭିଷାମୂଳଅର ଦେଶ କି ନା ଏଠି ଫାଇନର୍ ଫିଲିଙ୍ଗସ୍ — ସୂକ୍ଷ୍ମତର ଅନୁଭୂତି — ପାଇଁ ସ୍ଥାନ କାହିଁ ?'

ବନମାଳୀ ପ୍ରମୋଦର ଏ ମତକୁ ସମର୍ଥନ କରି କହିଲା, 'ସତ, ନିତାନ୍ତ ସତ କଥା । ଉଦ୍ଦୁର୍ କହିଲେ ତାହା କେତେ ମଧୁର ଭାବର ଅଭିବ୍ୟକ୍ତି କରେ— ଅଜି ପ୍ରିୟେ, ପ୍ରେୟସୀ, ପ୍ରାଣପ୍ରିୟେ, ପ୍ରାଣବଲ୍ଲଭୀ—ଦୁରେସ୍ତା, ଏଗୁଡ଼ାକ ନିତାନ୍ତ ବାଜେ ଶବ୍ଦ । ଅଜି ଗୋଟିଏ ଦୃଷ୍ଟାନ୍ତ ଦେଖାଯାଉ । ଏଇ କିସ୍— କି ସୁନ୍ଦର ଶବ୍ଦ, କାମଟା ଯେମିତି ମଧୁର, ଶବ୍ଦଟା ମଧ୍ୟ ସେହିପରି ମଧୁର — ଠିକ୍ ଯେପରି କି ସମୁଦାୟ ଯୁଗର କବିଙ୍କର ସମୁଦାୟ କବିତାର ଏସେନ୍ସ — ଅର୍ଥାତ୍ ନିର୍ଯ୍ୟାସ ସେଥିରେ ରହିଛି; ଅଜି ଏଇ ଅତି ବଢ଼ିଆ ଶବ୍ଦଟିକୁ ଓଡ଼ିଆରେ କହିଲେ ହେବ ଚୁ-ମ୍ବ-ନ — ବା ଘୋର ଗର୍ଜନ ପରି ଗୋଟାଏ ଗୁରୁଗମ୍ଭୀର ନିନାଦ । ମୁଁ ଗଣ ପକାଇ କହୁଛି, ଯେଉଁମାନଙ୍କ ମନରେ ଫାଇନର ଫିଲିଙ୍ଗସ୍ ନାହିଁ, ସେହିମାନେ ହିଁ କେବଳ ଓଡ଼ିଆ ଭାଷାରେ ଲଭ୍‌କୁ ଏକ୍ସପ୍ରେସ କରିବାର ଚେଷ୍ଟା କରନ୍ତି ।'

ମୃଗପୂର ଏ ମତଟାକୁ ମାନିପିବା ଠିକ୍ ହେବ ବୋଲି କ୍ଷିତୀଶ ମନେକଲା ନାହିଁ । ସେ କହିଲା, 'ଓଡ଼ିଆ ଭାଷାରେ ଯେତେବେଳେ ପ୍ରେମକୁ ବ୍ୟକ୍ତ କରିବାର ଠିକ୍ ଠିକ୍ ଶବ୍ଦ ନାହିଁ ବୋଲି ତମେ କହୁଛ, ସେତେବେଳେ ତମେ କହୁଛ ଯେ, ହୁଏତ ପ୍ରେମ ସହିତ ଓଡ଼ିଆ ଜାତିର ପରିଚୟ ବଡ଼ ଘନିଷ୍ଠ ନୁହେଁ, କିମ୍ବା ପ୍ରେମ ବିଷୟରେ ସେମାନଙ୍କର ଭାବ ସେତେ

ଗମ୍ଭୀର ନୁହେଁ । ମନରେ ଭାବ ଆସିଲେ ତାକୁ ଠିକ୍ ରୂପ ଦେଇ ବ୍ୟକ୍ତ କରିବାର ଚେଷ୍ଟାରୁ ହିଁ ତ ଭାଷାର ସୃଷ୍ଟି ।'

ବନମାଳୀ ବିରକ୍ତ ହୋଇ କହିଲେ 'ଆପଣ କଥାଟାକୁ ନ ବୁଝି, ଖାଲି ତର୍କ ଆରମ୍ଭ କରୁଛନ୍ତି । ଆମର ଏ ହତଭାଗ୍ୟ ଦେଶରେ ରୋମେନ୍ସ କାହିଁ ଯେ ଠିକ୍ ଲଭ୍—ଲଭ୍ ବୋଲି ଯାହାକୁ କୁହାଯାଏ, ସେ ଜିନିଷର ପରିଚୟ ଏ ଦେଶର ଲୋକେ ପାଇବେ ? ଠିକ୍ ଲଭ୍‌ର ପରିଚୟ ମିଳିବା ଯେତେବେଳେ ଅସମ୍ଭବ, ସେତେବେଳେ ଭାବ ବା ତାର ଭାଷା ଆସିବ କୁଆଡ଼ୁ ? ଏ ଦେଶର ଲୋକଗୁଡ଼ାକ ତ ସାଧାରଣତଃ ହଳିଆ, ମୂଲିଆ, ସ୍ତ୍ରୀ ଗୁଡ଼ାକ ସାଧାରଣତଃ ଧାନକୁଟୁଣୀ ବା ମୂଲିଅଣୀ, ସେଥିରେ ପୁଣି ଲଭ୍‌ର ଅଙ୍କୁରୋଦ୍‌ଗମ ହେବା ପୂର୍ବରୁ ଗୋଟାକୁ ଗୋଟା ଛନ୍ଦ ଦିଆଯାଏ । ତା ପରେ ପୁରୁଷ ହୋଇପଡ଼େ, ଗୋଟାଏ ଡ୍ରାଇ ଅବଜେକ୍ଟ—ପଣ୍ଡିତଙ୍କ ଭାଷାରେ କହିଲେ ଶୁଷ୍କଂ କାଷ୍ଠଂ, ଆଉ ସ୍ତ୍ରୀ ଉପରେ ଲେବୁଲ୍ ମାରିଦିଅ ହୁଏ—ଲକ୍‌ଡ୍ ଅପ୍ ସବ୍‌ଜେକ୍ଟ—ଅର୍ଥାତ୍ 'ସ୍ୱତନ୍ତ୍ର ସୁରକ୍ଷିତ ପଦାର୍ଥ । ସ୍ତ୍ରୀ ୧୪-୧୫ ବର୍ଷରେ ମାଆ ହୋଇ ବୋଡ଼ ନ ଫୁଟୁଣୁ ବୁଢ଼ୀ ହୋଇଯାଏ; ପୁରୁଷ ଆଉ ଭାଇ ବଗିଘୋଡ଼ା ପରି ବା ହଡ଼ା ବଳଦ ପରି ବୋଝବୋହି ଗଲେ । କହିଲେ ଭଲ, ଲଭ୍‌ର ସ୍ଥାନ ଏଥିରେ କେଉଁଠି ରହିଲା ? ସେଥିପାଇଁ ଆପଣ ଭାବି ଦେଖନ୍ତୁ, ଏ କାଳଟା ଶିକ୍ଷାଲାଭ କରୁଛି କଲେଜରେ ଶୋବେଟ୍‌ସ୍, ଶେଲି, ବାଇରନ୍‌ଙ୍କ କବିତା ପଢ଼ି—ପାଉଛି ଲଭ୍‌ର ଥିଓରେଟିକେଲ୍ ଶିକ୍ଷା, ଆଉ ତା ସଙ୍ଗେ ସଙ୍ଗେ ଏହାର ପ୍ରାକ୍‌ଟିକେଲ୍ ଶିକ୍ଷା ସୁବିଧା ମଧ୍ୟ ଏହି କଲେଜ୍ ଯୋଗାଇ ଦେଉଛି । କି ପ୍ରମୋଦ ବାବୁ, ମୁଁ କଣ ଭୁଲ କହିଲି ? କଲେଜ୍‌ଟା ନ ଥିଲେ ଲଲ୍ଲୀ ଆଉ ଆପଣଙ୍କ

ଭିତରେ ଯେ ଗୋଟାଏ ଉଚ୍ଚ ଧରଣର ଲଭ୍ ସ୍ତେମାନ୍‌ସ୍‌ର ଅସ୍ପଷ୍ଟ ଧର ଅଭିବ୍ୟକ୍ତି ଲାଭ କରୁଛି, ସେଇଟା ସମ୍ଭବ ହୁଅନ୍ତା କି ?'

ମଷ୍ଟାର୍ଡ଼ ଦେହରେ ଚପ୍ ମଡ଼ାଇ ମଡ଼ାଇ ପ୍ରମୋଦ କହିଲା, 'ଆଜି ମଣିଷ କଅଣ ଖାଇବା ପିଇବାପାଇଁ ବଞ୍ଚିଥାଏ ? ଖାଇବା, ପିଇବା, ଘରକର ରହିବା ଏଗୁଡ଼ିକ ତା ପକ୍ଷରେ ନିତାନ୍ତ ବେଦରକାରୀ କଥା ବୋଲି ମୁଁ ମନେ କରେ । ଘର ସଜାଇବ କାହିଁକି ? ଏଇ ଧର କଳା । ମୋତେ ଦେଖିବାକୁ ସେ ଯଦି ଭଲ ନ ପାଆନ୍ତା, ମୁଁ ମୋର ଦେହର ଯତ୍ନ ନିଅନ୍ତି କାହିଁକି ? ତମେ ତ ଜାଣ ମୋର ସବୁ ଲୁଗା ପଟା — ଏପରିକି ଏ ଚପଲ୍ ଯୋଡ଼ାକ — କଳାର ଟେଷ୍ଟକୁ ସୁଟ୍ କରି — କଳା ଏ ସବୁକୁ ଗ୍ରହିବ ବୋଲି — ତିଆରି । ଆଜି ମୋର ଶୋଇବା ଘର ତ ତମେ ଦେଖିଛ । ସେ ସବୁ କଳାର ଟେଷ୍ଟ ଅନୁସାରେ ସଜା । ସେ ଘରର ପଶ୍ଚିମ ପାଖ କାନ୍ଥରେ ଯେଉଁ ଛବି ଖଣ୍ଡ — ପ୍ରଦର୍ଶନୀରେ କଳା ତାକୁ ପ୍ରଶଂସା କରିଥିଲା ବୋଲି ଦେଢ଼ଶହ ଟଙ୍କା ଦେଇ ମୁଁ ତାକୁ କିଣିଥିଲି ।'

ବନମାଳୀ କଟଲେଟ ଖଣ୍ଡେ ଭାଙ୍ଗି ଭାଙ୍ଗି କହିଲା, 'ଅଚ୍ଛା, ପ୍ରମୋଦ ବାବୁ, ଆପଣଙ୍କର ଏ ଏକାଗ୍ର ସାଧନାର ଉତ୍ତର କଳା କିପରି ଭାବରେ ଦେଉଛି ? ଆପଣଙ୍କର ଏହି ଯେ ବିରାଟ ପ୍ରେମ, ତାର କି ପ୍ରତିଦାନ ଆପଣ କଳାଠାରୁ ପାଉଛନ୍ତି ?'

କ୍ଷିତୀଶ କଲେଜରେ ପ୍ରବେଶ କଲାପରେ ସାହିତ୍ୟସାଧନା ଆରମ୍ଭ କରିଛି । ସେ ନୂଆ ଧରଣର ଖୁବ୍ ଭଲ ଗଳ୍ପ ଲେଖିପାରେ ବୋଲି ତାର ଧାରଣା । ଏପର୍ଯ୍ୟନ୍ତ ଯେଉଁ ୯ । ୧୦ ଟା ଗଳ୍ପ ସେ ଲେଖିଛି; ତାହାର ପ୍ରତ୍ୟେକର ୫ । ୬ଟା ଲେଖାଏଁ ନକଲ କରି ଓଡ଼ିଶାର କି ବିଖ୍ୟାତ କି ଅଖ୍ୟାତ ସବୁ ମାସିକ

ପତ୍ରିକାକୁ ସେ ପଠାଇଥିଲା; କିନ୍ତୁ ସମ୍ପାଦକଗୁଡ଼ାକ ଏତେ ମୂର୍ଖ ସେମାନେ କ୍ଷିତୀଶର ପ୍ରତିଭା ବୁଝିପାରିଲେ ନାହିଁ । ଶେଷେ ମାସିକ ପତ୍ରିକା । ସେଥିରେ ସେ ମାସରେ ଗଳ୍ପର ଏକାନ୍ତ ଅଭାବ ଘଟିବାରୁ ପଠାଇବାର ୬ ମାସ ପରେ କ୍ଷିତୀଶର ଗୋଟାଏ ଗଳ୍ପ ପ୍ରକାଶିତ ହୋଇଗଲା । ସେଥିରେ କ୍ଷିତୀଶର ନାମ ଥିଲା ସତ୍ୟ; କିନ୍ତୁ ଗଳ୍ପଟା ଯେ ନିଜର ଲେଖା, କ୍ଷିତୀଶ ମଧ୍ୟ ତାହା ଚିହ୍ନି ପାରିଲା ନାହିଁ— କିନ୍ତୁ ସମ୍ପାଦକୀୟ କାଟଛାଣରେ ଏପରି ଭାବରେ ତାହାର ଚେହେରା ବଦଳି ଯାଇଥିଲା । ତଥାପି ତାହା ଏକ ପ୍ରକାର ମାଷ୍ଟରପିସ୍ — ଅର୍ଥାତ୍ ଶ୍ରେଷ୍ଠଶ୍ରେଣୀର ଲେଖା ବୋଲି କ୍ଷିତୀଶ ନିଜର ପ୍ରଶଂସା ଗୁରିଆଡ଼େ ଗାଇ ବୁଲିଲା ଓ ଏହାର ଇଂରାଜୀ ଓ ବଙ୍ଗଳା ଅନୁବାଦ କରିବ ବୋଲି ସେ ପ୍ରଗ୍ରର କରିଦେଲା । ପ୍ରମୋଦ ଭାବେ, କ୍ଷିତୀଶ ଯଦି ତାର ଓ ଲିଲିର ରୋମାନ୍ସକୁ ଗଳ୍ପରେ ରୂପ ପ୍ରଦାନ କରେ, ଆଉ ତାହା କୌଣସି ପତ୍ରିକାରେ ପ୍ରକାଶିତ ହୋଇ ପଡ଼େ, ତେବେ କି ଚମତ୍କାର ନ ହେବ ! ଆଉ କ୍ଷିତୀଶ ଭାବିଲା, ତାର କଥାସାହିତ୍ୟ ସୃଷ୍ଟିର ଏ ଜୀବନ୍ତ ଜାଗ୍ରତ ଉପାଦାନ ପ୍ରମୋଦ ଓ ଲିଲିକୁ ଅବଲମ୍ବନ କରି ତା ସମ୍ମୁଖରେ ଉପସ୍ଥିତ ହୋଇଛି । ସେଥିପାଇଁ କ୍ଷିତୀଶର ପ୍ରମୋଦ ପ୍ରତି ଯେପରି ଆକର୍ଷଣ , ପ୍ରମୋଦର ମଧ୍ୟ କ୍ଷିତୀଶ ପ୍ରତି ଆକର୍ଷଣର ମାତ୍ରା ସେହିପରି-ବା ତାଠାରୁ କହିଁର୍ ଅଧିକ । ତେଣୁ ଯେତେବେଳେ ପ୍ରମୋଦ ଓ ଲିଲିର ପ୍ରେମ ବିଷୟରେ କିଛି ତଥ୍ୟ ପଡ଼େ, ଉପସ୍ଥିତ ଥିଲେ କ୍ଷିତୀଶ ତା ଉପରେ ଗୋଟାଏ ସାହିତ୍ୟିକ-ସୁଲଭ ମତ ଦେଇଥାଏ ।

ବନମାଳୀର ପ୍ରଶ୍ନର ଉତ୍ତରରେ କ୍ଷିତୀଶ କହିଲା, 'ସାଧନାର ସିଦ୍ଧି ସାଧନାରେ ହିଁ ନିହିତ ଅଛି । ସାଧନା କୌଣସି ଉତ୍ତରର

ଅପେକ୍ଷା ରଖେ ନାହିଁ । ନିଜ ଭିତରେ ତାହା ନିଜେ ପୂର୍ଣ୍ଣ ।
ସାଧନାର ଫଳ ଲାଭ ହେଲେ ସାଧନା ଶେଷ ହୋଇଯାଏ ।
ତା ସହିତ ସରିଯାଏ ସାଧନାର ଗୌରବ । ଠିକ୍ ସେହିପରି, ପ୍ରେମ
ନିଜ ଗୌରବରେ ନିଜେ ମହାନ୍, ନିଜେ ବରିଷ୍ଠ, ତାହା ପ୍ରତିଦାନର
ଅପେକ୍ଷା ରଖେ ନା । ଯେଉଁ ପ୍ରେମ ପ୍ରତିଦାନର ଅପେକ୍ଷା ରଖେ,
ତାହା ପ୍ରେମ ନୁହେଁ । ତାହା ବଜାର ସଉଦା-ମୁଁ ଏତେ ପଇସା
ଦେଲି, ଏତେ ପଇସାର ଜିନିଷ ପାଇବି । ଦୁଇ ଅଣା ଦେଲି
ପ୍ରତିଦାନରେ କପେ ଚା’ ପାଇବି—ଏହିପରି ଧରଣର ହୋଇଯାଏ ।
ପ୍ରତିଦାନର ଆଶା, ଲାଭର ହିସାବ ଥାଏ, ବ୍ୟବସାୟରେ । ପ୍ରେମ ତ
ବ୍ୟବସାୟ ନୁହେ ପ୍ରେମଟା ବିତରଣ । ନିଜକୁ ବାଣ୍ଟିଦେବା, ମନଇଚ୍ଛା
ହରିଲୁଟ କରିଦେବା, ପ୍ରେମଟା ବ୍ୟବସାୟର ଜିନିଷ ହୋଇଥିଲେ
ତାହା ଏତୁ ଚପ୍, କଟଲେଟ୍ ପରି ବଜାରରେ ବିକି ହେଉଥାଆନ୍ତା !
ଏ କଥା ଠିକ୍ ନୁହେଁ ପ୍ରମୋଦ ବାବୁ ?’

ପ୍ରମୋଦ ଗମ୍ଭୀର ଭାବରେ କହିଲା, ‘ନିଶ୍ଚୟ ଠିକ୍ । ଏଥିରେ
ସନ୍ଦେହ ନାହିଁ । ଏଇ ଧରନ୍ତୁ ନା ମୋ କଥା ! ମୁଁ କଅଣ ଲିଲିର
କୌଣସି ପ୍ରତିଦାନର ଆଶା ରଖିଛି ? ଅନେକ ସମୟରେ ବରିଷ୍ଠ
ଆକାଂକ୍ଷା ହୃଦୟରେ ଧରି ଧାଇଁଯାଏ ଲିଲି ପାଖକୁ । ସେଠୁ ନିଷ୍ଠୁର
ଆଘାତ ପାଇ ଫେରିଆସେ । ତାର ଓଠ କୋଣରେ ସାମାନ୍ୟ ଟିକିଏ
ହସର ରେଖା , ଆଖି କୋଣରେ ଟିକିଏ ପ୍ରୀତିରେଖାର ସୂଚନା
ତାର ପାଦ ଦୁଇଟିରେ ଟିକିଏ ଲୀଳା ଭଙ୍ଗି ଦେଖିବା ପାଇଁ ମରୁ
ଭିତରେ ଗୁଲୁଥିବା ତୃଷାର୍ତ୍ତ ପଥିକ ପରି ମୁଁ ତା ପାଖକୁ ଧାଇଁଯାଏ ।
ଆଉ ଦେଖେ ତାରମୁହଁ ଆଷାଢ଼ ଆକାଶ ପରି ଗମ୍ଭୀର, ତାର ଓଠ
ଦୁଇଟି ହିମାଳୟ ପରି ସ୍ଥିର ନିଷ୍କମ୍ପ । ତାର ଦୃଷ୍ଟି ପ୍ରଶାନ୍ତ ମହା-
ସାଗର ପରି ଉଦାସ । ଏ ସବୁ କଅଣ କମ ଆଘାତ ହୁଏ ଷିଣ୍ଟାଣ

ବାବୁ ମୋର ଏଇ ହୃଦୟରେ ? ଥରେ ନୁହେଁ, ଦୁଇଥର ନୁହେଁ, ଶହ ଶହ ଥର ଏପରି ଘଟିଛି; କିନ୍ତୁ ଏସବୁ କ'ଣ ମୋର ସାଧନାକୁ ଟଳାଇ ପାରିଛି ? ଏ ସବୁରେ କଅଣ ମୋର ପ୍ରେମ ଉଣାପଡ଼ି-ଯାଇଛି ? ନୁହେଁ—ନୁହେଁ କଦାପି ନୁହେଁ । ସେ ଦିନ ଟେଷ୍ଟରେ ସେଣ୍ଡଅପ୍ ହେବା ଉପଲକ୍ଷରେ ମୁଁ ଲିଲି ପାଇଁ 'ଯୌନ ଓ ଯୌବନ' ବୋଲି ଖଣ୍ଡେ ବହି ତା ପାଖକୁ ନିଜ ହାତରେ ଉପହାର ନେଇ ଯାଇଥିଲି; ଲିଲି ତାକୁ ଫିଙ୍ଗିଦେଲା ।

ବନମାଳୀ କ୍ଷୀରମୋହନଙ୍କୁ ଫାଲେ ପାଟିରେ ପଚାରିଲା କହିଲା, ଫିଙ୍ଗି ଦେଲା ?

ପ୍ରମୋଦ ଉଦାରଭାବରେ କହିଲା, 'ଖାଲି ଫିଙ୍ଗିଦେଲା ନାହିଁ । କହିଲା, ଇଉ ଆର ଏନ୍ ଇଡ଼ିଏଟ—ଗେଟ ଅଉଟ, ତମେ ଗୋଟାଏ ନିର୍ବୋଧ । ବାହାର ଯାଅ ।"

ବନମାଳୀ କ୍ଷୀରମୋହନଙ୍କୁ ଅରଖଣ୍ଡିଆ ପାଟିରେ ପୁଣି କହିଲା—ଏଁ ?

ପ୍ରମୋଦ ଡାକିଲା । ଉନିଟା ଅମ୍ଲେଟ ଅଣ ତ, ପୂଜାରୀ ।

କ୍ଷିତୀଶ କହିଲା, ଆଶ୍ଚର୍ଯ୍ୟ ହେଲେ ବନମାଳୀ ବାବୁ !

ବନମାଳୀ କହିଲା, ଦେଖିଥିଲେ ? ଏ ସବୁ ଉପରେ ଏଇ ଅମଲେଟ୍ ଯୋଗୁଁ ?

କ୍ଷିତୀଶ କହିଲା, 'ନା ଅମଲେଟ୍ ଯୋଗୁ ନୁହେଁ; ଲିଲିର ଏଇ ପ୍ରତ୍ୟାଖ୍ୟାନ ଯୋଗୁ ।'

ବନମାଳୀ କହିଲା, 'ଓଃ, ବୁଝିଲି । ବାବୁ ମୋ ଦେହରେ ଏ ସବୁ ହଜମ ହେବ ନାହିଁ ।'

ପ୍ରମୋଦ କହିଲା, ହେବ, ହେବ । ତୁମେ ଯୁବକ, ଅଜ ଗୋଟାଏ ଅଧିକା ଅମଲେଟ୍ ।

ବନମାଳୀ କହି ଉଠିଲା, 'ଆପଣ ଭୁଲ ବୁଝୁଛନ୍ତି ପ୍ରମୋଦ ବାବୁ, ଅମ୍‌ଲେଟ୍ ପରି ପାଞ୍ଚଗଣ୍ଡା ନିତାନ୍ତ ସାଧାରଣ ଜିନିଷ ମୁଁ ହଜମ କରିପାରେ । ଏ ଗୁଡ଼ାକ ନିତାନ୍ତ ପାର୍ଥିବ କଥା । ପେଟ ସହିତ ଏହାର ସମ୍ବନ୍ଧ; କିନ୍ତୁ କାଲି ଆପଣଙ୍କୁ ଯେପରି ଭାବରେ ପ୍ରତ୍ୟାଖ୍ୟାନ କଲା—ଆପଣଙ୍କର ଉପହାର କହି ଫୋପାଡ଼ି ଦେଲା, ଭଡ଼ଏଟ ଓ ଟୋଷ୍ଟଅମ୍‌ଲେଟ୍ କହିଲା, ସେତିକ ମୁଁ ହଜମ କରି ପାରିବି ନାହିଁ । ଏ ଗୁଡ଼ାକ ହୃଦୟର ଜିନିଷ କି ନା !'

କ୍ଷିତୀଶ କହିଲା, 'ଏହିଠାରେ ହିଁ ତ ପ୍ରମୋଦ ବାବୁଙ୍କ ସହିତ ଆପଣଙ୍କର ପ୍ରଭେଦ । ପ୍ରମୋଦ ବାବୁ ବୁଝିଛନ୍ତି । ଏହି ପ୍ରତ୍ୟାଖ୍ୟାନ ଭିତରେ ପ୍ରେମର ଯେଉଁ ମହାନ୍ ଅଭିବ୍ୟକ୍ତି ରହିଛି, ତାହାର ମୂଲ୍ୟ ପ୍ରେମିକା ହୃଦୟର କି ଗଭୀର ଆବେଗ ଏହି ପ୍ରତ୍ୟାଖ୍ୟାନଦ୍ୱାରା ପରିସ୍ଫୁଟିତ ହୋଇଉଠୁଛି, ଭାବନ୍ତୁ ତ । ପ୍ରେମର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି ମିଳନରେ ନୁହେଁ, ଏହି ପ୍ରତ୍ୟାଖ୍ୟାନରେ । ପ୍ରମୋଦବାବୁ ନିଜର ଅନ୍ତରର ଅନ୍ତରତମ ସ୍ଥଳରେ ଏହା ଅନୁଭବ କରୁଥିବେ । ସେଥିପାଇଁ ସେ ପ୍ରେମିକ, ସେଥିପାଇଁ ତାଙ୍କର ଆସନ ଆମଠାରୁ ଉଚ୍ଚରେ, ସେଥିପାଇଁ ସେ ଆମର ପ୍ରଶଂସାର ପାତ୍ର, ପ୍ରେମ-ଜୀବନରେ ଆମର ଆଦର୍ଶ । ପ୍ରମୋଦବାବୁ ଏହାକୁ ହିଁ ଅବଲମ୍ବନ କରି ମୁଁ ଗୋଟାଏ ଗଳ୍ପ ଲେଖିବି, ମୁଁ ଜାଣେ ତାହା ଖୁବ୍ ସୁନ୍ଦର ହେବ । ପ୍ରେମର ଏପରି ସାକ୍ଷାତ୍ ଚିତ୍ରକୁ ଅଙ୍କନ କରିବା ବା କେତେଜଣ ଲେଖକଙ୍କ ଭାଗ୍ୟରେ ଘଟେ ?"

ବନମାଳୀ ଅମ୍‌ଲେଟର ଶେଷ ଖଣ୍ଡିକ ଗିଳି କହିଲା, 'ନିଶ୍ଚୟ, ନିଶ୍ଚୟ ।'

ପୂଜାରୀ ତିନିକପ୍ ଚା' ଦେଇଗଲା । ଚା' ଶେଷ କରି, ସିଗାରେଟ୍ ତିନିଖଣ୍ଡ ଲଗାଇ ଏ ତିନିହେଁ ଉଠିଲେ ।

ପୂଜାରୀ ଅସି କହିଲା, 'ବାବୁ, ସାତଟଙ୍କା ତେରଅଣା ।'

ପ୍ରମୋଦ ପୂଜାରୀ ହାତକୁ ଟଙ୍କାକଅ ନୋଟ ଅଠଅଣ୍ଡ ବଢ଼ାଇ କହିଲା, 'ରେଜାଗତକ ଭମର ।'

ହୋଟେଲ୍ ଦ୍ୱାରମୁହଁରେ ଖୁବ୍‌ବଡ଼ ସାଇନ୍ ବୋର୍ଡ; ତା'ଉପରେ ଦୁଇଟି ବଜୁଲି ଅଲ୍‌ଅ । ବେକ୍ ଅଉଟ୍‌ର ମୁଖା ପିନ୍ଧିଲେ ମଧ୍ୟ ତାର ତେଜରେ ହୋଟେଲ୍ ସାମନାରେ ଥିବା ନଳାର କାଳଅ କାଳଅ ପଚ୍ଚ ପଙ୍କ ଭଲ ଭାବରେ ଦଶୁଥିଲା ।

ହୋଟେଲ୍ ସାମନାରେ ଦଶ ବାରଟି ନରକଙ୍କାଳ ଏଣେ-ତେଣେ ବୁଲୁଥାନ୍ତି; ଗୋଟାଏ ନରକଙ୍କାଳ ସେହି ନଳା ଭିତରେ ପଡ଼ିଥିବା ଖଣ୍ଡେ ଅଇଣ୍ଠା ପତ୍ରକୁ ଧରି ଶୁଙ୍ଘୁଥାଏ ।

ସାମନାରେ ଅବର୍ଜନା ପକାଇବାପାଇଁ ଡଷ୍ଟବିନ୍ । ତାକୁ ଆଉଜି କୋଳରେ ଗୋଟିଏ ଛୁଆକୁ ଧରି ପଡ଼ିଥାଏ ଗୋଟିଏ ନର-କଙ୍କାଳ ସ୍ତ୍ରୀ ଲୋକ । ଦିନେ ଯୁବତୀ ଥିଲା ବୋଲି ଅନୁମାନ ହୁଏ ସେ ମୁଖାପିନ୍ଧା ବଜୁଳି ଅଲ୍‌ଅର ତେଜରେ ।

ସିଗାରେଟ ଫୁଙ୍କି ଫୁଙ୍କି ଡଜନବନ୍ଧୁ ଗଲେ ବଜାର ଆଡ଼କୁ ।

---

## ଚଉଦ

ହେଲକଲ ପେଟ ହାଇ ଏକ୍‌ସପ୍ଲୋସିଭ ବୋମାଠାରୁ ଅଧିକ ବିସ୍ଫୋରକ, ମଷ୍ଟାର୍ଡ ଗ୍ୟାସଠାରୁ ଅଧିକ ମାରାତ୍ମକ, ଟର୍ପେଡୋଠାରୁ ଭୟଙ୍କର, ଟ୍ୟାଙ୍କ ପରି ଏହା ସାମନାରେ ଯାହା ପଡ଼େ ତାହା ଚୂର୍ଣ୍ଣୀଭୂତ ହୋଇଯାଏ । ସବ୍‌ମେରିନ୍ ପରି ଏହାର ଅଲକ୍ଷିତ ଗତି

ବିପକ୍ଷଦଳ, ଡ଼ାଇଭ ବୋମ୍ବ ପର ଏହାର ଲକ୍ଷୀଭୂତ ସ୍ଥାନ ଉପରେ ଧ୍ୱଂସର ଅଗ୍ନିରେ ରଙ୍ଗ ଖେଳାଇ ଦିଏ । ପ୍ରଳୟ ଦେବତାର ରୁଦ୍ର ନିଃଶ୍ୱାସ ସମ୍ଭୂତ ଅଗ୍ନିକଣା ଏହି ଭୋକିଲା ପେଟ ଭିତରେ ସବୁବେଳେ ଚେଇଁ ରହିଥାଏ । ଭୋକିଲା ପେଟର ଦୁର୍ବଳତା ଭିତରେ ବିପ୍ଳବର ପ୍ରଳୟଙ୍କର ଶକ୍ତି ଜନ୍ମଲାଭ କରେ । କ୍ଷୁଧିତ ସିଂହ ଭୟଙ୍କର । କ୍ଷୁଧିତ ବ୍ୟାଘ୍ର ତତୋଽଧିକ ଭୟଙ୍କର; କିନ୍ତୁ କ୍ଷୁଧିତ ମନୁଷ୍ୟ ଏମାନଙ୍କ ଠାରୁ ଶତଗୁଣ ଭୀଷଣ । ୧୯୪୨-୪୩ ରେ ଓଡ଼ିଶାର ପଲ୍ଲୀଗ୍ରାମମାନଙ୍କରେ ତ ଭୋକ ଏବଂ ସଂକ୍ରାମକ ବ୍ୟାଧି-ରୂପେ ହଜାର ହଜାର ଲୋକର ଜୀବନ ନାଶ କରୁଥିଲା; କିନ୍ତୁ ସହରର ଲୋକେ ତାହାର ମାରାତ୍ମକତାର ପୂର୍ଣ୍ଣ ପରିଚୟ ପାଇ-ନ ଥିଲେ । ଯେତେବେଳେ ଓଡ଼ିଶାର ସହରମାନଙ୍କରେ ନରକଙ୍କାଳଗୁଡ଼ାକ ଘୂରିବୁଲି ସହରକୁ—ବଜାର ଭିତରକୁ ଶ୍ମଶାନର ଦୃଶ୍ୟ ଆବାହନ କରି ଆଣିଲେ, ଯେତେବେଳେ ଗୃହଅଙ୍ଗେ 'ଭୋକ, ବାବୁ ଦିଅ । ତିନିଦିନ ହେଲା ଖାଇନାହିଁ । ସବୁବେଳେ ଶୁଭିଲା ଯେତେବେଳେ ସହରର ସାଧାରଣ ଲୋକେ ଗୃହ୍ଣଲ ମୁଠାକ ମଧ୍ୟ ସୁବିଧାରେ ପାଇଲେ ନାହିଁ, ସେତେବେଳେ କର୍ତ୍ତାମାନଙ୍କ ଭଙ୍ଗିତରେ ବେସରକାରୀ ଉଦ୍ୟମରେ ଭୋକିଲା ଲୋକମାନଙ୍କୁ ବଞ୍ଚାଇବା ଉଦ୍ୟମର ଗୋଟାଏ ଅଭିନୟ କରିବା ପାଇଁ—ଅନ୍ନଛତ୍ର ଖୋଲାଗଲା । ଏହି ଅନ୍ନଛତ୍ର ମନୁଷ୍ୟତା ପ୍ରତି ଏକ ବିରାଟ ବ୍ୟଙ୍ଗ—ଚରମ ପରିହାସ ।

. କଟକ ସହରରେ ତିନି ଚାରି ସ୍ଥାନରେ ଏହିପରି ଅନ୍ନଛତ୍ର ଖୋଲା ଯିବାର ବ୍ୟବସ୍ଥା ହେଲା । କମିଟି ବିନା ଏତେ ଦାୟିତ୍ୱପୂର୍ଣ୍ଣ କାମ ହେବ କିପରି ? ସେଥିପାଇଁ ଗୋଟାଏ ଶକ୍ତିଶାଳୀ କମିଟି ଗଠନ କରାଗଲା । ସେଥିରେ ସଭାପତି ହେଲେ ସ୍ୱୟଂ ଶେଠ

ମୂଳଚନ୍ଦ ଲାଲ୍ ଓ ସମ୍ପାଦକ ହେଲେ ରାୟସାହେବ ଧରଣୀଧର ସେନାପତି । ସରକାରଙ୍କଦ୍ୱାରା ପୃଷ୍ଠପୋଷିତ ଆଉ କେତେଜଣ ରାୟବାହାଦୂର ଓ ଶଏର ଖାଁ ଏଥିରେ ସଭ୍ୟରୂପେ ରହିଲେ । ଏମାନଙ୍କର ପ୍ରଧାନ କାମ ହେଲା ଚାନ୍ଦା ସଂଗ୍ରହ କରି ଅନ୍ନଛତ୍ରସବୁ ଚଳାଇବା । ଏମାନେ ଧନୀଙ୍କ ପାଖକୁ ଗଲେ କାଳେ ସରକାରଙ୍କ ବିରାଗଭାଜନ ହୋଇଯିବେ ବୋଲି ସେମାନେ କିଛି କିଛି ଦେଲେ; ଆଉ କେତେକ ଜମିଦାର ମେଜେଷ୍ଟର ସାହେବଙ୍କ ଅନୁଗ୍ରହ ଆଡ଼କୁ ଦୃଷ୍ଟି ରଖି ଧାନ ଅମାରରୁ ୮ । ୧୦ ଗୌଣୀ ଧାନ ବିକି ଚାନ୍ଦା ଖାତାରେ ନିଜର ଧନ୍ୟାବାଦାର୍ହ ନାମଗୁଡ଼ାକୁ ଲେଖାଇ ଦେଲେ । ଯେଉଁ ବେପାରୀମାନେ ଲୋକଙ୍କ ତଣ୍ଟିଚିପି ବେଶି ଲାଭ କରିଥିଲେ ସେମାନେ ସରକାରୀ ଧରପଗଡ଼ରୁ ରକ୍ଷାପାଇବା ଆଶାରେ ବେଶି ବେଶି ଚାନ୍ଦା ଦେଲେ, ଆଉ ଦେଲେ ଜଡ଼ାକାହାଜ ପଡ଼ିଆର କଣ୍ଟ୍ରାକ୍ଟରମାନେ, ଯେଉଁମାନଙ୍କ ବାକ୍ସ ସିନ୍ଦୁକ ଭିତରକୁ ରାତି ରାତି ଅର୍ଥ ଭିଡ଼ି ଆସୁଥିଲା, ହଠାତ୍ ଯେଉଁମାନେ ଧନୀ ହୋଇପଡ଼ିଥିଲେ ।

ଏହି ସଂଗୃହୀତ ଅର୍ଥରେ ପଶୁଯୋଗ୍ୟ ଖାଦ୍ୟ ତିଆରିହୋଇ ଦିନାନ୍ତରେ ଥରେ ବୁଭୁକ୍ଷିତ, ନିଃସ୍ୱ, ନିଃସମ୍ବଳ, କଙ୍କାଳ ମାତ୍ର ଅବଶିଷ୍ଟ ହଜାର ହଜାର ମନୁଷ୍ୟ ଆଗରେ ବଣାଯାଏ । ଏତେ କମ୍ ପରିମାଣରେ ଏହା ସେମାନଙ୍କୁ ଦିଆଯାଏ ଯେ, ଏଥିରେ ସେମାନଙ୍କର କ୍ଷୁଧା ଶାନ୍ତ ହେବାର ତ କୌଣସି ସମ୍ଭାବନା ନ ଥାଏ, ତାହା ସେମାନଙ୍କର ଭୋକର ଜ୍ୱାଳାକୁ ଅଧିକ ବଢାଇ ଦିଏ । ଅନ୍ନଛତ୍ରର ଏହି ତଥାକଥିତ ଅନ୍ନ ମୃତ୍ୟୁ ମୁଖକୁ ଚାଲିଥିବା ଏହି ନରକଙ୍କାଳଗୁଡ଼ିକୁ ମୃତ୍ୟୁ ମୁଖରୁ ବଞ୍ଚାଏ ନାହିଁ; ମୃତ୍ୟୁର ପଥକୁ କଣ୍ଟକିତ କରି ପକାଏ—ତା-ସହିତ ଯନ୍ତ୍ରଣାର ସମୟ ବଢାଇ ଦିଏ ।

ଭୋକ ସହିତ ଯେଉଁମାନଙ୍କର ସ୍ପଷ୍ଟ ପରିଚୟ ନାହିଁ, ଉପାଦେୟ ଖାଦ୍ୟ ଖାଇବା ନିମିତ୍ତ ଯେଉଁମାନେ ଭୋକକୁ ଖୋଜନ୍ତି; ଭୋକ ହେବାପାଇଁ ଯେଉଁମାନେ ଔଷଧ ଖାଆନ୍ତି—ସେମାନେ ଜାଣିବେ କେମିତି ସେପରି ଭୋକର ଜ୍ୱାଳା—ଯେଉଁଠି ଦିନପରେ ଦିନ ଭୋକ ଅଛି, ଅଥଚ ଖାଦ୍ୟ ନାହିଁ—ଖାଦ୍ୟ ପାଇବାର ଆଶା ନାହିଁ, ଯେଉଁ ଭୋକ ମନୁଷ୍ୟକୁ ଦଣ୍ଡେ ଦଣ୍ଡେ ପଳେ ପଳେ ମୃତ୍ୟୁ ମୁଖକୁ ଠେଲି ନେଇ ଚାଲେ । ଧନୀର ସୌଖିନ ଭୋକ ଓ ନିଃସ୍ୱର ଜ୍ୱାଳାମୟ ବୁଭୁକ୍ଷା ମଧ୍ୟରେ ଯେ ବିରାଟ ବ୍ୟବଧାନ ଅଛି, ଅଭାବ ସହିତ ଯେଉଁମାନଙ୍କର ପରିଚୟ ଅଳ୍ପ, ତାହା ସେମାନେ ବୁଝିବେ କିପରି ? ସେଥିପାଇଁ ଏସବୁ ଅନୁଷ୍ଠାନରେ ଯେପରି ଖାଦ୍ୟର ବ୍ୟବସ୍ଥା ହୋଇଥିଲା, ତାହା ଖାଦ୍ୟ ନୁହେଁ, ଖାଦ୍ୟ ରୂପେ ଏହି ନିଃସ୍ୱ ନରକଙ୍କାଳଗୁଡ଼ାକ ପ୍ରତି. ସେମାନଙ୍କ ଏହି ଅବସ୍ଥା ପ୍ରତି ବ୍ୟଙ୍ଗ—ବିଦ୍ରୂପ ମାତ୍ର ।

କଟକ ଅନୁଷ୍ଠାନ କମିଟିର ସଭାପତି ଶେଠ୍ ମୂଳଚାନ୍ଦ ଚନ୍ଦନମଲ୍ ସେଦିନ ମ୍ୟୁନିସପାଲିଟି 'ହତାରେ ଥିବା ଅନୁଷ୍ଠାନ ପରିଦର୍ଶନ କରିବାକୁ ଆସିଥିଲେ । ପଦ ପାଖରେ ଦୁଇ ହଜାର ଖଣ୍ଡେ ଭୋକିଲା ନରକଙ୍କାଳ ବସିଥିବା ବେଳେ ସେ ଆସି ପହଞ୍ଚିଲେ । ଏମାନଙ୍କୁ ଯେଉଁ ଜାଉ ଦିଆ ଯାଉଥିଲା, ତାହା ଦେଖି ସେ ବଡ଼ ସନ୍ତୁଷ୍ଟ ହେଲେ । ଏ ମଣିଷଗୁଡ଼ାକ ଯେପରି ଭାବରେ ଏ ସ୍ୱାଦୁହୀନ ଅଖାଦ୍ୟକୁ ଗିଳି ଯାଉଛନ୍ତି, ତାହା ଦେଖି ମନେ ମନେ ଶେଠଜୀଙ୍କର ଏମାନଙ୍କ ପ୍ରତି ଈର୍ଷା ହେଲା । ପୁରି, ଅଳୁ ତରକାରି, ଦହିବଡ଼ା, ପାଁପଡ଼ ଲଙ୍କାମରିଚ-ଅମ୍ବ-କାଗିଜିର ଅଚାର, ପେଡ଼ା ମିଠାଇ, ରସଗୋଲା- ଏ ସବୁ ଜିନିଷ ତାଙ୍କ ପାଖରେ ନିତି ନିତି

ବଢ଼ାଯାଏ, ଶେଠାଣୀ ନିଜ ତାଙ୍କ ଖାଇବା ପାଖରେ ବସି ଏଇଟା ଖାଅ, ସେଇଟା ଖାଅ ବୋଲି ବରାବର ବରାଦ କରନ୍ତି, କିନ୍ତୁ ଭାଗ୍ୟର ଦୋଷ ଏପରି ଯେ, ବେଶି ସେ ଖାଇ ପାରନ୍ତି ନାହିଁ, ଖାଇଲେ ପେଟ ଗଡ଼ବଡ଼ ହୁଏ, ଅଜୀର୍ଣ୍ଣ ହୁଏ, ବାୟୁଦୋଷ ଘଟେ ପେଟକୁ ମାରେ । ସେଥିପାଇଁ ଶେଠଜୀ ଖାଇ ବସିବାବେଳେ ଥାଳରେ ବଢ଼ା ହୋଇଥିବା ଖାଦ୍ୟ ଦେଖି ଡର ଯାଆନ୍ତି, ଖଣ୍ଡେ କିଛି ପାଟିକୁ ନେଲେ ଦେହ ଖରାପ ହେବ ବୋଲି ଚମକି ପଡ଼ନ୍ତି । ଏ ଅଜୀର୍ଣ୍ଣ ରୋଗ ଦୂର ହୋଇ କିପରି ବେଶି ଭୋକ ହେବ, ସେଥିପାଇଁ ସେ ବହୁତ ଔଷଧି ମୌଷଧି ଖାଇ ସାରିଛନ୍ତି । ବୈଦ୍ୟରାଜ ଗୋପୀଚନ୍ଦ୍ର ପାଞ୍ଚଶହ ଟଙ୍କା ନେଇ ଶଙ୍ଖଦ୍ରାବକ ଓ ସ୍ୱର୍ଣ୍ଣଭସ୍ମ ଦେଇ ଯେଉଁ ହଜମୀ ଚୂରଣ କରି ଦେଇଥିଲେ, ତାହାମଧ୍ୟ କିଛି କାମ ଦେଲା ନାହିଁ; କବିରାଜ ସିଦ୍ଧାନନ୍ଦ ମିଶ୍ର ଯେଉଁ ମୋଦକ ଦେଲେ ତାହା ବିଫଳ ହେଲା, ହାକିମ ନସ୍‌ଇର ଖାଁଙ୍କ ଅଓଲ୍ ନମ୍ବର ବାଦସାହୀ ହଜମୀ ଦବା ମଧ୍ୟ କିଛି କାମ ଦେଲା ନାହିଁ, ହୋମିଓ-ପାଥ ଅନନ୍ତ ଦାସ ବହୁତ ଚେଷ୍ଟା କରି ଦୁଗଧ ଶର୍କରାରେ ନାନା ରକମ ଔଷଧର ପୁଡ଼ିଆ ବାନ୍ଧି ଶେଠଜୀଙ୍କୁ ନାନା ଭାବରେ ସେବନ କରାଇ ବେଦମ କରାଇ ଦେଲେ; ଶେଷରେ ଡାକ୍ତର ଏସ. ଏନ. ପଟ୍ଟନାୟକ ଏମ.ବି.ଏସ (କାଲ) ନାନା ପ୍ରକାର ପରୀକ୍ଷାରେ; ଭେଲକି ବାଜି ପରେ ନାନା ପ୍ରକାର ବୋତଲରେ ଥିବା ନାନା ପ୍ରକାର ଦେଶୀ ଓ ବିଲାତୀ ଡାକ୍ତରୀ ଔଷଧ ସେବନ କରାଇ ମଧ୍ୟ ଶେଠଜୀଙ୍କ ଜଠର ଦେଶକୁ ବାଗକୁ ଆଣି ପାରିଲେ ନାହିଁ । ଏସବୁରେ ହଜାର ହଜାର ଟଙ୍କା ଖରଚ କରି ଔଷଧ ଖାଇ ଖାଇ ବିରକ୍ତ ହୋଇ ଶେଠଜୀ କଟକ ଚଣ୍ଡୀଙ୍କର ଅଶ୍ରାଧରିଛନ୍ତି । ମାସକୁ ୩୦ଟଙ୍କା ବେତନରେ ଜଣେ ବ୍ରାହ୍ମଣ ମୃତ୍ୟୁନ ହୋଇଛନ୍ତି । ସେ ପ୍ରତିଦିନ

ମନ୍ଦିରର ପାଖରେ ଚଣ୍ଡୀ ଗୁଣନ୍ତି; ଶେଠଜୀ ପ୍ରତିଦିନ ଯାଇ ବଡ଼ ସକାଳୁ ଚଣ୍ଡୀଙ୍କ ଦର୍ଶନ କରି ଆସନ୍ତି । ଏତେ ସାଧନାର ଧନ ସେଉଁ ଲୋକ ତାଙ୍କ ପକ୍ଷରେ ଦୁର୍ଲ୍ଲଭ, ଏ ଗରିବ ଏ କାଙ୍ଗାଳ ଗୁଡ଼ାକ ଠାରେ ତାହା ଏତେ ବେଶି ପରିମାଣରେ ଅଛି; ଏଥିରେ ଈର୍ଷା କାହାର ନ ହେବ ? ସେ ଶେଠ, ତାଙ୍କ ପକ୍ଷରେ ଖାଦ୍ୟର ଅଭାବ ନାହିଁ - ଅଥଚ ତାଙ୍କର ଭୋକ ନାହିଁ ବୋଲି ସେ ଏସବୁରୁ ବଞ୍ଚିତ । ଆଜି ତାଙ୍କ ସାମନାରେ ଏହି ଲୋକଗୁଡ଼ାକୁ ମିଳୁନାହିଁ-ଅଥଚ ଷୋଳଶଣ୍ଡା ଲୋକ ଅଛି । ଏ ଗୁଡ଼ାକ ଦୈବର ବିଡ଼ମ୍ବନା; ଈଶ୍ୱର ଫେର ବୋଲି ଶେଠଜୀ ମନକୁ ମନ ସାନ୍ତ୍ୱନା ଦେଲେ ।

ଅନ୍ନଛତ୍ର ପରିଦର୍ଶନ କରି ଫେରି ଯାଇ ଶେଠଜୀ ମାଲ୍ ଗୋଦାମରେ ଥିବା ଗଦିରେ ବଡ଼ ତକିଆକୁ ଆଉଜି ଅର୍ଦ୍ଧ ଶାୟିତ ଅବସ୍ଥାରେ ବସିଛନ୍ତି; ତାଙ୍କ ଚଉଡ଼ରେ ଥିବା ଗୁମାସ୍ତାମାନେ କିଏ ଖାତା ଲେଖୁଛି; କିଏ ନୋଟ ଗଣୁଛି; କିଏ ମାଲ୍‌ର ତାଲିକା କରୁଛି । ଦୁଇଜଣ ଗଣ୍ଡାବାଲା ପ୍ରାୟ ୫୦ଜଣ କୁଲି ଧାନ ବସ୍ତା ଓଜନ କରିବାରେ ଲାଗିଛନ୍ତି, ଦୁଇଜଣ ଗୁମାସ୍ତା ବସି ଓଜନର ହିସାବ ଲେଖୁଛନ୍ତି । ଧାନ ବସ୍ତା ବାହାରୁ ଆସୁଛି ଓଜନ ହେଉଛି; ଗୋଦାମ ଭିତରକୁ ନିଆ ହେଉଛି ।

ଗଣ୍ଡାବାଲା ବିରକ୍ତ ହୋଇ କହିଲା, 'ଆଉ କେତେ ବସ୍ତା ଅଛି ?'

କୁଲି ସରଦାର କହିଲା ; 'ଆଉ ଦୁଇ ହଜାର ଭିଲ ବସ୍ତା ହେବ ?'

ଗଣ୍ଡାବାଲା ଗୁମାସ୍ତାକୁ କହିଲା, 'ବାବୁ; ଆଜି ଓଜନ ସରିବା ପରି ଲାଗୁ ନାହିଁ ?'

ମାରଥାଡ଼ି ଗୁମାସ୍ତା କହିଲା, 'ସତ ବାତ ବାବୁ; ତୋ ବାବୁ ଅଲବତ୍ ଧାନର ଭାଣ୍ଡା ସବୁ; ନାହିଁ ତୋ ଶେଠଜୀ ବହୁତ୍ ଖପ୍ପା ହେବ- ବୁଝିଲ !'

କଣ୍ଟାବାଲା ବିରକ୍ତ ହୋଇ କହିଲା, ,ହୁଁ ହୁଁ-ମହଣେ ତେଇଶ ସେର ତିନ ଛଟାଙ୍କୀ ।'

ଏହି ସମୟରେ ଖଣ୍ଡେ ରିକ୍ସା ଶେଠଜୀଙ୍କ ଗୋଦାମ ସାମନାରେ ଛିଡ଼ାହେଲା; ସେଥିରୁ ଓହ୍ଲାଇ ଆସିଲେ ରାୟ ସାହେବ ଧରଣୀ ଧର ସେନାପତି । ତାଙ୍କୁ ଦେଖି ଶେଠଜୀ କହି ଉଠିଲେ; 'ଆଇୟେ; ବାବୁଜୀ ।'

ରାୟ ସାହେବ ଗଦି ପାଖକୁ ଯାଇ କହିଲେ ; ' ରାମ ରାମ ଶେଠଜୀ ।' ଗଦିର ଗୋଟାଏ କଡ଼ରେ ବସିପଡ଼ି କହିଲେ, 'ଶୁଣିଲି ଆପଣ ଅଞ୍ଚ ଅନ୍ନଛତ୍ର, ପରିଦର୍ଶନ କରିବାକୁ ଯାଇଥିଲେ ।'

ଶେଠଜୀ 'ହୁଁ-ହୁଁ ଟିକିଏ ସେ ଅଡ଼େ ବୁଲି ଆସିଲି । ବୁଝିଲେ ବାବୁଜୀ; ଏ ସବୁ ବଡ଼ ଦାୟିତ୍ୱ କାମ । ଗରିବ ଦୁଃଖୀମାନଙ୍କ ଖାଇବା କଥା ଟିକିଏ ସେ ଅଡ଼କୁ ଦୃଷ୍ଟି ନ ଦେଲେ ଛତ୍ରର ଚାକର ନୌକରମାନେ ବହୁତ ଗଫଲତି କରିବେ । ସେଥିପାଇଁ ମଝିରେ ମଝିରେ ମୁଁ ଟିକିଏ ଟିକିଏ ଖବର ନିଏ; ନିଜେ ବି କେବେ କେବେ ବୁଲି ଯାଏ ।'

ରାୟ ସାହେବ; ଉତ୍ସାହରେ କହିଲେ; ସେଇଥିପାଇଁ ତ ଆପଣଙ୍କ ପରି ସଚ୍ଚା ଆଉ ଧାର୍ମିକ ଲୋକ ଉପରେ ଏ କାମର ପୂରା ଭାର ମେଜେଷ୍ଟର ସାହେବ ଦେଇଛନ୍ତି । ମୁଁ ବରାବର ଅନ୍ନଛତ୍ର ଦେଖିବାକୁ ଯାଏ; କିନ୍ତୁ ମଝିଆଁ ଝିଅର ବାହାଘର ପାଇଁ ଟିକିଏ ବ୍ୟସ୍ତ ହୋଇ ପଡ଼ିଛି; ସେଥିପାଇଁ ସେ ଅଡ଼କୁ ଆଉ ଯାଇ ପାରିନାହିଁ ।

ମୁଁ ମୂଳରୁ ବୁଝିଛି, ଆପଣ ଯେଉଁଠି ଅଛନ୍ତି ସେଠି ମୋ ଭଳି ଲୋକର କିଛି ଦରକାର ନାହିଁ; କିଛି କାମ ନାହିଁ; କିନ୍ତୁ ମାଜିଷ୍ଟ୍ରେଟ ସାହେବଙ୍କ କଥା ନ ମାନି ମୁଁ ଯିବି କେଉଁଠି ? ମୁଁ ଗୋଟାଏ କାମ ପାଇଁ ଆପଣଙ୍କ ପାଖକୁ ଆସିଥିଲି ।'

ଶେଠଜୀ ବ୍ୟସ୍ତ ହୋଇ କହି ଉଠିଲେ, 'କହନ୍ତୁ; କହନ୍ତୁ'

ରାୟ ସାହେବ ; 'ଏଇ ଗୋଟାଏ ଅତି ସାମାନ୍ୟ କଥା; ବୁଝିଲେ ଆଜି କାଲି ତ କଣ୍ଟ୍ରୋଲ ବଜାରରେ ଯେତେବେଳେ ଗୁଡ଼ଚିନି ମିଳୁଛି ତ ଯେତେବେଳେ ମିଳୁନାହିଁ । ଗତ ତିନି ଦିନ ହେଲା ବଜାରରେ ଆଉ ଗୁଡ଼ଚିନି ନାହିଁ । ଗରିବ ଦୁଃଖୀମାନେ ବା ଯେ କୌଣସି ମତେ ଚଳିଯିବେ; ପିଲା ପିଲି ଧରି ଆମେମାନେ ଚଳିବୁ କିପରି ? ଆମ ଘରେ ଯେଉଁ ୩।୪ ବସ୍ତା ଗୁଡ଼ଚିନି ଥିଲା ତାହା ସରିଲା; ଭାବୁଛି ଆପଣ ଯଦି ୮।୧୦ ବସ୍ତା ଗୁଡ଼ଚିନି ଅନୁଗ୍ରହ .....

ଶେଠଜୀ ତାଙ୍କୁ ବାଧାଦେଇ କହିଲେ, 'ବାବୁଜୀ ଆପଣ ଏହି କଥାପାଇଁ ବ୍ୟସ୍ତ ହେଉଛନ୍ତି ? କୁଛ ପରବାୟ ନାହିଁ; କୁଛ ପରବାୟ ନାହିଁ, ଆପଣଙ୍କ ଆମ ଭିତରେ ଯେତେବେଳେ କଥା, ସେତେବେଳେ କିଛି ଅଭାବ ପଡ଼ିବ ନାହିଁ, କିଛି ଅସୁବିଧା ହେବ ନାହିଁ ।'

ତା ପରେ ଶେଠଜୀ ଗୁମାସ୍ତାକୁ ହୁକୁମ ଦେଲେ 'ଧ୍ୟାନ ରାମ, ବାବୁଜୀକା ମକାନ ମେ ୧୦ ବସ୍ତା ସଫେଦ ଗୁଡ଼ଚିନି ଭେଜ ଦୋ' ।

ରାୟ ସାହେବ କହିଲେ, 'ଏକାଠି ୧୦ ବସ୍ତା ନ ଦେଇ ବର୍ତ୍ତମାନ ୫ ବସ୍ତା ଦେଲେ ଚଳିବ । ବୁଝିଲେ ବର୍ତ୍ତମାନ ଟିକିଏ ଟାଣା ଟାଣି............

ଶେଠଜୀ ହସି ହସି କହିଲେ, 'କୁଛ ପରବାୟ ନେହିଁ କୁଛ ପରବାୟ ନେହିଁ ।'

ଠିକଏ ରହୁ ଶେଠଜୀ କହୁଲେ ବାବୁଜୀ ଅପଣଙ୍କ ସାଙ୍ଗରେ ଗୋଟାଏ ବିଶେଷ କଥା ଅଛୁ । ଠିକଏ ଅରପାଖ ଘରକୁ ଗଲେ ନିରୋଳାରେ ବସି ବାତ୍ ଚିତ୍ ହୁଅନ୍ତେ ।'

ପାଖରେ ଶେଠଜୀଙ୍କ ଖାସ ବୈଠକ ଖାନା । ସେଠାରେ ମଧ୍ୟ ଗଦି ଓ ବଡ଼ ବଡ଼ ତକିଆର ସମାବେଶ । ଶେଠଜୀ ଓ ରାୟସାହେବ ସେ ଘରେ ବସିଲା ପରେ ଶେଠଜୀ କହୁଲେ, 'ଅଜି କଲିକତାରୁ ଏକ ଫୋନ ଅସିଲା, ବଙ୍ଗାଲକୁ ଓଡ଼ିଶାରୁ ଗୁର ଲକ୍ଷ ବସ୍ତାଧାନ ପଠାଯିବ ।

ଏ ଗୁରିଲକ୍ଷ ବସ୍ତା ମାସକ ଭିତରେ ପଠାଯିବ ବୋଲି କଲିକତାରେ ଚୁକ୍ତି ହୋଇସାରିଛି ବୋଲି ଫୋନ ଖବର ମିଳିଲା । ଅଗରୁ ଏ ବିଷୟରେ ଯେଉଁ ସବୁ କଥାବାର୍ତ୍ତା ଗ୍ଲୁଲଥିଲା ତାର ଖବର ବରାବର ମୁଁ ରଖୁଥିଲି । ଓଡ଼ିଶାରୁ କିଏ ଏ ଗୁରିଲକ୍ଷ ବସ୍ତା ପଠାଇବ ତାହା ଠିକ ହୋଇନାହିଁ । ଏଇ ଦିନେ ଦୁଇ ଦିନ ଭିତରେ ଠିକ ହୋଇଯିବ । ବର୍ତ୍ତମାନ ଅମକୁ ଠିକଏ ଏ ବିଷୟରେ ଖବର ନେବାକୁ ହେବ । ଅପଣଙ୍କର ତ ହାକିମ ହୁକୁମାଙ୍କ ସହିତ ଭଲ ଅଳାପ ପରିଚୟ ଅଛି । ଅପଣ ଏ ବିଷୟରେ ମୋତେ ସାହାଯ୍ୟ କରିବେ ।'

ରାୟ ସାହେବ ଉତ୍ସାହ ସହିତ କହ ଉଠିଲେ; 'ନିଶ୍ଚୟ ! ଅପଣ ଏତେ ପରୋପକାରୀ ; ଅପଣ ଲୋକଙ୍କ ପାଇଁ ଏତେ କାମ କରୁଛନ୍ତି ; ସରକାର ଅପଣଙ୍କ କାମକୁ ବହୁତ ପସନ୍ଦ କରନ୍ତି; ଏ ଅବସ୍ଥାରେ ସରକାର ଏହି ୪ ଲକ୍ଷ ବସ୍ତା ଧାନ ବଙ୍ଗଳାକୁ ପଠାଇବା ଭାର ଅପଙ୍କ ଉପରେ ନ ଦେଇ ଅପଣଙ୍କୁ ସରକାରୀ ଏଜେଣ୍ଟ ନିଯୁକ୍ତ ନ କରି ଅଉ କାହାକୁ କରିବେ '?

ଶେଠଜୀ କହିଲେ, 'ସେ ସବୁ ଠିକ୍ ବାତ୍, ସେ ସବୁ ଠିକ୍ କଥା, ଲେକିନ କାମ ବଖତ୍‌ରେ ସରକାରଙ୍କ ଢଙ୍ଗ୍ ଦୁସରା ହୋଇ-ଯାଏ । ସବ୍ ପୂଜାପୂଜ ଉପରେ ନିର୍ଭର କରେ । ବୁଝିଲେ, ପୂଜାପୂଜ ତୋ ଅସଲ ଚିଜ୍ । ସରକାର ହମାରା ସବ୍ କଥା ପସନ୍ଦ କରନ୍ତି ପ୍ରଶଂସା କରନ୍ତି—ଠିକ୍; ମଗର ଅବ କୋଇ ଟିକ୍ ଦେବତାକୁ ପକଡ଼ିଲଥା ତୋ କୁଲ୍ କାମ ଓଲଟ ହୋଇଯିବ । ବୁଝିଲେ ବାବୁଜୀ, ଆପଣ ଠିକେ ମୋତେ ଏ ବିଷୟରେ ସାହାଯ୍ୟ କରିବେ ।

ରାୟ ସାହେବ କହିଲେ 'ନିଶ୍ଚୟ, ନିଶ୍ଚୟ ! ଏଥିରେ ସନ୍ଦେହ ଅଛି ? ମୋ ଦ୍ୱାରା ଯାହା ହେବ କରିବାକୁ ତିଆର ।'

ଶେଠଜୀ, ତବ୍ ବାତ୍ ପକ୍‌କା ହେଲା ? କାଲି ସକାଳେ ମୁଁ ମୋଟରରେ ଯାଇ ଆପଣଙ୍କ ଘରେ ପହଞ୍ଚିବି । ସେଠାରୁ ଆମ କାମରେ ବାହାରିବା ।

ରାୟ ସାହେବ କହିଲେ 'ହଁ, ତାହାହିଁ କରାଯିବ ।'

ଶେଠଜୀ ପକେଟରୁ ଶହେ ଟଙ୍କିଆ ନୋଟ ୪ ଖଣ୍ଡ କାଢ଼ି ରାୟ ସାହେବଙ୍କ ହାତକୁ ବଢ଼ାଇ ଦେଇ କହିଲେ, ଏଠା ଆପଣଙ୍କ ସଲାମି !

ରାୟ ସାହେବଙ୍କ ହାତ ୪ଶହ ଟଙ୍କା ଧରି ପକେଟ ଆଡ଼କୁ ଗଲା । ଏଣେ ରାୟ ସାହେବ କହିଲେ, 'ଏ କଅଣ ହେବ ଶେଠଜୀ ! ଆପଣଙ୍କଠୁଁ ଏ ସାମାନ୍ୟ କାମ ପାଇଁ ଟଙ୍କା ନେବି ?'

ଶେଠଜୀ କହିଲେ, ବାପ୍ ବାପ୍ ମୁଁ ତ କହୁଛି ଏ ଅପର ସଲାମୀ । କାମ ହୋଇଗଲେ ମିଠାଇଖିଆ ଆପଣଙ୍କର ଅଛି ।

ଏହା କହି ଶେଠଜୀ ଉଠିଲେ । ରାୟ ସାହେବ ଧରଣୀଧର ସେନାପତି ଏକମୁହାଁ ହୋଇ ବକ୍‌ସାକୁ ଗଲେ ।

ଗଦ ବାହାରେ ଅସ୍ଥିଚର୍ମ ସାର ଗୁଡ଼ାଏ ପିଲ ଛିଡ଼ାହୋଇ ଥିଲେ । ସେମାନଙ୍କ ଆଖି, ମୁହଁ, ଦେହର ସର୍ବାଙ୍ଗରେ ଫୁଟି ଉଠିଥିଲ ତୀବ୍ର ବୁଭୁକ୍ଷା ।

ଶେଠଜୀଙ୍କର ଦୃଷ୍ଟି ସେ ଆଡ଼କୁ ପଡ଼ିଲା; ଗଦରେ ପ୍ରଦ୍ଧୁଣୀ ପହରା ବାଲକୁ ଡାକି କହିଲେ, 'ଜଙ୍ଗ ବାହାଦୂର; ଏ ସବ୍‌କୋ ନିକାଲ୍ ଦୋ' ।

ସେମାନଙ୍କ ଆଡ଼କୁ ଯାଉ ଯାଉ ଜଙ୍ଗବାହାଦୂର ପାଟିକଲା 'ଏ, ଭାଗୋ ଭାଗୋ ।'

ଅସ୍ଥିଚର୍ମସାର ପିଲାଗୁଡ଼ିକ ଗଦ ଆଗରୁ ପଳାଇଗଲେ । ମାଡ଼ ଡରରେ ଧାଇଁ ଯାଉ ଯାଉ ଗୋଟିଏ ସାନପିଲା ପଡ଼ିଗଲା । ତା' ଓଠ ଫାଟି ରକ୍ତ ଦେଖାଦେଲା । ପୁଣି ସେ ଉଠି କାନ୍ଦ କାନ୍ଦ ପଳାଇଲା ।

---

## ପନ୍ଦର

'ଏ ଝିଅ, ଖାଉନାହୁଁ କାହିଁକି ବା !' ପାଖରେ ବସିଥିବା ବୁଢ଼ୀଟି କହିଲା । ମ୍ୟୁନିସପାଲଟି ଅଫିସ ପାଖରେ ଅନ୍ନଛତ୍ର । ସବୁ ଅନ୍ନଛତ୍ର ପରି ଏଠି ମଧ୍ୟ ହାଡ଼ ଚମର ଭୋକିଲା ମଣିଷଗୁଡ଼ାକ ପତ୍ର ପାଖରେ ଧାଡ଼ି ଧାଡ଼ି ହୋଇ ବସିଛନ୍ତି । ସାବିଥି ତା ପୁଅକୁ ଧରି ଖଣ୍ଡେ ପତ୍ର ପାଖରେ ବସିଛି । ଜାଉ ଦିଆ ସରିଲା—ଦିଆ ସରି ଖାଇବା ମଧ୍ୟ ସରିଲା; କିନ୍ତୁ ସାବିଥି ପତ୍ରରେ ତାହା ସେହିପରି ରହିଥିଲା । ଆଜି ତାର ଖାଇବାକୁ ଇଚ୍ଛା ନାହିଁ । ଖାଇ କି ଲାଭ

ତାହା ଉପରେ ସେ ଆଜି ବୁଝିପାରୁ ନାହିଁ । ଅଥଚ ଗତକାଲି ଏତେବେଳେ ସେ ଅନ୍ୟ ଏକ ଛକରେ ଏଇପରି ଡଙ୍କାଏ ଭାତରୁ କିଛି ଖାଇଥିଲା—ସେଥିରୁ କିଛି ତା' ପିଲାଟି ପାଇଁ ରଖିଥିଲା ।

ଛକର ସବୁ ଧାଡ଼ି ଉପରେ ତାର ଆଖି ଖୋଜି ବୁଲିଲା । ପୁଣି ହତାଶ ହୋଇ ଫେରି ଆସିଲା । ସାରଥ ନିର୍ବେଦ ହୋଇ ବସି ରହିଲା । ଯେତେବେଳେ ଯେ ତା ପଥରେ କାନ୍ଦୁ ଦିଅ ହୋଇଛି ସେତେବେଳେ ଯେ ତା ପାଖରେ ବସିଥିବା କାଙ୍ଗାଳଗୁଡ଼ିକ ତାକୁ ଗୁଣ୍ଠି ଦେଉଛନ୍ତି, ଗିଳି ପକାଉଛନ୍ତି, ସେ ଆଡ଼କୁ ତାର ଦୃଷ୍ଟି ନାହିଁ, ସେ ଆଡ଼କୁ ତାର ଲକ୍ଷ୍ୟ ନାହିଁ । ବାହାର ଦୁନିଆ ସହିତ ଯେପରି ତାର କିଛି ସମ୍ବନ୍ଧ ନାହିଁ, ସମ୍ବନ୍ଧ ରଖିବାକୁ ମଧ୍ୟ ତାର ଇଚ୍ଛା ନାହିଁ ।

ସେ ଭାବିଲା, ଆଜି ତାର ଖୋଜିବାର ଶେଷ ଦିନ । ପଧାନ-ପଲ୍ଲୀଠାରୁ କିଟିକିର ଏ ଅନ୍ନଛତ୍ର ପର୍ଯ୍ୟନ୍ତ ଗୋଟାଏ ଆଶା । ଗୋଟାଏ ବିଶ୍ୱାସ ଧରି ସେ ଖୋଜି ଆସିଛି—ଦୀନାକୁ । ଏ ସହରର ପ୍ରତ୍ୟେକ ଅନ୍ନଛତ୍ରକୁ ସେ ଯାଇଛି—ଖାଇବା ପାଇଁ ନୁହେଁ, ତାର ସ୍ୱାମୀକୁ ଖୋଜିବା ପାଇଁ; ଏ ସହରର ଯେତେ ସ୍ଥାନରେ କାଙ୍ଗାଳମାନେ ରହନ୍ତି ବା ଯେଉଁ ସ୍ଥାନକୁ ଖାଦ୍ୟ ଅନ୍ୱେଷଣରେ ଯାଆନ୍ତି ସେ ସବୁ ସ୍ଥାନକୁ ସେ ଯାଇଛି; ଖୋଜିଛି । କ୍ଷୁଧା, ଯନ୍ତ୍ରଣା ଭିତରେ ଦେଢ଼ମାସ ଧରି ସେ ଏକାଗ୍ର ଦୃଷ୍ଟିରେ ଅନ୍ୱେଷଣ କରି ଆସିଛି ତାକୁ । ଆଜି ଏ ଛକର ପଥ ପାଖରେ ବସି ସେ ମନେ-କଲା ଆଜି ତାର ଖୋଜିବାର ଶେଷ ଦିନ । ଆଉ ସେ ପାରିବ ନାହିଁ । ଆଉ ଦୀନା ସହିତ ତାର ଦେଖା ହୋଇ ପାରିବନାହିଁ । ଭୋକ, ଉପାସ ନିରବଚ୍ଛିନ୍ନ ଯନ୍ତ୍ରଣା ତାର ହାଡ଼ ଚମ ଭିତରେ

ବଞ୍ଚି ରହିବା ଯେଉଁ ଶକ୍ତିର ଉତ୍ସଟିକୁ ଶୁଖାଇ ଦେଇପାରି ନ ଥିଲା । ସାବିଅର ମନେ ହେଲା ମୁହୂର୍ତ୍ତକେ ସେ ଶକ୍ତି କୁଆଡ଼େ ଉଭେଇ ଯାଉଛି, ତାର ବଞ୍ଚିବାର କ୍ଷମତା ଶେଷ ହୋଇଛି, ତାର ବଞ୍ଚିବାର ଆଶା ମଧ୍ୟ ସରିଛି ।

ଦେଢ଼ମାସ ତଳର କଥା । ସେ ରାତିରେ କୁହୁକାଠ ଅନ୍ଧାର, ସେମାନଙ୍କର ଉଣାଦିନ ଖାଡ଼ାଖାଡ଼ା ଉପାସ । ତା ପିଲାଟିକୁ ପାଖରେ ଧରି ସାବିଅ ତାଙ୍କର କୁଡ଼ିଆ ଭିତରେ ପଡିଗଲା । ତାର ସ୍ୱାମୀ ଦାନା ବାହାର ପିଣ୍ଡାରେ ଥିଲା । ଭୋକ ଉପାସର ଶାନ୍ତ କ୍ଳାନ୍ତ ଭିତରେ ତାକୁ ହୋଲାମାରିଲା ପରି ଗୋଟାଏ ତନ୍ଦ୍ରା ଆସିଯାଇ ଥିଲା । ଗୋଟାଏ ବଡ଼ ବିଜୁଳି ଚମକି ଉଠିଲା । ସେ ଆଲୁଅରେ ତା କୁଡ଼ିଆ ଭିତରଟା ଭୟଙ୍କର ରୂପେ ଆଲୋକିତ ହୋଇଗଲା । ତା ପରେ ଗୋଟାଏ ବଡ଼ ଘଡ଼ଘଡ଼ିର ଶବ୍ଦ ହେଲା—ସାବିଅର ମନେ ହେଲା, ଯେପରି ତାଙ୍କ ଘର ପାଖରେ ଚଡ଼ଚଡ଼ିଟା ପଡ଼ିଲା । ସେ ଡାକିଲା, 'ଶୁଣୁଛ; ଶୁଣୁଛ—କେହି ତା କଥା ଶୁଣିଲେ ନାହିଁ । ପିଲାଟି କାନ୍ଦି ଉଠିଲା ।

ସାବିଅ ଉଠିଯାଇ ପିଣ୍ଡାକୁ ଗ୍ଭହିଁଲା, ଆଉ ଗୋଟାଏ ବିଜୁଳି ଆଲୁଅରେ ପିଣ୍ଡାଟା ଆଲୋକିତ ହୋଇଗଲା; ସାବିଅ ଦେଖିଲା, କେହି ନାହିଁ । ପିଲାଟିକୁ ପାଖକୁ ଟାଣିଆଣି ସେ ସେଇଠି ବସି ପଡ଼ିଲା ।

ସବୁ ରାତି ପାହେ, ସେ ରାତିଟା ପାହିଲା, ସକାଳ ହେଲା । ସାବିଅ ଦାନାକୁ ଗ୍ଭହିଁ ଗ୍ଭହିଁ ବସି ରହିଲା । ଭାବିଲା, ସମସ୍ତେ ତ ଉଣାଦିନ ଉପାସ, ପେଟକୁ ଦାନା ଯାଇନାହିଁ; ସେ ବୋଧହୁଏ କେଉଁଠୁ କଅଣ ମାଗିଯାଚି ଆଣିବା ପାଇଁ ଗାଁ ବାହାରକୁ ଯାଇଥିବ ।

ଦିନ ବଢ଼ିଲା । ପିଲାଟା ସେତେବେଳକୁ ଭୋକରେ ଅଲଗା ହୋଇ ପଡ଼ିଲାଣି; ଦୀନାର ଦେଖା ନାହିଁ । ସାବିଆ ପିଲାଟିକୁ ଧରି ପଧାନ ଘରକୁ ଗଲା । ସାମନ୍ତ ପଧାନକୁ ସବୁକଥା କହିଲା ।

ପଧାନେ କହିଲେ, 'ହଉ, ସେ କୁଆଡ଼େ ଯାଇଥିବ ମଗିଯାଚି ଅଣିବା ପାଇଁ । ଆମ ଘରେ ତ ଗୁଡ଼ଜଳ ନାହିଁ, ଅମେ ଦିନକୁ ଥରେ ପେଜତୋରାଣୀ ପିଇ ଚଳୁଛୁଁ । ଅଧସେରେ ଖଣ୍ଡେ ଗୁଡ଼ଜଳ ନେଇ ଯା । ଫୁଟାଇ ତୁ ମୁହଁରେ ଦେ, ପିଲାଟା ମୁହଁରେ ଦେ— ପିଲାଟା ତ ଅଉ ବଞ୍ଚିବ ନାହିଁ ।'

ସାବିଆ ସେ ଗୁଡ଼ଜଳ ଅଣି ଫୁଟାଇ ଟୋପାଟିକ ପିଲା ମୁହଁରେ ଦେଲା । କିଛି ନ ଖାଇ ଦୀନାର ବାଟ ଚାହିଁ ରହିଲା ।

ଦିନ ଗଲା, ରାତି ଅସିଲା । ସାବିଆ ସେ ଗୁଡ଼ରୁ ମୁଠାଏ ମୁହଁରେ ଦେଇ ବାକିତକ ଦୀନା ପାଇଁ ସାଇତି ରଖିଲା ।

ଦିନ ଯାଏ, ରାତି ଅସେ; ରାତି ଯାଏ, ଦିନ ଅସେ; କିନ୍ତୁ ଦୀନା ଅସିଲା ନାହିଁ । ତାର କିଛି ଖବର ମିଳିଲା ନାହିଁ । ସାବିଆ ପୁଣି ପଧାନ ଘରକୁ ଗଲା । ପଧାନେ କହିଲେ, 'ପେଟ ଜ୍ୱାଳାରେ ସେ କଟକ ପଳାଇଛି । ବଗୁରା କେତେ ଉପାସ ରହିବ ? ତମେ ଉପାସ ରହିବା ଦେଖି କେତେ ଦିନ ସହିବ ? ତାର ମୁଣ୍ଡ ଖରାପ ହୋଇଗଲା । ସେ କଟକ ପଳାଇଛି ।'

ସାବିଆ ଫେରିଲା । ରାତିଟା ସାରା କୁଡ଼ିଆରେ ପଡ଼ିପଡ଼ି ଭାବିଲା, ନା, ତାର ସ୍ୱାମୀ ଭୋକ ଜ୍ୱାଳାରେ କଟକ ପଳାଇ ନାହିଁ, ପଳାଇଛି ତାଙ୍କର ଜ୍ୱାଳା ସହି ନ ପାରି । ଘର ଯାଇଥିଲା, ଦ୍ୱାର ଯାଇଥିଲା, ଜମିବାଡ଼ି ସବୁ ଯାଇଥିଲା; ଭୋକ ଉପାସ ନିତିଦିନର ଘଟଣା ହୋଇଥିଲା; କିନ୍ତୁ ସେଥିରେ ସାବିଆର ଚିନ୍ତା ନ ଥିଲା ।

ଅନେକ ସମୟରେ କାଳେ ନ ଖାଇ ଖାଇବା ଜିନିଷ — ଏଇ ଶାଗ ସିଝା, ବଣଶାଗୁ ସିଝା — ଦୀନାପାଇଁ ରଖିଦଏ । ସେ ବଞ୍ଚିଲେ ଲାଭ କଅଣ ? ତାର ସ୍ୱାମୀ ବଞ୍ଚିରହିଥିଲେ ତ ତ ର ସବୁ ଅଛି । ଦୀନା ଭଲ ଖାଉ, ଦୁଃଖ କରୁ, ଦି'ଦିନରେ ବେଳାଏ ଖାଇବାକୁ ପାଉ; କିନ୍ତୁ ବଞ୍ଚିଥାଉ, ଏଇ କଥାଟାକୁ ସାର କରି ସିନା ସାବିଆ ଆନନ୍ଦରେ ପେଟର ଜ୍ୱାଳା ସହି ଯାଉଥିଲା । ଆଜି ସେ କରିବ କଅଣ ? ସିଏ କୁଆଡ଼େ ?

ଏତିକି ହୋଇଥିଲେ ତ ତାର କିଛି ଚିନ୍ତା ନ ଥିଲା । ସେ ଏଇ କୁଡ଼ିଆରେ ପଡ଼ନ୍ତା — ପଡ଼ି ପଡ଼ି ମରନ୍ତା । ଏ ପିଲାଟିକୁ ଧରି କରିବ ସେ କଅଣ ? ମରିବ କିମିତି ? ଏଠି ପଡ଼ି ରହିଲେ ବା ପିଲାଟା ବଞ୍ଚିବ କିମିତି ?

ରାତି ପାହିଲା, ସକାଳ ହେଲା । ସାବିଆ ତା ପୁଅଟିକୁ କାଖରେ ଧରି ଗାଁ ଛାଡ଼ି କଟକ ଅଡ଼କୁ ଗଲା ଦୀନକୁ ଖୋଜିବା ପାଇଁ । ତା ଗାଁଠାରୁ କଟକ କେତେ ବାଟ, ସେ ଯିବ କେମିତି, ଦୀନାକୁ ପାଇବ କେମିତି, ଏ ସବୁ କଥା ତା ମନରେ ଉଠିଲା ନାହିଁ ମୁହୂର୍ତ୍ତକ ପାଇଁ । ହାବିଲଦାରଙ୍କୁ ଯେପରି ଟେଗଟାଏ ଅଗ୍ନିଶିଖା ଉପରକୁ ଉର୍ଦ୍ଧ୍ୱଶ୍ୱାସରେ ଠେଲି ନେଇ ଗଲେ, ଠିକ୍ ସେହିପରି ତା ମନ ଭିତରର ଗୋଟାଏ କଥା ତାକୁ କଟକ ଅଭି-ମୁଖରେ ଠେଲି ନେଇ ଗଲା ।

ପଧାନପଲ୍ଲୀ ଆଜି କଟକ-ପୃଥିବୀର ଉତ୍ତର ମେରୁଠାରୁ ଦକ୍ଷିଣ ମେରୁ ନୁହେଁ; ବଡ଼ଲୋକର ମୋଟର ଗାଡ଼ି ଏକା ଦିନକେ ଗୃହ ଥର ଯାଇ ଗୃହ ଥର ଆସି ପାରେ; କିନ୍ତୁ ନିଃସ୍ୱ, ବୁଭୁକ୍ଷୁ କାଙ୍ଗାଳ ପକ୍ଷରେ ଏ ବାଟ ବହୁତ ଦୂର; ଏ ବାଟ ମୃତ୍ୟୁ-କଣ୍ଟକିତ; ଏ ବାଟ

ଆସବନ୍ତି । ଯାହାର ଏରୋପ୍ଲେନ ଅଛି , ବାଷ୍ପୀୟ ଯାନ ଯାହାର ଅଶ୍ୱବଳ, ଦୁଇଶହ ମାଇଲ ତା ପକ୍ଷରେ ଘଣ୍ଟାକର ବାଟ; କିନ୍ତୁ ଭୋକ ଉପାସ ସହି ସହି ଯେଉଁମାନଙ୍କର ଦେହର ସବୁ ଶକ୍ତି ଶେଷ ହୋଇଛି, ଖାଇବାକୁ ନ ପାଇ ଯେଉଁମାନେ ମରଣର ସିଂହଦ୍ୱାରରେ ପହଞ୍ଚି ଯାଉଛନ୍ତି, ଦୁଇଶହ ପାଦ ଚାଲିବା ତାଙ୍କ ପକ୍ଷରେ ଦୁଇ ହଜାର ମାଇଲ ଠାରୁ ବେଶି ।



## ଶୋକ

ସାଉଅ ତା ପିଲାଟିକୁ କାଖରେ ଧରି ଚାଲେ ଅନ୍ନ ଦାନାକୁ ଖୋଜେ । ବାଟରେ କେଉଁଠି କେତେବେଳେ କିଛି ମିଳିଲେ ପୁଅଟି ମୁହଁରେ ଦିଏ, ନିଜ ମୁହଁରେ ଦିଏ—ଚାଲେ । ବାଟରେ ଗାଁ ପରେ ଗାଁ ପଡ଼େ; ସବୁଗୁଡ଼ାକ ଶ୍ମଶାନ ।

ବାଟରେ ସାଉଅ ଶୁଣିଥିଲା, ରମ୍ନାରେ ଗାନ୍ଧୀଙ୍କ ପକ୍ଷରୁ ଗୋଟାଏ ଛତ୍ର ଫିଟିଛି; ସେଥିରେ କାଙ୍ଗାଳମାନଙ୍କୁ ଖାଇବାକୁ ଦିଆ ଯାଉଛି । ସାଉଅ ମନରେ ଗୋଟାଏ ଆଶା ହେଲା, ଦାନା ସେଇଠି ଥାଇପାରେ !

ରମ୍ନାର ଅନ୍ନଛତ୍ର ନିକଟରେ ହଜାର ହଜାର କାଙ୍ଗାଳ ରୁଣ୍ଡ ହୋଇଥାନ୍ତି । ସେମାନଙ୍କ ଭିତରୁ ଦାନାକୁ ଖୋଜି ବାହାର କରିବା ଏକା ଦିନର କାମ ନୁହେଁ । ସାଉଅ ଛତ୍ରର ଅନ୍ନରୁ ମୁଠାଏ ପିଲାଟିକୁ ଖୁଆଇ, ନିଜେ ମୁଠାଏ ଖାଇ ସେଇଠି ପଡ଼ିରହିଲା । ଦିନେ

ଗଲା, ଦୁଇ ଦିନ ଗଲା । ପଧାନପକ୍ଷୀର ଜଗୁ ଜେନା, ମୂଷା ଜେନା ଆଦି କେତେ ଲୋକଙ୍କୁ ସେ ସେଠାରେ ଦେଖିଲା । ସେମାନେ ମଧ୍ୟ ହାଡ଼ଚମରେ ବହୁଛନ୍ତି । ସେମାନେ ମଧ୍ୟ ଏ ଛକକୁ ଆଶା କରି ପଡ଼ିଛନ୍ତି । ସାବଅ ସେମାନଙ୍କୁ ସ୍ୱାମୀର ଖବର ପଚାରିଲା, ସେମାନେ କେହି ତାକୁ ଦେଖି ନାହାନ୍ତି ବୋଲି କହିଲେ ।

ବମ୍ବା ରେଳଷ୍ଟେସନ ପାଖରେ ଗୋଟାଏ ଗଛ । ତାର କିଛି ଦୂରରେ ରେଳବାଇ ପଏଣ୍ଟସ୍‌ମ୍ୟାନ ନାରାୟଣ ପାତ୍ରର ଖୋଲି ଘର । ସେଇ ଗଛ ତଳେ ସାବଅ ପଡ଼ିରହିଲା । ତାର ନିଜ ପାଇଁ କିଛି ଚିନ୍ତା ନାହିଁ ; ପିଲାଟିହିଁ ତାର ପ୍ରଧାନ ଜଞ୍ଜାଳ ।

ସେଦିନ ସକାଳୁ ସାବଅ ଗଛମୂଳରେ ଯେ ବସିଛି ଯେ ବେଳ ଅସ୍ତ ଗଡ଼ିବା ଉପରେ ହେଲାଣି । ଅଗ ଦିନର ଖାଦ୍ୟରୁ ଯେଉଁ ମୁଠାଏ ଚୁଡ଼ା ଲୁଗା କାନିରେ ବାନ୍ଧି ରଖିଥିଲା, ଷ୍ଟେସନ ପାଖରେ ଥିବା ପୋଖରୀରୁ ମୁନ୍ଦାଏ ପାଣି ଆଣି ସେଥିରେ ତାକୁ ଚକଟି ପିଲାଟାକୁ ପିଆଇ ଦେଇଛି । ଦିନ ଗଡ଼ିଲା; ପିଲାଟି ବାରମ୍ବାର କାନ୍ଦ ଉଠିଲା; କିନ୍ତୁ ସାବଅ ସେ ଗଛତଳୁ ଉଠିଲା ନାହିଁ । ନାରାୟଣ ପାତ୍ର ସକାଳେ ଷ୍ଟେସନକୁ ଡ୍ୟୁଟିରେ ଯିବାବେଳେ ସାବଅ ଓ ତାର ପୁଅଟିକୁ ଗଛମୂଳେ ଦେଖି ଯାଇଥିଲା । ବାରଟା ବେଳେ ଫେରି ଦେଖିଲା, ସେ ସେଇଠି ବସିଛି । ଏ ମାଅପୁଅ ଦୁହିଁଙ୍କୁ ଦେଖିଲା ବେଳୁଁ ତା ମନ ଭିତରେ ଅନେକ ଦିନର ଅନେକ କଥା କେଜାଣି କାହିଁକି ଚେଇଁ ଉଠିଥିଲା । ମାଲଗାଡ଼ି ପାଇଁ ପଏଣ୍ଟ ପକାଉ ପକାଉ ତା ଘର କଥା ମନେ ପଡ଼ିଲା । ଢ଼ର୍ ଘର୍ ଧଡ୍ ଧଡ୍ ଶବ୍ଦ କରି ତା ସାମନାରେ ଗାଡ଼ି ଷ୍ଟେସନ ଆଡ଼କୁ ଚାଲିଗଲା । ନାରାୟଣ ପାତ୍ର ବାଁ ହାତ ଭୁହୁଡା କାନିରେ ତା ଆଖି ଦୁଇଟାକୁ ପୋଛିଲା ।

ତା ସବୁ ପାଲିବ । ଗଛ ବଢାସରେ ଶଳଗା ମାଡ଼ିଆସି ତା ଘରଦ୍ୱାର ସବୁକୁ ଗିଳିଦେଲା; ସେଇଦିନୁଁ ତାର ସ୍ତ୍ରୀ ଚମ୍ପା, ତା କୋଳରେ ଏମିତି ଛୁଅଟିଏ କାହ୍ନୁଅ ଯେ କୁଆଡ଼େ ଗଲେ ତାର ସେ ପତ୍ତା ପାଉ ନାହିଁ । ନାରାୟଣ ପାଣ୍ଡ ବହୁତ ଖୋଜିଲା, ବହୁତ ଖବର ନେଲା; ଶେଷରେ ଠିକ କଲା ତାର ସ୍ତ୍ରୀ ଓ ପିଲା ଶଳଗା ଗର୍ଭରେ ଚିରକାଳ ପାଇଁ ବିଲୀନ ହୋଇ ଯାଇଛନ୍ତି ।

ସକାଳୁ ସାରିଆ ଆଜି ତା ପୁଅଟିକୁ ଦେଖିଲା ବେଳୁ ତା ମନରେ ଚମ୍ପା ଓ କାହ୍ନୁଅ କଥା ବାରମ୍ବାର ଚେଇଁ ଉଠୁଛି ।

ବାରଟା ବେଳେ ବସାକୁ ଫେରି ସେ ଚୁଲ୍ଲୀ ଲଗାଇଲା; ନିତି ନିଜ ପାଇଁ ପୋଟେ ଗୁଡ଼ିଏ ପକାଏ, ଆଜି ଦ'ପୋଟ ଗୁଡ଼ିଏ ପକାଇଲା । ସାରିଆ ପାଖକୁ ଯାଇ ସେ ପଚାରିଲା, 'ଏ ଝିଅ ତୁ ଏଠି ବସିଛୁ କାହିଁକି ? ଘରକୁ ଯାଉ ନାହୁଁ ।'

ସାରିଆ ତାଙ୍କୁ କିଛି ଉତ୍ତର ଦେଲା ନାହିଁ; ପିଲାଟିକୁ କୋଳରେ ଧରି ସେମିତି ବସି ରହିଲା ।

ନାରାୟଣ ପାଣ୍ଡ ଆଉ କିଛି କହିଲା ନାହିଁ—ଝୋଲକୁ ଫେରି-ଗଲା । ଖାଇବା ଆଗରୁ ସେ ଗୋଟାଏ ପତରେ କିଛି ଭାତ ଓ ତରକାରି ଧରି ଗଛମୂଳେ ପହଞ୍ଚି କହିଲା, 'ନେ, ଏଇଟା ଖାଇ ଦେ ।'

ସାରିଆ ତାର ପିଲାଝରର ଫଟା କେଲଟା ଦେଖାଇଲା; ଭାତ ନେଇ ପିଲାଟାକୁ ଦଟା ଖୁଆଇ ଦେଲା; କେଲ ଉପରେ ଖଣ୍ଡେ ଛିଣ୍ଡା କନା ଢାଙ୍କି ଗଛ ମୂଳରେ ଗୋଟାଏ କଡ଼କୁ ଥୋଇ ଦେଲା ।

ଦିନ ପାଞ୍ଚଟା ବାଜିଲା । ନାରାୟଣ ପାଣ୍ଡ ପମ୍ପିଂଷ୍ଟେସନକୁ ଡ୍ୟୁଟି କରିବା ପାଇଁ ଆସି ଦେଖେ ସେ କେଲରେ କାନ୍ଦି ଘୋଡ଼ା ହୋଇ ଭାତ ଦୁଇଟା ସେମିତି ପଡ଼ିଛି ।

ସାରିଆକୁ ପଚାରିଲା, 'ତୁ ଏଠି ବସିଛୁ କାହିଁକି ? କୁଆଡ଼େ ଯିବୁ ?'

ସାବଥ କହିଲା, 'କଟକ ଯିବ ।'

ନାରାୟଣ ପାଜ ପଚାରିଲେ 'କଟକରେ ତୋର କିଏ ଅଛି ?'

ସାବଥ କହୁଥିଲା, 'ଖୋଜୁଛି ।'

ଝିଅଏ ବାହୁ କହିଲା, 'କଟକରେ ସେ ଅଛନ୍ତି ।'

ନାରାୟଣ ପାଜ ଷ୍ଟେସନ ଭିତରକୁ ଗଲେ । ଖାଲି ତାର ମନେ ହେଉଥାଏ, ଏ ସ୍ତ୍ରୀଲୋକଟାର ଏ ଅବସ୍ଥା, ତା ଉଦରେ ପିଲାଟାଏ– ତଥାପି ଖୋଜୁଛି, କେଜାଣି ପ୍ରାଣ କଟକ ଯାଏ ଯିବ । ତାର ସ୍ୱାମୀ ନା ? ସେ କଅଣ ତାଙ୍କୁ ସ୍ୱର୍ଗକୁ ନେବ ? ହୁଏତ ବାଟରେ ଏ ସ୍ତ୍ରୀ-ଲୋକଟି ମରିବ, ହୁଏତ ଏ ପିଲାଟା ମରିବ; ଅଥଚ ସେମାନେ ବସ୍ତାରେ ବନ୍ଧା ଗଲେ ହୁଏତ ଛଅ ଅଣାରେ କିଛିଦିନ ବଞ୍ଚି ପାଆନ୍ତେ । କି ଏ ଆକର୍ଷଣ ? ଏହାର କାରଣ କଅଣ ? ନାରାୟଣ ପାଜର ମନେ ପଡ଼ିଗଲା, ତା ଷ୍ଟୋର କଥା । ସେ ଘରେ ଥାଏ; ସେ ମଧ୍ୟ ଘରେ ଥାଇ ତାଙ୍କୁ ଖୋଜେ । ଆଜ ଯେଉଁଦିନ ତାଅବତାରରେ ଗାଡ଼ି ଆସିଥିଲା, ସେତେବେଳେ ବୁଢ଼ୀ ଯଜ ପାଜ କଅଣ ତାଙ୍କୁ ଖୋଜ ନ ଥିବ ମନେ ମନେ—ବିକଳ ହୋଇ ? ତା ଛାତ ଭିତରୁ କମିତ ପୁଳାଏ ପବନ ଉଠି ଆସି ତା କଣ୍ଠକୁ ରୁନ୍ଧ ପକାଇଲା ।

ନାରାୟଣ ପାଜ ପଏଣ୍ଟ ପକାଇଲେ । ଚକ୍ରଧରପୁର ଅପ୍ ପ୍ୟାସେଞ୍ଜର ଆସି ରମ୍ଭା ଷ୍ଟେସନରେ ଛିଡ଼ାହେଲା । ସେ ଗାଡ଼ି ଅନ୍ଧକୁ ଧାଇଁଲା ଉଦ୍ଧ ଶ୍ୱାସରେ । ଗାଡ଼ିରେ ଗଞ୍ଜାମ ଷ୍ଟେସନର ଜମାଦାର ସୁଲେମାନ ଯାଉଥିଲା । ପାଜ ତାଙ୍କୁ ପଚାରିଲେ, 'ଜମାଦାର କେତେ ବାଟ ଯିବ କି ?'

ସୁଲେମାନ କହିଲା, 'କଟକ ଯାଏ ଯିବାର ଅଛି ।'

ପାଏ ଧାଇଁଲ ଷ୍ଟେସନ ବାହାରେ ଥିବା ଗଛ ଅଡ଼କୁ । ଗଛ ପାଖରେ ପହଞ୍ଚି ସାଇଆକୁ ଡାକିଲା, 'ହେ, ହେ—ତୁ କଣ ଯିବୁ ପରା ? ଚଞ୍ଚଳ ଆସେ । ଧାଇଁ ଆସେ ।'

ସାଇଆ ତା କନାପଣ୍ଟା ଗୋଟେଇ ନାରାୟଣ ପାଏ ପଛେ-ପଛେ ଗଲା ।

ରେଲ ଡବା ଉପରକୁ ସାଇଆ ଆଉ ତା ପୁଅକୁ ଉଠାଇଦେଇ ନାରାୟଣ ପାଏ ଜମାଦାରକୁ କହିଲା, 'ଏ ଦୁଇ ଭ·ଙ୍ଗାଳିକୁ କଟକ ଯାଏ ସାଙ୍ଗରେ ନେଇଯିବ । ବହୁତ ଧର୍ମ ହେବ ତମର ।'

ତା ପର ସାଇଆ ଅଡ଼କୁ ଗୋଟାଏ ଦ'ଅଣି ପକାଇ ଦେଇ କହିଲା, 'ନେ, ଏଇକ ନେ ! ଯେତେବେଳେ କିଛି ନ ମିଳିବ ଏଥିରେ କିଛି କିଣି ତୋ ପିଲାଟିକୁ ଦେବୁ ।'

ଷ୍ଟେସନରେ ଘଣ୍ଟା ବାଜିଲା, ଗାଡ଼ି ସିଟି ଦେଲା, ସୁଦ୍ଧେଇଆ କିଛି କହିବା ଆଗରୁ ଗାଡ଼ି ଛାଡ଼ି ଦେଲା । ନାରାୟଣ ପାଏ ରେଲ-ଗାଡ଼ିର ସେଇ ଡବା ଅଡ଼କୁ ଗୃହିଁ ପ୍ଲାଟଫର୍ମରେ ଛିଡ଼ାହୋଇ ରହିଲା ।

ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିବା ସଙ୍ଗେ ସଙ୍ଗେ ସେ କହିପକାଇଲା 'ଓମ୍ମା ।'

ଧୀରେ ଧୀରେ ଷ୍ଟେସନ ଘର ଅଡ଼କୁ ସେ ଫେରିଲା ।

———

# ଘଡର

କଟକ ରେଲ ଷ୍ଟେସନ । ଗୃହା ସ୍ଥଳରେ ଗୃହା ଅଛି; କିନ୍ତୁ କେଉଁ ବସ୍ତୁଟି ନାହିଁ—ମଇଦା କୁଅଡ଼େ ଜମେଇ ଯାଇଛି; କେଉଁ-ବସ୍ତୁଟି ହେବ ନାହିଁରେ ? ଚଣାଚୂରବାଲାର ଖୁମଗୁ କୁଅଡ଼େ ଅଦୃଶ୍ୟ ହୋଇଛି—ଚଣା ବା ଚୁଟ ଡ ମିଳୁ ନାହିଁ; ଚଣାଚୂର ହେବ କେମିତ ? ମିଠାଇବାଲାର ଢାଚଙ୍କା ଠେଲାଗାଡ଼ି ଗୋଟାଏ କଡ଼ରେ ନହମି ପଡ଼ି ରହିଛି; ତାର ତକାଟା ଚକର ଗୋଟାଏ କୁଅଡ଼େ ଯାଇଛି । ଅଟା ମିଳୁ ନାହିଁ, ବେସନ ମିଳୁ ନାହିଁ—ପୁରି ମିଠାଇ ହେବ କାହିଁରେ ? ସେ ଗାଡ଼ିରେ ବ୍ରହ୍ମପୁର ଅଡ଼ୁ ପ୍ୟାସେଞ୍ଜର ଗାଡ଼ି ପହଞ୍ଚିବା ସଙ୍ଗେ ସଙ୍ଗେ ଦୁଇତିନିଟା ପାନବାଲା ପେଟି ଅଗରେ ଡାଲା ଲଟକାଇ ଡାକ ଛାଡ଼ୁଛନ୍ତି—ପାନ, ବିଡ଼ି, ସିଗାରେଟ ।

କଟକ ଷ୍ଟେସନକୁ ମଧ୍ୟ ଓଡ଼ିଶା ଦୁର୍ଭିକ୍ଷ ଆକ୍ରମଣ କରିଛି । ଏହାର ପ୍ଲାଟଫର୍ମ ଭିତରେ ଖାକି ପୋଷାକ ପିନ୍ଧିଥିବା ମିଲିଟାରୀଙ୍କ ଭିଡ଼—ସେମାନେ ବସିଛନ୍ତି, ବୁଲୁଛନ୍ତି, ପକେଟରୁ ବିସ୍କୁଟ ବା ଆଉ କିଛି ଫଳ ବାହାର କରି ଖାଉଛନ୍ତି, ସିଗାରେଟରୁ ଧୂଆଁ ଛାଡ଼ୁଛନ୍ତି । ଅଉ ଷ୍ଟେସନ ପ୍ଲାଟଫର୍ମ ବାହାରେ ଭିଡ଼—ଦୁର୍ଭିକ୍ଷ ଅକ୍ରାନ୍ତ ନରକଙ୍କାଳ କାଙ୍ଗାଳମାନଙ୍କର । ସେମାନେ ସତ୍ତ୍ରରଗଣ୍ଡି ଅ ଛିଣ୍ଡାଲୁଗା ଖଣ୍ଡେ ଖଣ୍ଡେ ପିନ୍ଧି ବାହାରେ ଥିବା ଗଛଗୁଡ଼ାକ ମୂଳରେ ପଙ୍କାପଙ୍କି ହୋଇ ଗଡ଼ି ପଡ଼ିଛନ୍ତି । ଷ୍ଟେସନର ବକୁଳ ବଗିର ଛାଇଛାଇକିଆ ଅଲୁଅରେ ଦେଖିଲେ ଷ୍ଟେସନର ଏହି ଅଂଶ ଅନ୍ଧାରା ଗଡ଼ପଣ୍ଡି ଗୋଟାଏ ବିରାଟ ଶ୍ମଶାନ ପରି ଦେଖାଯାଉଛି ।

ବିଦେଶରୁ ଆସୁଥିବା ବ୍ୟକ୍ତିମାନଙ୍କୁ ୧୯୪୨-୪୩ର ଓଡ଼ିଶା ଦୁର୍ଭିକ୍ଷର ମୂକ ପ୍ରତୀକସ୍ୱରୂପେ ଏହି ସହସ୍ର କାଙ୍ଗାଳହିଁ ପ୍ରଥମେ ସ୍ୱାଗତ-ସମ୍ଭାଷଣ ଜଣାଉଛନ୍ତି କଟକ ଷ୍ଟେସନ ବାହାରେ ।

ଦୁର୍ଭିକ୍ଷ ଆକ୍ରମଣରେ କଟକ ସହର ଗୋଟାଏ ଶ୍ମଶାନ ସ୍ଥାନରେ ପରିଣତ ହୋଇଛି । ସହର ବାହାରୁ ଖାଦ୍ୟ ଜିନିଷ ନ ଆସିଲେ ସହରର ଲୋକେ ଭୋକରେ ମରିବେ, ଅଥଚ ସହରକୁ ସେଥିରୁ ଆସୁ ନାହିଁ । ମୁଦି ଦୋକାନ ଖାଲି ପଡ଼ିଛି—ଚାଉଳ ନାହିଁ, ଗହମ ନାହିଁ, ମୁଗ ବିରି କିଛି ନାହିଁ । ଗୁଡ଼ିଆ ଦୋକାନ ଖାଲି ପଡ଼ିଛି—ଅଟା ନାହିଁ, ଘିଅ ନାହିଁ, ଚିନି ନାହିଁ । ହୋଟେଲ ଖାଲିପଡ଼ିଛି—ଚାଉଳ ନାହିଁ, ପରିବା ଉଚ୍ଚମୂଲ୍ୟରେ ବିକି ହେଉଛି । ଲୁଗା ଦୋକାନରେ ଲୁଗା ନାହିଁ । ତେଲଘଣା ଦୋକାନରେ ତେଲ ମଶଲାର ଦୁର୍ଭିକ୍ଷ । ମନୋହରୀ ଦୋକାନରେ ଛୁଞ୍ଚି ସୂତା ମିଳୁ ନାହିଁ । ରାତିରେ ଅଳିଆ ଜାଳି ମୁହଁଏ କାଠଯୋଡ଼ୀ ପାଣି ପିଇବ, ତା' ମଧ୍ୟ ସହଜ ନୁହେଁ—କିରସିନି ନାହିଁ, ଦିଆସିଲି ନାହିଁ । ସହରର ଗୃହସ୍ଥଙ୍କ ଘରେ ଟଙ୍କାକିଆ ନୋଟ ଯଥେଷ୍ଟ ଅଛି; କିନ୍ତୁ ଚାଉଳ ମିଳୁ ନାହିଁ । ପରିବାରର ଲୋକେ ଦିନେ ଦୁଇଦିନ ଉପବାସ ରହିବାକୁ ବାଧ୍ୟ ହେଉଛନ୍ତି । ଗୃହସ୍ଥ ଟଙ୍କାକିଆ ନୋଟ ଧରି ପରିବା କିଣିବା ପାଇଁ ବଜାରକୁ ଗଲା । ହତାଶ ହୋଇ ଶୂନ୍ୟ ହାତରେ ପୁଣି ଘରକୁ ଫେରି ଆସିଲା—ରେଜା କୁଆଡ଼େ ଲୁପ୍ତ ହୋଇଛି. ପଇସା ଅଧଲା ଶୂନ୍ୟରେ ମିଶି ଯାଇଛି । ଗୃହସ୍ଥର ପିଲାଟି ପଢ଼େ; ବଜାରରେ ବହି ନାହିଁ, କାଗଜ କଲମ ପେନ୍‌ସିଲ୍ କିଛି ନାହିଁ । ଟଙ୍କା ଦେଇ ଦଶ ମୁଣ୍ଡିଆ ମାରିଲେ ମଧ୍ୟ ଏ ସବୁ ଜିନିଷରୁ କିଛି ହେଲେ ମିଳିବାର ସମ୍ଭାବନା ନାହିଁ । ୧୯୪୨-୪୩ର ଦୁର୍ଭିକ୍ଷ ? ଏପରି ସର୍ବବ୍ୟାପୀ

ଦୁର୍ଭିକ୍ଷ କେବେ ହୋଇଥିବାର ତ ଇତିହାସରେ ଦେଖାଯାଏ ନାହିଁ । ଏହା ଖାଦ୍ୟର ଦୁର୍ଭିକ୍ଷ, ବସ୍ତ୍ରର ଦୁର୍ଭିକ୍ଷ, କାଗଜକଲମ ଛୁଞ୍ଚିସୂତାର ଦୁର୍ଭିକ୍ଷ—ରେଜା ପଇସାର ଦୁର୍ଭିକ୍ଷ । ଏ ଦୁର୍ଭିକ୍ଷ ଭିତରେ ବାହୁଲ୍ୟ କେବଳ ନରକଙ୍କାଳ, ଖାକି ପୋଷାକ ଓ ଟଙ୍କାକିଆ ନୋଟର ।

ସରିଆ ତା ପିଲାଟିକୁ କାଖେଇ ଧରି ରେଲଗାଡ଼ିରୁ ଓହ୍ଲାଇ ପ୍ଲାଟଫର୍ମର ଗୋଟାଏ କଡ଼ରେ ଛିଡ଼ା ହୋଇରହିଲା । କଟକ ସହର । କୌଣସି ଦିନ ସେ ତା ଘର ଗାଁଡ଼ କୁଅଡ଼କୁ ବାହାରି ନାହିଁ । ସେ ଶୁଣିଛି,କଟକ ବହୁତ୍ ବଡ଼ ସହର । ଏତେ ସହରରେ—ସେ ଯିବ କେଉଁଠାକୁ? ଖୋଜିବ କୁଆଡ଼େ ? ନା, ତାକୁ ଖୋଜିବାକୁ ହିଁ ହେବ, ଜାନାକୁ ପାଇବାକୁ ହିଁ ହେବ । ତା ପରେ ତା ହାତରେ ଏ ପିଲାଟିକୁ ଛାଡ଼ି ଦେଇ ସେ ନିଶ୍ଚିନ୍ତ ହୋଇ ଆଖି ବୁଜିବ ।

ଗହଳି କମିଗଲା । କଟକ ଷ୍ଟେସନରୁ ପ୍ୟାସେଞ୍ଜର ଗାଡ଼ି ଘଣ୍ଟି ମାରି ସିଟି ଲଗେଇ ଜଳାଇ କଲିକତା ଅଭିମୁଖରେ ଯାତ୍ରା କଲା । ସାବିଆ ଧୀରେ ଧୀରେ ଷ୍ଟେସନ ଭିତରୁ ବାହାରିଲା । ଗଣେଶଘାଟ ଅଡ଼କୁ ଯେଉଁ ବାଟ ପଡ଼ିଛି ସେଥିରେ ଗ୍ଲଲିଲା ।

ବାଟର ଦୁଇକଡ଼ରେ କାଙ୍ଗାଳଗୁଡ଼ିକ ପଡ଼ିଛନ୍ତି । ସାବିଆର ମନେ ହେଲା, ଏଇଠି ବା ଜାନା ଥାଇପାରେ । ଗ୍ଭରିଆଡ଼ି; ସେ ଖୋଜିବ କେମିତି ? ବାଟ କଡ଼ରେ ଗୋଟାଏ ବରଗଛ । ତା'ମୂଳରେ ଦଶବାର ଜଣ କାଙ୍ଗାଳ ଶୋଇଥିଲେ । ସେ ତାରି ପିଲାଟିକୁ ଧରି ସେଇ ଗଛମୂଳେ ବସିଲା ।

ସକାଳ ହେଲା । ଦିନର ଆଲୁଅ ପଡ଼ିଲା । ସାବଅ ଏଣୁ ବାଙ୍ଗାଳମାନଙ୍କ ଆଡ଼କୁ ଗୃହିଁ ଗୃହିଁ ଗ୍ଲଲା ହଜାର ହଜାର ବାଙ୍ଗାଳ; ଏମାନଙ୍କ ଭିତରେ ସେ ପାଉଛି କେମିତି ଯାନାକୁ ?

'ଏ ସାବଅ, ଏ'—ପଛଅଡ଼ୁ କିଏ ଡାକିଲା । ସାବଅ ଗୃହିଁ ଦେଖେ, ଗୋଟିଏ ବୁଢ଼ୀ । ଦୂରରୁ ତାକୁ ସେ ଚିହ୍ନି ପାରିଲା ନାହିଁ । ପାଖକୁ ଗଲା ।

ବୁଢ଼ୀ ତା ଅଡ଼କୁ ଗୃହିଁ କହିଲା, 'ତୁ ସାବଅ ନା ? ହୁଁ ହୁଁ— ମୁଁ ସାବି ।'

ସାବଅ ଚିହ୍ନିପାରିଲା, ଏ ତାର ବାପଘର ଗାଁ ର ମାଳୀଘର ବୁଢ଼ୀ ସାବି । ସାବଅ ତା ଅଡ଼କୁ ଗୃହିଁ ରହିଲା ।

ବୁଢ଼ୀ କହିଲା, 'ତୁ କେବେ ଅସିଲୁ ? ଯାନବନ୍ଧୁ କାହିଁ ?

ସାବଅ କିଛି କହିପାରିଲା ନାହିଁ, ତା ଆଖିରୁ ଲୁହ ବାହାରିବା ପରି ମନେ ହେଲା; କିନ୍ତୁ ବାହାରିଲା ନାହିଁ । ସେ ଧୀରେ ଧୀରେ କହିଲା, 'ମୁଁ ତାକୁ ଖୋଜିବାକୁ ଅସିଛି !'

ବୁଢ଼ୀ କହିଲା, 'କୁଆଡ଼େ ଗ୍ଲଲଯାଇଛି ? ପେଟ ଜ୍ୱାଳାରେ ଯେ ଯେଉଁ ଆଡ଼େ ପଳାଉଛନ୍ତି, ସେ ପଳାଇଲା । ହେଲେ, ତମ ଦୁହିଁକୁ ସାଙ୍ଗରେ ନେଇଥିଲେ ଭଲ ହୋଇଥାନ୍ତା । ହଉ ରହ, ସାଙ୍ଗହୋଇ ସହର ଭିତରକୁ ଯିବା ।'

ସାବଅ ବୁଢ଼ୀର ଅଶ୍ରୟ ପାଇ ସେଇଠାରେ ବସିଲା । ଦିନ ବଢ଼ିଲା, ବୁଢ଼ୀ ଓ ସାବଅ ସହର ଭିତରକୁ ଗ୍ଲଲେ ।

———

## ଅଠର

ଟେଲିଫୋନ ରସିଭର ବାଆଁ ହାତରେ ଧରି 'ଯୁଗବାଣୀ'ର ସମ୍ପାଦକ ଶ୍ରୀଯୁକ୍ତ ନୀଳମଣି ମିଶ୍ର କହିଲେ, 'ହାଲୋ, ଯୁଗବାଣୀ ଅଫିସରୁ କହୁଛୁ । ଆମ ଫାଟକ ପାଖରେ ଗୋଟାଏ ଲୋକ ଖାଇବାକୁ ନ ପାଇ ପଡ଼ି ମରିଯାଇଛି ।'

ସାମନାରେ ଫୁଲାଏ ଟାଇପ୍ ହୋଇଥିବା ରୟଟର୍ ଟେଲିଗ୍ରାମ । ମାଡ୍ରାଗାସ୍କାର ଆକ୍ରମଣ, ନର୍ଥ କେପ୍‌ରେ ଜଳଯୁଦ୍ଧ, ବେଙ୍ଗାଜୀରେ ବାରୁଦ୍ଧ ପୂର୍ଣ୍ଣ ପଚ୍ଛଦୁଆ, ଲେନିନ୍‌ଗ୍ରେଡ଼ର ଭୀଷଣ ସଂଘର୍ଷ, ସଲୋମନ ଦ୍ୱୀପପୁଞ୍ଜରେ ବୋମାବୃଷ୍ଟି, ଆଟଲାଣ୍ଟିକରେ ବୁଡ଼ାଜାହାଜ ଯୁଦ୍ଧ, ସଭାପତି ରୁଜ୍‌ଭେଲ୍‌ଟ୍‌ଙ୍କର ଓଜସ୍ୱିନୀ ବକ୍ତୃତାର ଓଜପୂର୍ଣ୍ଣ ସାରାଂଶ ଆଦି ନାନା ଗୁରୁତ୍ୱପୂର୍ଣ୍ଣ ସମ୍ବାଦରେ ଏଗୁଡ଼ିକ ପୂର୍ଣ୍ଣ । ସଂପାଦକ ବର୍ଗଙ୍କର ମସ୍ତିଷ୍କ ଭିତରେ ସାରା ପୃଥିବୀର ମାନଚିତ୍ର ଉପରେ ନାନାରକମର ଅଭିନୟ ଚିତ୍ରିତ କରାଇ ଏଗୁଡ଼ିକ ତାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଛି । ସମ୍ବାଦ ପତ୍ର ସ୍ତମ୍ଭରେ ଏଗୁଡ଼ିକ ଯେ କିପରି ଭାବରେ, କିଏ କେଉଁ ମହିମାରେ, ରୂପ ଗ୍ରହଣ କରିବେ ତାହାର ବର୍ଗର ସମ୍ପାଦକ ପକ୍ଷରେ ବିରାଟ ଉଦ୍‌ବେଗଜନକ ଉତ୍ତେଜନାମୟ ଭାବନା । ଏଗୁଡ଼ିକ ପ୍ରକାଶ କରିବାରେ ତା ପକ୍ଷରେ ବିଶେଷ କୌଣସି ବାଧା ନାହିଁ; ରୟଟର୍ ସମ୍ବାଦ; ସେଥିରେ କି ଆପତ୍ତି ଥାଇପାରେ ? କିନ୍ତୁ ଫାଟକ ପାଖର କଥା; ବର୍ଗର ସମ୍ପାଦକ ନିଜେ ଅଫିସକୁ ଆସିବା ସମୟରେ ନରକଙ୍କାଳଟାର ଶବ ପଡ଼ିଥିବାର ଦେଖି ଆସିଛି; ଫଟୋଗ୍ରାଫରକୁ ଡକାଇ ତାର ଫଟୋ ନେବା ପାଇଁ ମଧ୍ୟ ବ୍ୟବସ୍ଥା

କରନ୍ତୁ । ସମ୍ବାଦପତ୍ର ଅଫିସ ସାମନାରେ ଏ ଘଟଣା । ଓଡ଼ିଶା ଦୁର୍ଭିକ୍ଷର ପ୍ରତିନିଧି ରୂପେ ସମ୍ପାଦକଙ୍କୁ ବ୍ୟଙ୍ଗ କରି ଯେପରି ଏ ଲୋକଟି ଏଠାରେ ମରନ୍ତୁ । ନୀଳମଣି ବାବୁ ମନେକଲେ, ଏ ସମ୍ବାଦ ପ୍ରକାଶ ନ କଲେ ତାଙ୍କର ମାନସମ୍ମାନ ରହିବ ନାହିଁ ।

ମାନସମ୍ମାନ ? କି ମାନସମ୍ମାନ ତାଙ୍କର ଅଛି ? ସରକାର ଘରର ଗୋଟାଏ ବେସରକାରୀ କର୍ମୀ ରୂପେ ସରକାରଙ୍କ ହୁକୁମ ତାମିଲ କରିବାହିଁ ଯେତେବେଳେ ସମ୍ବାଦପତ୍ର ସମ୍ପାଦକର କାମ, ସେତେବେଳେ କି ମାନସମ୍ମାନ ତାଙ୍କର ଥାଇପାରେ ? ଓଡ଼ିଶାରେ ଦୁର୍ଭିକ୍ଷ—ଭୀଷଣ ଦୁର୍ଭିକ୍ଷ । ପ୍ରତିଦିନ ଶହ ଶହ ଲୋକ ମରିବା ସମ୍ବାଦ ତାଙ୍କ ପାଖରେ ଆସି ପହଁଚୁଛି; କରୁଣ ଯନ୍ତ୍ରଣାର ଭୟାବହ ବର୍ଣ୍ଣନା ଥାଇ ଅସଂଖ୍ୟ ପତ୍ର ତାଙ୍କ ପାଖକୁ ଆସୁଛି । ସରକାର ହୁକୁମ ଜାରି କରିଛନ୍ତି, ଏ ବିଷୟରେ ସରକାରୀ ସ୍ୱୀକୃତ ଛଡ଼ା ଅନ୍ୟ କୌଣସି ସମ୍ବାଦ କୌଣସି ସମ୍ବାଦପତ୍ରରେ ଛାପା ହୋଇପାରିବ ନାହିଁ । ଏ ପର୍ଯ୍ୟନ୍ତ ହଜାର ହଜାର ଲୋକ ଦୁର୍ଭିକ୍ଷରେ ମରିଛନ୍ତି; ସେ ସମ୍ବାଦ ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ସ୍ଥାନ ପାଇ ନାହିଁ । ଅଥଚ ସରକାରୀ କର୍ତ୍ତାମାନେ ପ୍ରଚାର କରି ବୁଲୁଛନ୍ତି ଯେ, ଓଡ଼ିଶା ଧାନଚାଉଳରେ ପୂର୍ଣ୍ଣ ହୋଇ ରହିଛି, ଲୋକେ ସୁଖରେ, ଆନନ୍ଦରେ ଅଛନ୍ତି, ଓଡ଼ିଶାରେ ଏତେ ଧାନ ଚାଉଳ ବଳି ପଡ଼ୁଛି ଯେ, ସେଥିରୁ ଲକ୍ଷ ଲକ୍ଷ ମହଣ ବାହାରକୁ ପଠାଯାଇ ପାରିବ । ଏକଆଡ଼େ ଦେଶରେ ଦୁର୍ଭିକ୍ଷର ମହାମାରୀ, ଅନ୍ୟଆଡ଼େ ସରକାରଙ୍କ ବିପରୀତ ଉକ୍ତି; ଏହାଫଳରେ ସମ୍ପାଦକ ଚିତ୍ତର ଅନ୍ତରସ୍ଥା ସ୍ପଷ୍ଟ ହୋଇ ଯାଉଛି; କିନ୍ତୁ ତାର ଗତି କଅଣ ? ଦେଶର ଲୋକେ ଏସବୁ ସମ୍ବାଦ ପଢ଼ନ୍ତି, ଆଉ ବିସ୍ମୟ ବିସ୍ଫାରିତ

ନେହରେ ଗୃହଅଙ୍ଗକୁ ଗୃହାନ୍ତ; ଭାବନ୍ତ, ସରକାର ଅଷ୍ଟାଙ୍ଗହୀନ ଗଳ୍ପ ସୃଷ୍ଟି କରିବାର ନୂତନ ଦାୟିତ୍ୱ ନିଜ ଉପରକୁ ନେଇଛନ୍ତି । ଭାବନ୍ତ, ମିଛ କହିବାଟା ବୋଧହୁଏ ଏ ଦେଶ ସରକାରର ଏକଚାଟିଆ ଅଧିକାର ।

ନୀଳମଣି ବାବୁ ଟେଲିଫୋନରେ ତାଙ୍କ ତାଙ୍କ ଅଫିସ ଫାଟକ ଆଗରେ ମରିଥିବା ଲୋକଟିର ଖବର ପ୍ରକାଶିତ କରିବା ପାଇଁ ସରକାରଙ୍କ ଅନୁମତି ପ୍ରାର୍ଥନା କଲେ ।

ସତକୁ ମିଛ, ମିଛକୁ ସତ କରି ସମ୍ପାଦକଙ୍କୁ ଯୋଗାଇବାର ଅଦ୍ୱିତୀୟ କ୍ଷମତା ଯେଉଁ ହାକିମଙ୍କଠାରେ ନିହିତ, ସେ ହୁକୁମ ଦେଲେ ଏପରି ସମ୍ବାଦ ପ୍ରକାଶ କରିବା ଠିକ୍ ହେବ ନାହିଁ ।

ନୀଳମଣି ବାବୁ ଆପତ୍ତି କରି କହିଲେ, ଲୋକଟା ଆମର ଫାଟକ ସାମନାରେ ମରିଛି ।'

ଟେଲିଫୋନ ଆର ପାଖରୁ ହାକିମ କହିଲେ, 'ଠିକ୍; କିନ୍ତୁ ସେ ଖାଇବାକୁ ନ ପାଇ ମରିଛି କି ଦୁର୍ବଳତାରୁ ହାର୍ଟଫେଲ୍ କରି ମରିଛି, ଆପଣ କହି ପାରିବେ କି ?'

ନୀଳମଣି ବାବୁ ଜୋର ଦେଇ କହିଲେ, 'ମୁଁ ନିଜେ ଦେଖିଛି ଲୋକଟାର ପେଟ ପିଠିରେ ଲାଗି ଯାଇଛି । ଖାଇବାକୁ ନ ପାଇ ମରିଛି ।'

ହାକିମ କହିଲେ, 'ଠିକ୍, ତାହା ଆପଣଙ୍କର ମତ; କିନ୍ତୁ ଆପଣ ତ ଡାକ୍ତର ନୁହନ୍ତି । ପୁଣି ପୋଷ୍ଟମର୍ଟମ୍ ଦ୍ୱାରା ସେ କାହିଁରେ ମରିଛି ତାହା ଠିକ୍ ହୋଇନାହିଁ । ମୁଁ ଅନୁମାନ କରୁଛି, ଖାଦ୍ୟାଭାବରୁ ସେ ମରି ନାହିଁ; ରକ୍ତାଭାବରୁ ତାର ହୃଦଯନ୍ତ୍ର କିମ୍ବା ବନ୍ଦ ହୋଇ ସେ ମରିଛି ବୋଲି ସରକାରୀ ମତ ହୋଇ ପାରିବା ସମ୍ଭବ । ତେଣୁ ଆପଣ ଏ ସମ୍ବାଦ ପ୍ରକାଶ ନ କଲେ ଭଲ ହେବ ।'

ନୀଳମଣି ବାବୁ ବିରକ୍ତ ହୋଇ ଟେଲିଫୋନ ରସିଭରକୁ ଥୋଇ ଦେଲେ । ତାଙ୍କର ଫାଟକ ପାଖରେ ଖାଇବାକୁ ନ ପାଇ ଗୋଟାଏ ଲୋକ ମରୁଛି, ସେ ନିଜେ ଅକ୍ଷିରେ ତାକୁ ଦେଖିଛନ୍ତି, ତଥାପି ତାକୁ ସେ ପ୍ରକାଶିତ କରି ପାରିବେ ନାହିଁ; ଅଥଚ ମାଡ଼ାଗାସ୍କାର, କଳାହାରି ମରୁଭୂମି, ଭୂମଧ୍ୟ ସାଗରରେ ଥିବା କ୍ଷୁଦ୍ର ଓ ଅନାମଧେୟ ଦ୍ୱୀପ ବିଷୟରେ ବିସ୍ତୃତ ବର୍ଣ୍ଣନା ପ୍ରକାଶ କରିବାକୁ ପଡିବ । ବନ୍ଧୁକନାଳ ବୋହିଁକୁ ମୁଣ୍ଡରେ ଧରି ସମ୍ବାଦପତ୍ରର ସମ୍ପାଦକ ହେବାଠାରୁ ଦୁର୍ଭାଗ୍ୟ ବୋଧହୁଏ ଦୁନିଆରେ ନ ଥିବ ବୋଲି ସେ ଭାବିଲେ; ବିରକ୍ତ ହୋଇ ଟେବୁଲ ଉପରେ ଥିବା ସମୁଦାୟ ଟେଲିଗ୍ରାମଗୁଡ଼ାକୁ ତଳକୁ ଫିଙ୍ଗିଦେଲେ ।

ନୀଳମଣି ବାବୁ ଜାଣନ୍ତି, ସ୍ୱାଧୀନତା—ମତ ପ୍ରକାଶର ସ୍ୱାଧୀନତା, ସମ୍ବାଦପ୍ରକାଶର ସ୍ୱାଧୀନତା—ବିନା ସମ୍ବାଦପତ୍ରର ଅସ୍ତିତ୍ୱ ବିରାଟ ପ୍ରହେଳିକାରେ ପରିଣତ ହୋଇଥାଏ; କିନ୍ତୁ ଏହି ସ୍ୱାଧୀନତାକୁ ସମୂଳେ ବାଡ଼ି ନେବାପାଇଁ ଯେତେ ପ୍ରକାର ସମ୍ଭବ ଆଇନ ଓ ନିୟମ ଗଢ଼ା ଯାଉଛି । ଫଳ ଏହାହିଁ ହୋଇଛି ଯେ, ଓଡ଼ିଶାରେ ଯେତୋଟି ଖବର କାଗଜ ଅଛି, ତାହା କାର୍ଯ୍ୟତଃ ସରକାରଙ୍କ ପ୍ରଚାରପତ୍ରରେ ପରିଣତ ହୋଇଛି । ନୀଳମଣି ବାବୁ ନିଜେ ଏ ଅବସ୍ଥା ବିରୁଦ୍ଧରେ ମୁଣ୍ଡଟେକି ଉଠିବାପାଇଁ ବରାବର ଚେଷ୍ଟା କରୁଛନ୍ତି; କିନ୍ତୁ ସରକାରୀ ବନ୍ଧନ ଏତେ ଦୃଢ଼ ଯେ, ତା ବିପକ୍ଷରେ ଛିଡ଼ାହେବା ପ୍ରତି କଥାରେ, ପ୍ରତି କାର୍ଯ୍ୟରେ ଅସମ୍ଭବ । ଓଡ଼ିଶାରେ ଏ ଭୀଷଣ ଦୁର୍ଭିକ୍ଷ; ଏ ବିଷୟରେ ଠିକ୍ ଖବର ପ୍ରକାଶ ପାଇଲେ ଲୋକେ ଦୁର୍ଭିକ୍ଷର ଉତ୍କଟତା ବିଷୟରେ ସାବଧାନ ହୋଇ ପାରନ୍ତେ, ସରକାର ଦୁର୍ଭିକ୍ଷ ବିଷୟରେ

ଜନସାଧାରଣଙ୍କ ମତାମତ ଜାଣି ପାରନ୍ତେ, ଓଡ଼ିଶା ପ୍ରଦେଶ ବାହାରେ ଥିବା ଦୁନିଆରେ ଏ ସବୁ ଖବର ଜଣା ପଡ଼ନ୍ତେ ବାହାରର ଲୋକେ ଦୁର୍ଭିକ୍ଷପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତେ । କିନ୍ତୁ ନା, ତାହା ହେବ ନାହିଁ । ଖାଦ୍ୟବିନା ନିତି ନିତି ଶହ ଶହ ଲୋକ ମରୁଛନ୍ତି । ସେ ସମ୍ବାଦ ମଧ୍ୟ ପ୍ରକାଶ କରାଯିବ ନାହିଁ । ଫଳରେ ପ୍ରଦେଶର ଲୋକ ସେମାନଙ୍କ ଉପରେ ପଡ଼ିଥିବା ବିପଦ ବିଷୟରେ ଧାରଣା କରି ପାରିଲେ ନାହିଁ; ତାହାର ପ୍ରତିକାର ପାଇଁ ନିଜେ କିଛି ସଂଘବଦ୍ଧ ଉଦ୍ୟମ କରି ପାରିଲେ ନାହିଁ; ପ୍ରଦେଶ ବାହାରେ ଥିବା ଲୋକେ ଓଡ଼ିଶାର ପ୍ରକୃତ ଘଟଣା ଜାଣି ପାରିଲେ ନାହିଁ, ସେମାନଙ୍କ ସାହାଯ୍ୟରୁ ଦୁର୍ଭିକ୍ଷଗ୍ରସ୍ତ ଲୋକେ ବଞ୍ଚିତ ହେଲେ । ତା ଉପରେ ସରକାର ବରବର ପ୍ରଚାର କରିଦେଲେ—ଅଭ ସେ ସବୁ ଛଗୃରକୁ ସମ୍ବାଦ ପତ୍ରରେ ପ୍ରକାଶିତ କରିବା ପାଇଁ ସମ୍ପାଦକମାନଙ୍କୁ ବାଧ୍ୟ କଲେ ଯେ, ଓଡ଼ିଶା ପ୍ରଦେଶରେ ଧାନଚାଉଳ ପ୍ରଚୁର ହେଉଛି । ଲୋକେ ଖାଇପିଇ ଆନନ୍ଦରେ ଅଛନ୍ତି, ଅଭାବ ଅନାଟନ ଏ ଏ ପ୍ରଦେଶକୁ ଛୁଇଁ ନାହିଁ—ଓଡ଼ିଶା ପ୍ରଦେଶରେ ଏତେ ଧାନ ଚାଉଳ ବଳକା ପଡ଼ୁଛି ଯେ, ଲକ୍ଷ ଲକ୍ଷ ମହଣ ଧାନ ବାହାରକୁ ପଠାଇଦେଲେ ମଧ୍ୟ ଓଡ଼ିଶା ଲୋକେ ଭାତ ଖାଇ ଭାତ ପାରି ଶୋଇଲେ ମଧ୍ୟ ବର୍ଷ ଶେଷକୁ ଅନ୍ତତଃ କେତେ ଲକ୍ଷ ମହଣ ବଳକା ରହିଯିବ । ଫଳ ଏହା ହେଲା ଯେ, ଲୋକେ ମୁଠାଏ ମୁଠାଏ ଚାଉଳ ପାଇଁ ଯୋକମାଛି ପରି ମଲେ; ଅଥଚ ବାହାରକୁ ପ୍ରତିଦିନ ହଜାର ହଜାର ମହଣ ଚାଉଳ ଚାଲିଲା । ଯେଉଁମାନଙ୍କର ଟିକିଏ ବୁଦ୍ଧି ଥିଲା, ଟିକିଏ ବିବେକ ଥିଲା, ଟିକିଏ ମନୁଷ୍ୟତା ଥିଲା, ଏ ବିଷୟରେ ସେମାନେ ଉତ୍ୟକ୍ତ ହୋଇ ଉଠିଲେ; କିନ୍ତୁ କହିବାର

ଉପାୟ ନାହିଁ। କହୁଲେ ମଧ୍ୟ କେହି ଶୁଣିବ ନାହିଁ। ଅନାହାରରେ ସତ୍ୟ କଥା କୌଣସି ବନେ ପଦାକୁ ଫିଟି ପଡ଼ିଲେ ସରକାରୀ ଗାଲି ଲୁଚୁଡ଼ାହାର ତାକୁ ଦବାଇଦେବାର ଧାରାବାହିକ ଉଦ୍ୟମ ଚଳାଇଲେ। ଏ ସବୁ ମିଶି ଓଡ଼ିଶାରେ ଗୋଟାଏ କ୍ଷୟିଷ୍ଣୁତାର ମାରାତ୍ମକ ଅଭିନୟ ଚାଲିଲା।

ନୀଳମଣି ବାବୁ ଟେବୁଲ ଉପରେ କହୁଣି ଭରଦେଇ ଏସବୁ କଥା ଭାବି ଭାବି ବିରକ୍ତ ହୋଇ ପଡ଼ିଲେ। ତାହାଙ୍କୁ ଚପରାସୀ ଆସି କହିଲା, 'ଶରତବାବୁ ଆସିଛନ୍ତି।'

ତାହାର ସହିତ କଥା କହିବା ଅବସ୍ଥାରେ ନୀଳମଣି ବାବୁଙ୍କ ମନ ନ ଥିଲା; ଅନ୍ୟ କୌଣସି ଲୋକ ହୋଇଥିଲେ ଦେଖାହୋଇ ପାରିବନାହିଁ ବୋଲି ସେ ମନାକରି ଦେଇ ଥାନ୍ତେ; କିନ୍ତୁ ଶରତ୍‌କୁ ନୀଳମଣି ବାବୁ ସମ୍ମାନ ଦୃଷ୍ଟିରେ ଦେଖନ୍ତି। ତାଙ୍କ ସହୃଦୟତା ସ୍ୱାର୍ଥ-ହୀନତା ଯୋଗୁଁ ଚପରାସୀକୁ କହିଲେ, 'ଡାକି ଦେ।'

ଶରତ୍ ଅଫିସ ଭିତରକୁ ପଶି ଖଣ୍ଡେ ଚୌକିରେ ବସିପଡ଼ି କହିଲା, ବାଙ୍କା ବଜାର ଗଳିରେ ଗୋଟାଏ ଲୋକ କାଲି ରାତିରେ ଖାଇବାକୁ ନ ପାଇ ମରିଯାଇଛି। ଆଜି ସକାଳେ ମ୍ୟୁନିସପାଲିଟି ହାଡ଼ଗାଡ଼ି ତାକୁ ଉଠାଇ ନେଇଗଲା। ଲୋକଟାର ଫଟୋ ନିଆଯାଇଛି। କଟକ ସହର ଗଳି କନ୍ଦରେ ଲୋକ ମରିବା ଆରମ୍ଭ ହେଲା। ଉପାୟ କଅଣ? ଏ ଖବର ଟିକିଏ କାଗଜରେ ଛପାଣ କରି ଦିଅନ୍ତୁ, ସରକାରଙ୍କ ଆସନ ଏବେ ମଧ୍ୟ ଟଳୁ।

ନୀଳମଣି ବାବୁ ହସି ପକାଇ କହିଲେ, ' ଆମର ଫାଟକ ସାମନାରେ ସେଦିନ ଜଣେ ଲୋକ ମରି ପଡ଼ିଥିଲା। ସେ ଖବର ଛପାଇବା ପାଇଁ ସରକାରୀ ହାକିମଙ୍କ ଅନୁମତି ଲୋଡ଼ିଥିଲି। କଅଣ କହିଲେ ସେ ଜାଣନ୍ତି, ଶରତ ବାବୁ ? କହିଲେ, ଲୋକଟା

ଖାଇବାକୁ ନ ପାଇ ମରୁଛି କି ତାର ହୃଦଯନ୍ତ୍ରର କ୍ରୀୟା ବନ୍ଦହୋଇ ଯିବାରୁ ସେ ମରୁଛି ଏ କଥା କାଧାରଣ ଭାବରେ କହି ହେବନାହିଁ । ଅର୍ଥାତ୍ ଲୋକଟାକୁ ପରପାରରୁ ଡାକିଆଣି ତା ଠାରୁ ସଠିକ ଖବରଟା ବୁଝି ତା ପରେ ହାକିମ ପ୍ରବରଙ୍କ ଗୋଚରକୁ ସେ ତଥ୍ୟ ଆଣି ତା ଉପରେ ତାଙ୍କ ହୁକୁମ ଗ୍ରହଣ କରି ପାରିଲେ ବା ସେ କଥା ପ୍ରକାଶିତ କରାଯାଇ ପାରିବ । ପ୍ରଶ୍ନ ହେଉଛି, ବର୍ତ୍ତମାନ ଏହି ମୂହୂର୍ତ୍ତରେ ପରପାରକୁ ଯାଇ ଫେରିବାର ଶକ୍ତି ସରକାରୀ କର୍ତ୍ତାମାନଙ୍କର ବା ଥାଇପାରେ; କିନ୍ତୁ ମୋର ତ ନାହିଁ । ତା ପରେ ସରକାରୀ କର୍ତ୍ତାମାନଙ୍କ ସଦୟ ଅନୁଗ୍ରହ ଫଳରେ ପ୍ରତି ଦିନର ପ୍ରତି ମୂହୂର୍ତ୍ତରେ ଏତେ ବେଶି ସଂଖ୍ୟାରେ ଏ ଦେଶ ଲୋକଙ୍କ ଆତ୍ମା ପରପାରକୁ ଯାଉଛି ଯେ; ସେଠାରେ ଭୀଷଣ ଗହଳି ଲାଗିଥିବ ବୋଲି ଅନୁମାନ କରିବା କଷ୍ଟକର ହେବ ନାହିଁ । ସେ ଗହଳି ଭିତରେ ଅଳ୍ପ ସକାଳେ ଆମ ଫାଟକ ଆଗରେ ମରି ପଡ଼ିଥିବା ଲୋକଟିର ଆତ୍ମାକୁ ଖୋଜି ପାଇବା କଷ୍ଟକର । ତେଣୁ ଯେଉଁ ଲୋକଟି ବାଙ୍କା ବଜାରରେ ମରି ପଡ଼ିଥିବା କଥା ପ୍ରକାଶ କରିବା ପାଇଁ ଆପଣ କହୁଛନ୍ତି, ହାକିମଙ୍କ ହୁକୁମ ଅନୁଯାୟୀରେ ଆପଣ ପ୍ରଥମେ ଠିକ କରନ୍ତୁ ଯେ, ସେ ଲୋକଟି ପେଟ ମରାରେ ମରୁଛି କି ଖାଇବାକୁ ନ ପାଇ ମରୁଛି ?

ଶରତ ସ୍ତମ୍ଭୀଭୂତ ହୋଇ ବସି ରହିଲା ।

ନୀଳମଣି ବାବୁ କହିଲେ, ' ଭାଠ ପାଲଟି ଗଲେ କି ଶରତ ବାବୁ ? ଏ ଓଡ଼ିଶା ପ୍ରଦେଶ, ଏଠିକା ସରକାର ଓଡ଼ିଶୀ ସରକାର, ଓଡ଼ିଶୀ ରାଗିଣୀ ପରି ଏ ସରକାରଙ୍କ ଗତି ବକ୍ର' ।

ଟେଲିଫୋନ ବାଜି ଉଠିଲା । ନୀଳମଣିବାବୁ ରିସିଭରଟିକୁ କାନରେ ଦେଇ କହିଲେ, 'ହଁ, ରାଣୀହାଟ ଛକରେ ମରି ପଡ଼ିଛି- ହଁ, ବୁଝିଲି, ସରକାରୀ ହୁକୁମ, ପ୍ରକାଶିତ କରାଯାଇ ପାରିବନାହିଁ ।

'ହଉ, ନମସ୍କାର; ଶରତ ଅଡ଼କୁ ଫେରି କହିଲେ, ' ସଣୀହାଟ ଛକ ପାଖରେ ଆଜି ଗୋଟାଏ ବାଙ୍ଗାଳି ମରିଛି ! ତାର ବୋଧହୁଏ ମୃତ୍ୟୁବ୍ୟଥା ହୋଇଥିଲା ।'

ଶରତର ମୁଖମଣ୍ଡଳ ସେତେବେଳେ ଅଷାଢ଼ ଆକାଶ ପରି ଗମ୍ଭୀରହୋଇ ଯାଇଥିଲା । ସେ କହିଲା, 'ନୀଳମଣି ବାବୁ, ଏବେ ବ୍ରିଟ ସରକାରୀ ବଇଷ୍ଠକଟାକୁ ଆପଣ ହସି ଉଡ଼ାଇ ଦେବାକୁ ଗୃହୁଁଛନ୍ତି; କିନ୍ତୁ ଏ କଥା ଶୁଣି ଆମମାନଙ୍କର ଗ୍ଲାନ ଭିତରଟା ଗଗରେ ଜଳିଯାଉଛି ! ଗୁଡ଼ାଏ ଅଯୋଗ୍ୟ ନରରାକ୍ଷସ ।

ପୁଣି ଟେଲିଫୋନ୍ ବାଜିଉଠିଲା । ନୀଳମଣି ବାବୁ ହସିଉଠି ଧରି କହିଲେ 'ଓଃ ଦାସ···ନମସ୍କାର ··ସଞ୍ଜବେଳେ ଚର୍ଚ୍ଚିଲଙ୍କ ବକ୍ତୃତା, ଆସିବ ?···ହଉ, ନମସ୍କାର ।'

ତାପରେ ଶରତ୍ ଅଡ଼କୁ ଫେରି କହିଲେ 'ଆପଣ ବଙ୍ଗାଳି ବ୍ରିଟିଶ ସାମ୍ରାଜ୍ୟର ବାସିନ୍ଦା ଚର୍ଚ୍ଚିଲଙ୍କ ପରି ମହାପୁରୁଷଙ୍କ ବକ୍ତୃତା ଆଜି ରାତିରେ ଶୁଣିବେ; ପ୍ରସ୍ତୁତ ହୁଅନ୍ତୁ । ଭୁଲିଯାଅନ୍ତୁ ବଙ୍ଗଳାର ଦୁର୍ଭିକ୍ଷ; ଭୁଲିଯାଅନ୍ତୁ ବାଙ୍ଗାଳିଜାତିର ଅନାହାରରେ ମରିଥିବା ଲୋକଙ୍କୁ । ଭୁଲିଯାଅନ୍ତୁ, ଶୋକ ଶୋଷ, ଅଭାବ ଅନଟନ । ଚର୍ଚ୍ଚିଲଙ୍କ ବକ୍ତୃତା ଆଜି ଶୁଣିବେ । ଆଉ ତାଙ୍କର ଦୁଃଖ, ତାଙ୍କର ଯନ୍ତ୍ରଣା ?

ଶରତ ଧୀରେ ଧୀରେ ଚଉକିରୁ ଉଠି ବାହାରିଗଲା ।



## ଉତ୍ତରଣ

ଜିଲ୍ଲର ବଡ଼ଭାଇ ବୀରେଶ୍ୱର ଡେପ୍ୟୁଟି ମାଜିଷ୍ଟ୍ରେଟ । ଗଞ୍ଜାମ ଜିଲ୍ଲାର ସଦର କଚେରୀକୁ ସେ ଦୁଇବର୍ଷ ହେଲା ବଦଳିହୋଇ ଯାଇଛନ୍ତି । ଏକା ଦେଶରେ ବର୍ଷେକାଳ ସରକାରୀ ଘଣ୍ଟା ଠେଲି ସେ ମାସକ ଛୁଟିରେ ଆସିଛନ୍ତି ।

ଶରତ୍ ବୀରେଶ୍ୱରଙ୍କ ଅନ୍ତରଙ୍ଗ ବନ୍ଧୁ । ସ୍କୁଲର ଖେଳ-ପଡ଼ିଆ ଠାରୁ କଲେଜ ଜୀବନର ତର୍କ ସଭା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଏ ଦୁହେଁ ଏକତ୍ର ୭।୮ ବର୍ଷ କଟାଇଥିଲେ । ଉଭୟଙ୍କ ମନ ଭିତରେ ଉଭୟଙ୍କ ପ୍ରତି ଉଭୟେ ଗୋଟାଏ ଲେଖା ବିଶିଷ୍ଟ ସ୍ଥାନ ଅଧିକାର କରି ନେଇଥିଲେ । ଏମାନଙ୍କ ବନ୍ଧୁତା, ମଉଜ ମଜଲିସ, ଆରାମ ବିଳାସର ଭିତ୍ତି ଉପରେ ପ୍ରତିଷ୍ଠିତ ନ ଥିଲା; ଥିଲା ଉଚ୍ଚତର ପ୍ରବୃତ୍ତି ଉପରେ । କେ ଜାଣେ କାହିଁକି ଦେଶଟା ସେମାନଙ୍କ ପକ୍ଷରେ ଗୋଟାଏ ସାକ୍ଷାତ ସତ୍ୟ, ଜୀବନ୍ତ ଜାଗ୍ରତ ଦେବୀରୂପେ ଦେଖା ଦେଇଥିଲା ସ୍କୁଲରେ ପାଠପଢ଼ିବା ସମୟରୁ । ଏହି ଦେଶଟା ଉପରେ ଦୃଷ୍ଟି ରଖି ସେମାନେ ନିଜର ଜୀବନ ଗଢ଼ିଥିଲେ । ତେଣୁ ଏ ଦେଶର ଉପଯୁକ୍ତ ସେବକ ହେବାର ଆଦର୍ଶ ସେମାନଙ୍କ ଜୀବନକୁ ମୂଳରୁ ପ୍ରଭାବିତ କରିଥିଲା ।

ପଢ଼ାପଢ଼ି ପରେ ଯେତେବେଳେ ଦୁହେଁ କର୍ମ ଜୀବନ ଭିତରକୁ ପଶିଲେ, ସେତେବେଳେ ଦୁହିଁଙ୍କ ପଥ ଅଲଗା ହୋଇଗଲା; କିନ୍ତୁ ମତ ଭିନ୍ନ ହେଲାନାହିଁ । ବୀରେଶ୍ୱର ବାବୁଙ୍କ ପିତାଥିଲେ ବଡ଼ ହାକିମ । ସେ ପୁଅକୁ ଡେପ୍ୟୁଟି ମାଜିଷ୍ଟ୍ରେଟ କାମରେ ନିଯୁକ୍ତ କରିବା-

ଉଦ୍‌ଯୋଗ କଲେ । ଏହା ନେଇ ଦୁଇବନ୍ଧୁଙ୍କ ମଧ୍ୟରେ ଭୂମୁଳ ଆଲୋଚନା ଲାଗିଗଲା । ଗତ ପରେ ଗତ ତର୍କ ଯୁକ୍ତି ଗୁଲିଲା । ଶେଷରେ ଦୁହେଁ ଏକମତ ହେଲେ ଯେ, ଡେପୁଟି ଗୁକରୀ ହେଉ ମେଜେଷ୍ଟ୍ରେଟ ଗୁକରୀ ହେଉ, ଯେ କୌଣସି ସରକାରୀ ଗୁକରୀ ଅର୍ଥ ସମ୍ପୂର୍ଣ୍ଣ ଗୋଲାମୀ । ଅଖଣ୍ଡ ଦାସତ୍ୱ, ଏଥିରେ ବୁଦ୍ଧିର ସ୍ଥାନ ଅଳ୍ପ, ବିବେକର ସ୍ଥାନ ନାହିଁ; ମନୁଷ୍ୟତାର ସମାଧି ଉପରେ ଏହା ପ୍ରତିଷ୍ଠିତ; କିନ୍ତୁ ସେମାନେ ସ୍ଥିର କରି ନେଲେ, ପରସ୍ଥିତରେ ଅନ୍ତ ସେ ଦେଶକୁ ସମ୍ମୁଖରେ ରଖି କାମ କରିବ, ଦେଶର ସ୍ୱାର୍ଥକୁ ନିଜ ସ୍ୱାର୍ଥ ଉପରେ ସ୍ଥାନ ଦେବ ।

ଯାରେଶ୍ୱର ଯେଉଁଦିନ ଡେପୁଟି କାମରେ ନିଯୁକ୍ତ ହେଲା; ସେ ଦିନ ସେ ଶରତକୁ କହିଥିଲା, 'ଦେଖ ଶରତ୍; ଦାସତ୍ୱ ଯେତେବେଳେ କରିବାକୁ ହିଁ ହେବ ସେତେବେଳେ ନିଜକୁ କ୍ରୀତଦାସ ବୋଲି ମାନି ନ ନେବା, କ୍ରୀତଦାସ ବୋଲି ଅସ୍ୱୀକାର କରିବା, ନିଜକୁ କ୍ରୀତଦାସ ଅପେକ୍ଷା ବଡ଼ ମନେ କରିବା ଭଳି କାପୁରୁଷତା ମୋର ନାହିଁ; କିନ୍ତୁ ତୁ ଏ କଥା ଜାଣିରଖ । ହାତ ଗୋଡ଼ରେ କଡ଼ ବେଡ଼ୀ ଲାଗିଥିଲେ ମଧ୍ୟ ଯେଉଁ କଏଦୀ ମୁକ୍ତିର ସ୍ୱପ୍ନ ଦେଖେ, ମୁକ୍ତି ପାଇଁ ଚେଷ୍ଟା କରେ, ତାର ସେହି ସ୍ୱପ୍ନ ଯେ ସତ୍ୟ ନୁହେଁ, ତାର ସେ ଚେଷ୍ଟା ଯେ ମୂଲ୍ୟହୀନ, ଏପରି ମନେକରିବା ଠିକ୍ ହେବ ନାହିଁ । ବନ୍ଧନର ଆଘାତ ଯାହାକୁ ଯେତେ ବେଶି ଉତ୍ପୀଡ଼ିତ କରେ, ମୁକ୍ତିର ଆଶା ତାର ସେତେ ବେଶି ଅନ୍ତରଙ୍ଗ । ମୁକ୍ତିର ଚେଷ୍ଟା ତା ପକ୍ଷରେ ସେତେ ବେଶି ତୀବ୍ର । ଗୋଲାମୀକୁ ଯେଉଁମାନେ ସମ୍ମାନଜନକ ବୋଲି ମନେ କରନ୍ତି, ତୋର ବନ୍ଧୁ ସ୍ୱଭାବରେ ସେତେ ହୀନ ମୁଁ ହୋଇପାରିବ ନାହିଁ । ମୁଁ କ୍ରୀତଦାସର ଶୃଙ୍ଖଳ ସ୍ୱୀକାର କରିଛି ସତ; କିନ୍ତୁ ସ୍ୱାଧୀନ ଭାରତର ଧାନଭଙ୍ଗ

ସେବକ ହେବାର ଆଶା ହିଁ ମୋର ଜୀବନକୁ ପରିଚାଳିତ କରିବ ।

ତା ପରେ ଅନେକ ଦିନ ଗଡ଼ି ଯାଇଛି; କିନ୍ତୁ ଶରତ ଜାଣେ ଯୋଗେଶ୍ବର କୌଣସି ଦିନ ତାର ଏ ଉଦ୍ଦେଶ୍ୟରୁ ବିଚଳିତ ହୋଇନାହିଁ ।

ଲିଲି ଘରେ ଗୋଟାଏ ଟେବୁଲର ଚାରିଆଡ଼େ ବସିଛନ୍ତି ଯୋଗେଶ୍ବର, ଶରତ୍ ଓ ଲିଲି । କଥାବାର୍ତ୍ତା ଚାଲିଛି ।

ଯୋଗେଶ୍ବର କହିଲା 'ଦେଖ ଶରତ୍ ଏଇଟା ତୋର ଭାରି ଅନ୍ୟାୟ !'

ଶରତ୍ ହସି ହସି କହିଲା 'ନ୍ୟାୟ ବୋଲି ମୁଁ କହୁନାହିଁ । କିନ୍ତୁ ସମୟ ତ ମିଳୁ ନାହିଁ, କରେ କଅଣ ? ଏଇ ଧର, ମୁଠାଏ ଖାଇବାକୁ ହେବ ତ, ତା ପାଇଁ ରୋଷେଇ ବ୍ୟାପାର; ଖଣ୍ଡେ ପିନ୍ଧିବାକୁ ହେବ ତ, ତା ପାଇଁ ଏଇ ଲୁଗା ଧୋଇବା ବ୍ୟାପାର, ଘରେ ରହିବାକୁ ହେବ ତ, ତାପାଇଁ ଘର ସଫା ରଖିବା କର୍ତ୍ତବ୍ୟ । ଏଗୁଡ଼ାକ ସାରିଲେ ପୁଣି ଖାଇବା, ପିନ୍ଧିବା, ରହିବାର ସଂସ୍ଥାନ ନିମିତ୍ତ କାମ କରିବା ଦରକାର । ଏ ତ ଗଲା ଗୋଟାଏ ଅଙ୍ଗ । ଆଉ ଗୋଟାଏ ଅଙ୍ଗର କ୍ଷେତ୍ରଟା ଏତେ ବ୍ୟାପକ ଯେ ତାଙ୍କ ଯେଉଁ ଟିକ ସମୟ ମିଳିଲା ସେତିକ ତାକୁ ନିଅଣ୍ଟ । ଏ ଅବସ୍ଥାରେ କହତ ସମୟ ରହିଲା କେଉଁଠି ଯେ ତୋ ଚୁକଟି ସ୍ଥାନକୁ ଯାଇ ଉପୋଷି ବାବୁଙ୍କ ଅତିଥି ହୋଇ ମଉଜ ମଜଲିସରେ ଦିନ କଟାଇ ଆସିବି ।

ଲିଲି କହିଲା 'ଆପଣ ନିଜେ ରୋଷେଇ କରନ୍ତି ? ନିଜେ ଲୁଗା ଧୁଅନ୍ତି ? ନିଜେ ଘର ଝାଡ଼ନ୍ତି ?

ଶରତ୍ ହସି ହସି କହିଲା, ତା ଛଡ଼ା ଉପାୟ ? ମୁଁ ତ ଆଉ ତୋ ଭଳି ପର ନୁହେଁ ଯେ; ଚାକର ପୂଜାରୀ ରଖି ଚଳି ପାରିବି ?

ୀରେଣ୍ଣବ କହିଲା, ତୋ ପାଖରେ ଗୋଟାଏ ପିଲା ଥିଲା, ସେ କଅଣ କରୁଛି ?'

ଶରତ୍ ହସି ହସି କହିଲା 'ଜାଣିଛୁ ତ ତାର ମା,ଅ ବାପ କେହି ନାହାନ୍ତି । ଫେର ଏ ଦୁନିଆରେ ତ ତା ପାଇଁ ଗୋଟାଏ ମାଅ ବାପ ଦରକାର ? ସେ ପାଠ ପଢ଼ୁଛି, ସ୍କୁଲରେ ନାମ ଲେଖାଇଛି । ତୋ ଭଲ ବାବୁ ହେବାକୁ ଚାହୁଁଛି । ସେ ପାଠ ପଢ଼ିବ ନା ମୋ ଘର ସମ୍ଭାଳିବ ?

ୀରେଣ୍ଣର ହସି ପକାଇଲା ।

ଲିଲି କହିଲା, 'ଅପଣଙ୍କ ଚାକର ଟୋକାଟା ପାଠ ପଢ଼ୁଛି ?

'ହଁ, ପଢ଼ୁଛି, ଖୁବ୍ ଭଲ ପଢ଼ୁଛି; କିନ୍ତୁ ତୁ ଭୁଲ୍‌କର ଭାବ ନାହିଁ ଲିଲି ଯେ, ସେ ମୋର ଚାକର ଟୋକା । ସେ ମୋର ସାନ ଭାଇ, ସେ ମୋର ପୁଅ । ଅନାଥ ପିଲାଟିକୁ ବାଟ କଡ଼ରୁ ସାଉଣ୍ଟି ନେଇଥିଲି ବୋଲି ତାକୁ ଚାକର କରି ରଖିବି, ଏତେ ହୃଦୟ ହୀନ ହୋଇ ପାରିବିନାହିଁ ।

ଲିଲି ଏ ଲୋକଟାର କଥା ଶୁଣି ଅବାକ ହୋଇଗଲା । ଲିଲି ଜାଣେ ସେ ତା ବଡ଼ ଭାଇଙ୍କର ଘନିଷ୍ଠ ବନ୍ଧୁ । ସେ ତାଙ୍କୁ ଅନେକ ଥର ଦୂରରୁ ଦେଖିଛି; କିନ୍ତୁ ଏ ଲୋକଟାର ବେଶ-ପୋଷାକ, ଚାଲିଚଳଣି ଏପରି ଖାପଛଡ଼ା ଯେ ଲିଲି କୌଣସି ଦିନ ତା ସହିତ ବ୍ୟକ୍ତିଗତ ପରିଚୟ କାମନା କରିନାହିଁ । ଏହାର ଆଉ ଗୋଟାଏ କାରଣ ବି ଥିଲା । ଶରତ୍ ବଡ଼ ଲୋକ ନୁହେଁ । ଅନ୍ତତଃ ତାର ବଡ଼ଲୋକୀ ଢଙ୍ଗ କେବେ ଦେଖାପଡ଼ େନାହିଁ । ଲିଲିର ସାଙ୍ଗ ସାଥୀ ସମସ୍ତେ ବଡ଼ଲୋକ । ତାର ବାପ ପେନ୍‌ସନ୍ ପ୍ରାପ୍ତ ବଡ଼ ହାକିମ । ଭାଇ ଡେପୁଟି ମାଜିଷ୍ଟ୍ରେଟ । ଏ ଅବସ୍ଥାରେ ସେ ଶରତ ପରି ଗୋଟାଏ ଖାପଛଡ଼ା ଅଚହ୍ନା ଲୋକ ସହିତ ମିଶିବ

କିପରି ? ମିଶିଲେ ତାର କଲେଜ ସାଙ୍ଗମାନେ ତାକୁ କହନ୍ତେ କିଅଣ ?

ବୀରେଶ୍ୱର କହିଲା, ନା ତୋର ଶରତ ଭାଇ ବିଭତ୍ସ ରାକ୍ଷସ ନୁହେଁ, ନିରୁପମ ଦେବତା ! ସେବାଗ୍ରାମର ଗୋଟାଏ ଶାରଦୀୟ ସ୍ମରଣ ରୂପେ ତା ଘରଟାକୁ ସେ ତିଆରି କରିବାକୁ ଯାଇ ଗାନ୍ଧୀ ବୁଢ଼ାଟାକୁ ଖାତିର ହୋଇଛନ୍ତି କି ନା, ସେଥିପାଇଁ ସେ ଗୋଟାଏ ଅତିମାନବ, ଗୋଟାଏ ଅଜ୍ଞାତ ଅପରିଚିତ ମହାପୁରୁଷ । ଆହା, ଏ ମହାତ୍ମା ବଗିଚାର ବଣର ମାଳତୀ ପରି ବା ସହରର ଗଳିର ଫୁଲ-ପରି ନିଜ ଗନ୍ଧେ ନିଜେ ଫୁଟି ମଉଳି ଯାଉଛନ୍ତି ଲୋ ! ତା ମହିମା କେହି ବୁଝୁ ନାହାନ୍ତି ।

ଶରତ୍ ଗମ୍ଭୀର ଭାବରେ କହିଲା 'ଦେଖ ବୀର; ବୁଢ଼ାଟାକୁ ଆମ କଥା ଭିତରକୁ ଟାଣିଆଣ ନାହିଁ । ବଗୃବକୁ ଅଗାଖାଁ ପ୍ରାସାଦ-ଭିତରେ ଜୀବନ୍ତ ସମାଧି ଦିଆଯାଇଛି । ତା କଥା ମନେ ପଡ଼ିଲେ ଦେଶର ଏ ଦୁର୍ଦ୍ଦିନ କଥା ମନେ ପଡ଼ିଯାଏ । ଆଉ ସବୁ ହସ, ସବୁ ଆନନ୍ଦ ଶୁଖିଯାଏ । ଖାଲି ମନେ ହୁଏ, ବୁଢ଼ାଟା ଯଦି ବାହାରେ ଥାଆନ୍ତା ତେବେ ଖାଇବାକୁ ନ ପାଇ ଲୋକେ ହୁଏତ ମରନ୍ତେ; କିନ୍ତୁ ହତାଶ ହୁଅନ୍ତେ ନାହିଁ । ବୁଢ଼ାଟା ଏ ଦେଶର ଆତ୍ମାରେ ବୀର—ବୁଢ଼ାଟା ଏ ଦେଶର ଜୀଅନ୍ତା ଆତ୍ମା ।'

ବୀରେଶ୍ୱର ମଧ୍ୟ ଗମ୍ଭୀର ହୋଇ ପଡ଼ିଲା । ସେ ଘରଟା ଭିତରର ହସ ଓ ହାଲୁକା ବାୟୁମଣ୍ଡଳ ହଠାତ୍ କିପରି ଗାମ୍ଭୀର୍ଯ୍ୟର ଗୁରୁ ଭାରରେ ରୁଦ୍ଧହୋଇ ପଡ଼ିଲା । ବୀରେଶ୍ୱର କହିଲା, ଖାଇବାକୁ ନ ପାଇ ନିରାଶ ହୋଇ ନିଃସହାୟ ହୋଇ ଶହ ଶହ ଲୋକ କିପରି ମରନ୍ତି ଦେଖିଛୁ ? ସେହି ଦୃଶ୍ୟ ଦେଖିବା ପାଇ ତ ତୋତେ ଗଞ୍ଜାମକୁ ଡାକିଥିଲି ।

ଶରତ କହିଲା, ଏହି କଟକ ସହରର ସଦର ବଜାର କଡ଼ରେ ଖାଇବା ବିନା ଯେପରି ଲୋକ ମରି ପଡୁଛନ୍ତି, ତାହାଦେଖି ମୁଁ ଗଞ୍ଜାମର କଥା ଅନୁମାନ କରୁଛି । କଟକର ଏହି ଦୃଶ୍ୟ ମତେ ବିଚଳିତ କରି ଦେଇଛି, ସମୟ ସମୟରେ ଭାବୁଛି, ପାଗଳ ହୋଇ ଯିବି ।

ବୀରେଶ୍ୱର, ଅତ୍ୟନ୍ତ ଗମ୍ଭୀର ଭାବରେ କହିଲା, ଗଞ୍ଜାମର ଦୃଶ୍ୟ ତାହା ନୁହେଁରେ ଶରତ, ଗୋଟାଏ ବିରାଟ ଶ୍ମଶାନରେ ପରିଣତ ହୋଇଛି । ଏ ଦେଶର ଲୋକେ ଖାଇବାକୁ ନ ପାଇ କେମିତି ମରନ୍ତି; ଅନ୍ତତଃ ସେ ଦୃଶ୍ୟଟା ଦେଖି ଆସିବା ପାଇଁ ତୁ ମୋ ସାଙ୍ଗରେ ଚାଲ୍ । ମଫସଲ୍ ଭିତରକୁ ଗସ୍ତରେ ଯାଏ; ଯେଉଁ-ଗାଁରେ ଦେଖ ସେ ଗାଁଅରେ ଲୋକେ ଖାଇବାକୁ ନ ପାଇ ହାଡ଼ ଚମରେ ପରିଣତ ହୋଇଛନ୍ତି । ଏହି ହାଡ଼ ଚମର ମଣିଷ ଯେତେ-ବେଳେ କିଛିଦିନ ଖାଇବାକୁ ନ ପାଉଛି, ବସୁ ବସୁ ଟଳି ପଡ଼ୁଛି ବାଟ କଡ଼ରେ । ଗାଁ ଭିତରେ ବିଲୁଆ, କୁକୁର, ଶାଗୁଣା ଏହି ମଲା ଲୋକଗୁଡାକର ହାଡ଼କୁ ଧରି ଟଣାଟଣି ଲଗାଇଛନ୍ତି । ଅଚ୍ଛା ଶରତ, ଏ ଦେଶ ଲୋକଙ୍କ ଜୀବନର କଅଣ କୌଣସି ମୂଲ୍ୟ ନାହିଁ ? ସେମାନଙ୍କର ବଞ୍ଚିବାର ଅଧିକାରକୁ କଅଣ କେହି ସ୍ୱୀକାର କରନ୍ତି ନାହିଁ ? ତୁ ଚାଲ ମୋ ସାଙ୍ଗରେ । ଦେଖିବୁ ଏ ଦେଶଟା କେତେ ନିରସ, ଏ ଦେଶ ଲୋକ କେତେ ନିଃସହାୟ, ତାହା ବୁଝି ପାରିବୁ ।

ଶରତ ନିସ୍ତବ୍ଧ ହୋଇ ବସି ରହିଲା ।

ବୀରେଶ୍ୱର ପୁଣି କହିଲା, ' ଏ ଅବସ୍ଥା ଦେଖି ତୁ କଣ ବାୟା ହୋଇଯିବୁ ବୋଲି ଭାବୁଛୁ ? ମୁଁ ଦେଖୁଛି, ଏକ ଅତେ ମୃତ୍ୟୁର ବିଭୀଷିକା, ଅନ୍ୟଆଡ଼େ ପୈଶାଚିକ ହୃଦୟହୀନତା । ସରକାରୀ କାମ କରେ; ଯେଉଁସବୁ ସରକାରୀ ଗୁପ୍ତ ଚିଠିପତ୍ର ମୋ ହାତରେ

ପଡ଼େ ତାକୁ ଦେଖି ମୋର ଅନ୍ତରଆତ୍ମା ଶୁଖିଯାଏ, ମସ୍ତିଷ୍କ ଠିକରହେ ନାହିଁ, ଭାବେ ମୁଁ ପାଗଳ ହୋଇଯିବ । ଏ ଦୁର୍ଭିକ୍ଷକୁ ଲଗ୍ନାଇବା ପାଇଁ ସରକାର ଦେଉଳ ଉପର କର୍ମଚାରୀର ଉପର ମସ୍ତିଷ୍କରୁ ଫନ୍ଦ ବାହାର ଥିଲା କେତେଗାଣି; କର୍ମଚାରୀଙ୍କ ଉପରେ ହୁକୁମ ଜାରି ହେଲା ଯେ, ଦେଶରେ ଦୁର୍ଭିକ୍ଷପଡ଼ିଛି, ଏ କଥା କୌଣସି କାଗଜ ପତ୍ରରେ ଦେଖାଇବାକୁ ହେବନାହିଁ; ଦୁର୍ଭିକ୍ଷ ଶବ୍ଦଟା ବ୍ୟବହାର କରିବାକୁ ହେବ ନାହିଁ; କେହି ଲୋକ ଖାଇବାକୁ ନ ପାଇ ମରୁଛନ୍ତି-ତାହା ଲେଖିବାକୁ ହେବ ନାହିଁ । ଏ ସବୁ ଦେଖି ଶ୍ୱାସରୁଦ୍ଧ ହୋଇ ଆସେ; ଆଖିରୁ ରକ୍ତ ଝରିପଡ଼େ ।

ଶରତ ଧୀରେ ଧୀରେ କହିଲା, ଏ ସବୁ ସହ୍ୟକରି ତୁ ରହିଛୁ କେମିତି ?

ସୀତେଶ୍ୱର କହିଲା, ' କେମିତି ରହିଛି, ତା ଜାଣେ ନା । କାମ ଛାଡ଼ିଦେବି, ଇସ୍ତଫା ଦେବି, ସବୁବେଳେ ଏ କଥା ଭାବେ; ମନର ଆବେଗରେ ଅନେକଥର ଇସ୍ତଫା ଖଣ୍ଡେ ଲେଖି ପକାଏ । ପଛେ ଭାବେ; ଏଥିରେ ଲାଭ କଣ ? ମୁଁ ଯିବି, କିନ୍ତୁ ତାହାଗ୍ର ସରକାରର ନୀତି ବଦଳିବ ନାହିଁ । ମୋ ସ୍ଥାନରେ ଆଉ ଜଣେ କେହି ଆସିବ; ହୁଏତ ସେ ଅର୍ଥର ଦାସ; ସେ ଲୋକଙ୍କ ପ୍ରତି ଚାହିଁବ ନାହିଁ । ମୋର ଚେଷ୍ଟାରେ ଯଦି ଜଣେ ଲୋକର ଜୀବନ ରହିଯାଏ, ତେବେ ତାହାହିଁ ମୋ ପକ୍ଷରେ ଯଥେଷ୍ଟ ।,

'ତୁ ଏ ସବୁ କଥା ସରକାରକୁ ଲେଖୁନାହିଁ ?

' ତୁ ଭାବୁଛୁ ଯେ, ଆମର ଯାହା ଖୁସି ତାହା ସରକାରକୁ ଲେଖିବାର ଅଧିକାର ଆମର ଅଛି ? ନା ତାହା ନାହିଁ, ସେ ଅଧିକାର ଚୋର ଅଛି, ସେ ଅଧିକାର ବ୍ୟବସାୟୀର ଅଛି, ସେ ଅଧିକାର ଦାଣ୍ଡରେ ବୁଲୁଥିବା ବାଙ୍ଗାଳୀମାନଙ୍କର ଅଛି; କିନ୍ତୁ

ଆମର ନାହିଁ । ନାଲି ଫିତାର ଧସବନ୍ଧା ଗତ ଗଣ୍ଡି ବାହାରକୁ ଯିବା ପାଇଁ ଆମର ଉପାୟ ନାହିଁ । ଆମର ସବୁ କାମ ଗୁପ୍ତ ହୁକୁମ ଦ୍ୱାରା ନିୟନ୍ତ୍ରିତ । ତୁ ବୁଝି ନାହୁଁ; ଆମେ ମାସରେ ଟଙ୍କା କେଇଟାପାଇଁ ମୁଣ୍ଡବିକି ଗୋଲାମ ହୋଇଛୁଁ । ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟାକରି ପ୍ରଥମେ ପ୍ରଥମେ ସରକାରଙ୍କୁ ଲେଖିଥିଲି; ହୁକୁମ ଆସିଲା, ତୁମେ କ୍ଷମତାର ଅପବ୍ୟବହାର କରୁଛ; ତା ପରେ ଆସିଲା, ତୁମକୁ ସତର୍କ କରାଗଲା, ତା ପରେ ଆସିଲା, ତମର ପ୍ରମୋସନ ୩ ବର୍ଷ ପାଇଁ ବନ୍ଦ କରାଗଲା । ମୋର ଗୃହସ୍ତି ଗଲେ ମଧ୍ୟ ଦୁଃଖ ନ ଥିଲା; କିନ୍ତୁ ମୋ ଲେଖାଦ୍ୱାରା କିଛି ଫଳ ହେଲା ନାହିଁ । ସେ ବାଟ ଛାଡ଼ିଲି । ’

‘ ତା ପର ? ’

‘ତା ପର ଆଉ କଣ ? ମୋ ନିଜ ଚେଷ୍ଟାରେ ଯାହା କରିବାର କଥା ତାହା ହିଁ କରୁଛି । କିଏ ପ୍ରମୋଦ; ଆସ, ଆସ ।

ପ୍ରମୋଦ ଘର ଭିତରକୁ ଆସି ଖଣ୍ଡେ ଚଉକୀରେ ବସି ପଡ଼ିଲା ।

ବୀରେଶ୍ୱର କହିଲା, ‘ଶରତ, ତୁ ପ୍ରମୋଦକୁ ଚିହ୍ନି ନାହୁଁ ? ସେ ରାୟ ବାହାଦୁର ଧସଧର ନନ୍ଦଙ୍କ ପୁଅ । ଆମ ଲିଲି ସଙ୍ଗରେ କଲେଜରେ ପଢ଼େ ।’

ପ୍ରମୋଦ କହିଲା, ‘ ନମସ୍କାର ; ’

ଶରତ ତାକୁ ପ୍ରତି ନମସ୍କାର କରି ବୀରେଶ୍ୱରକୁ କହିଲା, ‘ତା ହେଲେ କଅଣ ଏ ଲୋକଗୁଡ଼ାକୁ ମାରି ପକାଇବା ପାଇଁ ସରକାର ଗୋଟାଏ ଷଡ଼ଯନ୍ତ୍ର କରିଛି ?

ବୀରେଶ୍ୱର କହିଲା, ‘ ଷଡ଼ଯନ୍ତ୍ର ନୁହେଁ; ଲୋକଗୁଡ଼ାକ ଗଲେ ସରକାରର ଲାଭ କଅଣ ? କିନ୍ତୁ ଏ କଥା ଠିକ ଯେ, ଏମାନଙ୍କୁ ରକ୍ଷାକରିବା ପାଇଁ ସରକାର ଯାହା କରି ପାରନ୍ତେ, ତାହା କରିବାର ଶକ୍ତି, ସାମର୍ଥ୍ୟ ବା ସମ୍ବଳ ତାଙ୍କର ନାହିଁ । କଥାଟା

ମାନିଲେ ତ ସେ କଷ୍ଟରେ କିଛି କରିବାକୁ ହେବ, ନ ମାନିଲେ ଗଲି । ଏହି ନୀତି ସରକାର ଧରିଛି । ଉପର ପାହୁଅରେ କେତେ ଜଣଙ୍କ ବ୍ୟକ୍ତିଗତ ସ୍ୱାର୍ଥ ଏ ନୀତିକୁ ଅଧିକ ଉତ୍କଟ କରି ପକାଇଛି । ତାହାର ଫଳରେ ଏ ମହାମାରୀ, ସେହି କାରଣରୁ ଏହି ମହାମାରୀର ପ୍ରତିକାର ମଧ୍ୟ ଠିକ୍ ବାଟରେ ହେଉନାହିଁ ।

ଶରତ ବ୍ୟସ୍ତ ହୋଇ ପଡ଼ିଲା, କହିଲା; ତେବେ ଉପାୟ ? ଲୋକଗୁଡ଼ାକ ଆମ ଆଖି ଆଗରେ ମରୁଥିବେ, ଆଉ ଆମେ ବସି ବସି ଦେଖୁଥିବୁ ? ଏହା ତ ହୋଇ ପାରିବ ନାହିଁ !

ବୀରେଶ୍ୱର ଗମ୍ଭୀରଭାବରେ କହିଲା, ଉପାୟ ? ଉପାୟ ତୋର ଚେଷ୍ଟା, ମୋର ଚେଷ୍ଟା, ଆମପରି ଆଉ ଯେଉଁମାନେ ଅଛନ୍ତି, ତାଙ୍କର ଚେଷ୍ଟା ସେଥିରେ ଯେତିକି ହେବ; ସେତିକି ବର୍ତ୍ତମାନ ଅବସ୍ଥାରେ ସମ୍ଭବ । ତା ଛଡ଼ା ଉପାୟ ଅଛି କଅଣ ? ମୁଁ କଅଣ କରିଛି ଜାଣୁ ? ତୋ ଭଳି ମୋ ଘରେ ସେବାଶ୍ରମ ଫିଟିନାହିଁ । ମୋ ଘରେ ଗୋଟାଏ ଅନ୍ନଛତ୍ର ଖୋଲିଛି । ୪୦୦ ଟଙ୍କା ଯାଏ, ସେତିକି ଅଣ୍ଟୁଛି ବୁଝୁଛୁ ? ବୁଝିଲୁ କିଲୁ, ତୁ ଯେଉଁ ବ୍ରହ୍ମପୁରୀ ଜରି ଲଗା ପାଇଁ ଲେଖିଥିଲୁ, ସେହି କାରଣରୁ ତାହା ଆଣିପାରିଲି ନାହିଁ । ମୁଁ ଠିକ କରିଛି କଅଣ ଜାଣୁ ? ମୋର ଦରମା ଟଙ୍କା ତକ ମୋର ନୁହେଁ; ତାହା କାଙ୍ଗାଳମାନଙ୍କର; ସେଥିରେ ମୋର କିଛି ଅଧିକାର ନାହିଁ । ପଇସା ପାଇବ ବୁଝୁଛୁ ଯେ ତୋ ପାଇଁ ଜରି ଲଗା ଆଣିବ ? କିଲୁ ତା ଭାଇ ଆଡ଼କୁ ଚାହିଁ ରହିଲା; ତାପରେ ଧୀରେ ଧୀରେ କହିଲା 'ଭାଇ, ତମେ କଅଣ ସେଥିପାଇଁ ଦିନକୁ ଥରେ ଖାଉଛ; ତା ପୁଣି ଫଳ ସିଝା ଆଉ ଭାତ ।

ବୀରେଶ୍ୱର ଅପ୍ରତିଭ ହୋଇପଡ଼ିଲା । କହିଲା, 'ଦୂର ! ତାହା ନୁହେଁ—ଏମିତେ ପେଟମରା ପରି କଅଣ ଗୋଟାଏ

ରୋଗର ଲକ୍ଷଣ ଦେଖାଦେବାରୁ ଖାଦ୍ୟଟାକୁ ଯେତେ ସାଧା ସିଧା କରିବାର କଥା ନେଉଛୁ, ବୁଝିଲ ? ଏଇଟା ଡାକ୍ତରର ପରାମର୍ଶ ।”

ଶରତ୍‌ର ଚକ୍ଷୁ ବାଷ୍ପାକୁଳ ହୋଇ ପଡ଼ିଲା । ସେ କହିଲା, ‘ତୋ ଭିତରେ ଲାଗୁଥିବା ପୁରୁଣା ନିଆଁ ଲିଭି ନାହିଁରେ ବୀର ! ସେ ନିଆଁ ଲିଭି ନାହିଁ ।’

ବୀରେଶ୍ୱର ହସି ହସି କହିଲା, ‘ନିଆଁ ଲାଗୁଛି ଠିକ୍; କିନ୍ତୁ ସେଥିରେ ଆମ ପ୍ରମୋଦ ବାବୁଙ୍କ ପରି ଯୁବକମାନଙ୍କର ସିଗାରେଟ ସୁଦ୍ଧା ଲାଗିବ ନାହିଁ, ବୁଝିଲ ।

ପ୍ରମୋଦ ପକ୍ଷରେ ଏ ସବୁ ବଡ ବଡ଼ କଥା ସହ୍ୟ ହୁଏ ନାହିଁ । ସେ ଆସିଥିଲା ଲଲି ସାଙ୍ଗରେ ଟିକିଏ ଖୁସିଗପ କରିବ ବୋଲି । ଯେତେବେଳେ ଘର ଭିତରକୁ ପଣି ଆସିଛି ସେତେବେଳେ ଚୁପ ହୋଇ ବସି ଏମାନଙ୍କ କଥା ଶୁଣିବା ଛଡ଼ା ତା ପକ୍ଷରେ ଅନ୍ୟ ଉପାୟ ନ ଥିଲା । ମନେ ମନେ ସେ ବିରକ୍ତ ହୋଇ ପଡ଼ୁଥିଲା ।

ବୀରେଶ୍ୱର ବାବୁ ତା ନାଆଁଟାକୁ କଥାବାର୍ତ୍ତାରେ ଯୋଡ଼ି ଦେବାରୁ ସେ ସୁବିଧା ପାଇ ବୀରେଶ୍ୱର ବାବୁଙ୍କୁ କହିଲା; କିନ୍ତୁ ଆପଣ କାହିଁକି ନିଜ ପ୍ରତି ଅବିଚାର କରୁ ନାହାନ୍ତି କି ? ଦିନାନ୍ତରେ ବେଳାଏ ଓ ତାହା ଅତି ସାଧାରଣ ଧରଣର ଖାଦ୍ୟ ଦ୍ୱାରା ଆପଣଙ୍କ ଜୀବନୀଶକ୍ତି କମିଯାଉ ନାହିଁ କି ?

ବୀରେଶ୍ୱର କହିଲେ, କାହିଁ ? କାମ କରିବା ଶକ୍ତି ମୋର ଠିକ୍ ରହିଛି; ହେଲଟି ତମ ଆଗରେ ମୁଁ ଜୀଅନ୍ତା ମଣିଷଟାଏ ତ ବସିଛି ?

ପ୍ରମୋଦ ଛାଡ଼ିବାର ପାତ୍ର ନୁହେଁ, କହିଲା ଯଥେଷ୍ଟ ଖାଦ୍ୟ ନ ଖାଇଲେ ଜୀବନୀଶକ୍ତି ନଷ୍ଟ ହୁଏ, ଏକଥା ତ ଆପଣ ମାନିବାକୁ ବାଧ୍ୟ ।’

'ତା ମାନନ୍ତି କନ୍ତୁ ପଗ୍ଭୃଛନ୍ତି, ଏ ଦେଶର କେତେକ ଲୋକ ଯଥେଷ୍ଟ ଖାଦ୍ୟ ପାଆନ୍ତି ? ଆଜ କେତେ ଜଣ ପାଉଛନ୍ତି ?

ସେମାନଙ୍କ କଥା ଛାଡ଼ଦଅନ୍ତୁ । ସେମାନେ ଗରବ, ସେମାନେ ଦୁଃଖୀ, ହୁଏତ ସେମାନଙ୍କ ଯୋଗ୍ୟତାରୁ ବା ଅଳସୟରୁ ସେମାନେ ଦୁଃଖୀ ରହୀ । ସେମାନେ ଖାଇବାକୁ ପାଇବେ କୁଆଡୁ ? ସେମାନେ ସବୁଦନେ, ପୃଥିବୀର ସବୁ ଦେଶରେ ଖାଇବାକୁ ନ ପାଇ ମରନ୍ତି; ଆଜ ହୁଏତ ଏ ଦେଶରେ ସେମାନେ ଟିକିଏ ବେଶି ପରମାଣରେ ମରୁଛନ୍ତି, କନ୍ତୁ ଆପଣମାନଙ୍କ ପର ଯୋଗ୍ୟ-ଲୋକର ମୂଲ୍ୟ ସମାଜ ପକ୍ଷରେ ଯଥେଷ୍ଟ ବେଶି । ଆପଣମାନଙ୍କ ଜୀବନ ଦେଶର ମୂଲ୍ୟବାନ ସମ୍ପଭ ।'

ବାରେଶ୍ୱର ବାବୁ ହସିଲେ; କହିଲେ, ଆଜ ଏ ୧୯୪୩ରେ ତୁମେ ଏକଥା କହୁଛ ? ମନେ ହେଉଛି, ତୁମେ ସେଅର ମହାରାଣୀ ଭିକ୍ଟୋରିଆଙ୍କ ଯୁଗର ଲୋକ । ଅଚ୍ଛା ଗୋଟାଏ କଥା ଧର—ମୁଁ କିଏ ? ତୁମେ କିଏ ? ଏ ସମାଜ କଣ ? ସମାଜରେ— ଦେଶର ଶତକଡ଼ା ୯୯ ଜଣ ଲୋକ ଗରବ, ଦୁଃଖୀ ନିଃସ୍ୱ ଶ୍ରେଣୀର ଲୋକ । ସମାଜ ତାଙ୍କର । ସେମାନେ ପରଶ୍ରମ କରନ୍ତି, ଅର୍ଜ୍ଜନ କରନ୍ତି, ଜମିବାଡ଼ରେ ଫସଲ କରନ୍ତି, ପୃଥିବୀ ପେଟରୁ ସୁନା ବାହାର କରନ୍ତି, କଳ କାରଖାନାରେ ଜିନିଷ ତିଆର କରନ୍ତି ସେମାନେ । ଆଉ ଆମେ ମଲ୍ଲଙ୍ଗ ପର, ଦୈତ୍ୟ ପର, ଡକାୟତ ପରି ତାଙ୍କର ଧନ କାଢ଼ି ନେଉ, ତା ସଙ୍ଗେ ସଙ୍ଗେ ତାଙ୍କର ମୁହଁର ଗ୍ରାସ ମଧ୍ୟ ଛଡ଼ାଇ ଅଣୁ । ଏ ଦୈତ୍ୟ ଡକାୟତ ସମର୍ଥନ କରବା ପାଇଁ ସହଜ କରବା ପାଇଁ; ଚରସ୍ଥାୟୀ କରବା ପାଇଁ ଆମେମାନେ ଆଇନ ଗଢିଛୁ । ଆଉ ସେ ଆଇନ୍ ପଛରେ ରହୁଛି ପୁଲିସ, ଆମଲା ହାକମ, ଜେଲ୍ ପଲ୍ଟଣ, ଫୌଜ;

ଟ୍ୟାଙ୍କ, ଟର୍ପେଡ଼ୋ, ଡ଼ାଇଭ୍ ବୋମ୍ବର । ଶ୍ରେଷ୍ଠତାକୁ ଅଭିନନ୍ଦିତ କଲେ ମଧ୍ୟ ତାହା ଚିରକାଳ ଶ୍ରେଷ୍ଠ ହୋଇ ରହିବ; ସେହିପରି ଉତ୍ପୀଡ଼ିତ-ଉତ୍ପୀଡ଼ିତ ହିଁ ରହିଥିବ । ଆଇନ ବଳରେ ଶ୍ରେଷ୍ଠଙ୍କୁ ସ୍ୱାର୍ଥ ତ୍ୟାଗ, ବା ଉତ୍ପୀଡ଼ିତଙ୍କୁ ସେବା କାର୍ଯ୍ୟରେ ପ୍ରେରିତ କରାଯାଇ ପାରିବ ନାହିଁ । ମୋଟ କଥା ହେଉଛି, ଏ ଯେଉଁ ଗରିବଗୁଡ଼ିକ, ଏ ଯେଉଁ ଦୁଃଖୀଗୁଡ଼ିକ, ଆଜି ଯେଉଁମାନେ ନିଃସହାୟ ପରି ମୁଠାଏ ଖାଇବାକୁ ନ ପାଇ ଶହ ଶହ ସଂଖ୍ୟାରେ ମରୁଅଛନ୍ତି । ସେମାନେ ଯଦି ଚାଷ ନ କରନ୍ତି, ମୂଲ ନ ଲାଗନ୍ତି, ତେବେ ଆମପରି 'ଯୋଗ୍ୟ ଲୋକଙ୍କୁ' ନେଇ ସମାଜ ଦିନେ ହେଲେ ଚଳି ପାରିବତ ? ଏ ସମାଜରେ ଆମପରି ଯେତେଲୋକ ପୃଥିବୀରେ ଅଛନ୍ତି—ଏଇ ଚର୍ଚ୍ଚିଲ, ରୁଜଭେଲ୍ଟ ଠାରୁ ତୁମେ ଆଉ ଲିଲି ପର୍ଯ୍ୟନ୍ତ ସମସ୍ତେ—ଚାଷ ବିନା ବଞ୍ଚିପାରିବେ ତ ? ନା, ଏପରି ବଞ୍ଚିବା ଅସମ୍ଭବ । ତେବେ ଜୀବନର ଦାମ କାହାର ବେଶି ? ଏଇ ଗରିବ ଚାଷୀଗୁଡ଼ିକର ମୂଲିଆ ଗୁଡ଼ିକର ନା ତମର, ଲିଲିର ମୋର ?

ଶରତ୍ କୃତ୍ରିମ ଭୟର ଅଭିନୟ କରି କହିଲା; ବୀର, ! ବୀର ! କମ୍ୟୁନିଷ୍ଟ ! କମ୍ୟୁନିଷ୍ଟ !! ବିପ୍ଳବ, ଅଗ୍ନି, ହତ୍ୟା !! ସରକାରୀ ହାକିମ, ଧଡ଼ା ଚୂଡ଼ା ମଣ୍ଡିତ ଡ଼େପୁଟି ମେଜେଷ୍ଟର ମୁହଁରେ କମ୍ୟୁନିଷ୍ଟ !'

ଶରତର ଏ ଅଭିନୟ ଦେଖି ସମସ୍ତେ ହସି ପକାଇଲେ ।

ବୀରେଶ୍ୱର କହିଲା, 'ମୁଁ ସରକାରୀ ଚାକିରିଆ ବୋଲି କମ୍ୟୁନିଷ୍ଟର ନାଲିକନା ହଲାଇ ତୁ ମତେ ଡରାଇ ଦେବୁ ? ତା ହୋଇପାରିବ ନାହିଁ । ମୁଁ ଯାହା କହୁଛି, ତାହା ମୋର ମନର କଥା, ହୃଦୟର କଥା । ଯେ କୌଣସି ଲୋକର ଚିନ୍ତା କରିବାର ଶକ୍ତି ଅଛି, ଭାବିବାର କ୍ଷମତା ଅଛି, ସେ ଠିକ୍ ଏହି କଥା ଦେଖିବ,

ଏହି କଥା କହୁଚ । କାରଣ ଏ କଥାଟା ନିଷ୍ଠୁର ସତ୍ୟ, ସୂର୍ଯ୍ୟପରି ତାହା ସ୍ୱତଃ ପ୍ରକାଶିତ । ମାର୍କସ, ଏଞ୍ଜେଲ ବା ଲେନିନ୍ ଏ କଥାଟାକୁ ପ୍ରଥମେ କହିଥିଲେ, ଏ କଥାଟାକୁ ଧୁରନ୍ଧର ବୈଜ୍ଞାନିକ ପରି ବିଶ୍ଳେଷଣ କରି ଦେଖାଇଥିଲେ ବୋଲି ଯେ ଏହା ବେଆଇନ ହୋଇଯିବ, ଦୋଷାବହ ହୋଇଯିବ, କମ୍ୟୁନିଜ୍ମ କହିଲେ ଲୋକେ ଆତଙ୍କରେ ଥରି ଉଠିବେ, ଏପରି କୌଣସି କଥା ଅଛି କି ?

ପ୍ରମୋଦ କହିଲା, 'କମ୍ୟୁନିଜ୍ମଟା ତ ଅତି ମାରାତ୍ମକ କଥା ବୋଲି ମୋର ଧାରଣା ।'

ବୀରେଶ୍ୱର ହସି ହସି କହିଲା ଠିକ୍, ତୁମମାନଙ୍କ ପରି ଯୁବକ ପକ୍ଷରେ କମ୍ୟୁନିଜ୍ମ କଥାଟା ମାରାତ୍ମକ, କାରଣ ଏ ବିଷୟରେ କିଛି ଧାରଣା କରିବାକୁ ହେଲେ ବହୁତ ପଢ଼ିବାକୁ ପଡ଼ିବ, ବହୁତ ଭାବିବାକୁ ପଡ଼ିବ; ବହୁତ ପରିଶ୍ରମ କରିବାକୁ ପଡିବ, ନିଜ ଜୀବନର ବହୁତ ବିଷୟକୁ କଠୋର ହସ୍ତରେ ନିୟନ୍ତ୍ରିତ କରିବାକୁ ପଡ଼ିବ; କିନ୍ତୁ କମ୍ୟୁନିଜ୍ମ ଯେଉଁ ମୂଳନୀତି ଉପରେ ପ୍ରତିଷ୍ଠିତ; ତା ଯେ ପର୍ଯ୍ୟନ୍ତ ପୃଥିବୀର ସବୁ ଦେଶରେ—ବିଶେଷତଃ ଆମ ଭାରତବର୍ଷରେ—ନ ଚଳିଛି ସେ ପର୍ଯ୍ୟନ୍ତ ଏହିପରି ଦୁର୍ଭିକ୍ଷର ମୂଳକାରଣ ଚିରଦିନ ରହିଥିବ; ଚିରକାଳ ଲୋକେ ଖାଇବାକୁ ନ ପାଇ ମରୁଥିବେ, ଆଉ ସେ ଅବସ୍ଥା ଯେ କୌଣସି କାରଣରୁ ଟିକିଏ ଜଟିଳ ହୋଇ ପଡ଼ିଲେ ଏହିପରି ମହାମାରୀ ଘଟୁଥିବ ।'

ଲିଲି ଏ ପର୍ଯ୍ୟନ୍ତ ନୀରବ ହୋଇ ଶୁଣୁଥିଲା, ସେ କହିଲା, 'ଭାଇ ତମେ କଅଣ କମ୍ୟୁନିଷ୍ଟ ।'

ବୀରେଶ୍ୱର ହସି ହସି କହିଲା, 'ନା ରେ ନା, ମୁଁ ଖାଣ୍ଟି ସରକାରଙ୍କ ନିମକ ସଚ୍ଚା ଗୋଲାମ ।

''ଆଉ ତମେ କମ୍ୟୁନିଜ୍ମ କଥା ଭାବୁଛ ?

'ନ ଭାବି ରହିପାରିବ କିପରି କହ ତ ? ଗୃହଅଙ୍ଗେ ଦେଖନ୍ତୁ ଦୁର୍ଭିକ୍ଷର ଭୀଷଣ ମଡ଼କ । ଏହାର ପ୍ରତିକାର କଥା ଭାବୁଛୁ । ଭାବିଲା ବେଳେ କମ୍ୟୁନିଷ୍ଟମାନେ ଯେଉଁ ଧରଣର କଥା କହନ୍ତି, ସେଇଠି ଯାଇ ପହଞ୍ଚିଯାଉଛୁ । କରିବି କଅଣ ? ଭାବର ବ୍ୟାପକତାକୁ ବେଆଇନ କରିବା, ମସ୍ତିଷ୍କକୁ ନିୟନ୍ତ୍ରିତ କରିବା ଉଦ୍ଦେଶ୍ୟରେ ଅର୍ଡ଼ିନେନ୍‌ସ ଜାରି କରିବା କଥାଟା ଆମ ସରକାର ବାହାଦୂର ଏ ପର୍ଯ୍ୟନ୍ତ ସ୍ଥିର କରି ପାରି ନାହାନ୍ତି । ଅବଶ୍ୟ ମନୁଷ୍ୟର ଭାବ ଜଗତରେ ଗୋଳମାଳ ଲଗାଇ ଦେବାପାଇଁ ସରକାରଙ୍କ ପକ୍ଷରୁ ମୂର୍ଖତା ସୁଲଭ ଚେଷ୍ଟାର ଅଭାବ ନାହିଁ । ଏଥିପାଇଁ ପବ୍ଲିସିଟି ଡ଼ିପାର୍ଟମେଣ୍ଟ ଅଛି । ନାନା ପ୍ରକାରେ ନାନା ଭାବରେ, ନାନା କଥା ପ୍ରକାଶିତ ହେଉଛି, ପ୍ରଚାର କରା ଯାଉଛି, ଟଙ୍କା ଲୋଭରେ ଲୋକେ ନିଜ ମସ୍ତିଷ୍କଟାକୁ ମଧ୍ୟ ବେଶ୍ୟା ବ୍ୟବସାୟରେ ଲଗାଇ ଦେଉଛନ୍ତି, ପାଣି ପୁଅପରି କୋଟି କୋଟି ଟଙ୍କା ଏ ବାଗରେ ଖରଚ କରାଯାଉଛି । ଗରିବଫିଲା ହସ୍ତାକ୍ଷର ଲେଖିବା ପାଇଁ ଯେତେବେଳେ ଖଣ୍ଡେ କାଗଜ ପାଉନାହୁଁ, ସେତେବେଳେ ଲକ୍ଷ ଲକ୍ଷ ବହି ଛପାହୋଇ ବଣ୍ଟା ହେଉଛି । ତଥାପି ଯେଉଁଟା ଠିକ, ଯେଉଁଟା ସତ୍ୟ, ଯେଉଁ ଭାବଟା ଜାତି ପକ୍ଷରେ ଉପଯୁକ୍ତ, ତାହାର ହିଁ ପ୍ରଚାର ଧୀରେ ଧୀରେ ହୋଇ ଯାଉଛି, ଆଉ ଏ ବାଧା ଦ୍ୱାରା ତାହାର ଗତି ବଢି ଯାଉଛି । ଅଚ୍ଛା ତୁ ତ ଜାଣୁ ଲଲି, କମ୍ୟୁନିଷ୍ଟ ହୋଇଥିବାରୁ ଜଣେ ଯୁବକର ବିଚାର କରି ମୁଁ ତାକୁ ତିନିବର୍ଷ ଜେଲ୍ ଦେଇଥିଲି ?

ଶରତ କହିଲା, 'ଠିକ ତୋର ସେଣ୍ଟେନ୍‌ସ ଅନୁସାରେ ତୋର ମଧ୍ୟ ତିନି ବର୍ଷ ଜେଲ୍ ହେବା ଉଚିତ୍‌ । ମୁଁ ବର୍ତ୍ତମାନ ଉଠିଲି ବହୁତ କାମଅଛି ।'

ଘାରେଶ୍ୱର ହସି ହସି କହିଲା, 'କେତେବେଳେ ତୋର କମ ନ ଥାଏ ? ପୁଣି ତୁ ଅସିବୁ କେତେବେଳେ ?'

'ସେ ଜବାବ ଅଗରୁ ଦେଇ ପାରୁନାହିଁ '

ଏହା କହି ଶରତ ଉଠିଲା, ଘାରେଶ୍ୱର ମଧ୍ୟ ଉଠିଲା । ଦୁଇବନ୍ଧୁ ଘରୁ ବାହାରି ଗଲେ ।

ଟେବୁଲ୍ ଅର ପାଖରେ ପ୍ରମୋଦ ବସି ବସି କହିଲା; 'ଦେଖ ମିସ୍ ମହାନ୍ତି, ତମ ଭାଇ ମଧ୍ୟ ଏ ଶରତ ପାଲରେ ପଡ଼ିଛି ?'

ଲିଲି କହିଲା, , ସେ ଦୁହେଁ ପିଲାଦିନର ବନ୍ଧୁ ।'

'ଓଃ ଭାରି ବନ୍ଧୁତ ! ଭଲ କଥା ନାହିଁ, ମନ୍ଦ କଥା ନାହିଁ ଦେଶ, ଦୁର୍ଭିକ୍ଷ କମ୍ୟୁନିଜ୍, ମଡ଼କ—ଏ ସବୁ କଥା । ଏ କି ଧରଣର ବନ୍ଧୁତା ମୁଁ ବୁଝିପାରୁ ନାହିଁ । '

ଲିଲି ବିରକ୍ତ ହୋଇ ଉଠିଲା, କେଜାଣି କାହିଁକି ଭାଇ ପ୍ରତି ତାର ସମ୍ମାନ ଅଜି ଅଧିକ ବଢ଼ି ଯାଇଛି, ଶରତବାବୁ ତା ହୃଦୟରେ ଏକ ବିଶିଷ୍ଟ ଅସନ ଲାଭ କରିଛି ।

ଲିଲି ଧୀରେ ଧୀରେ କହିଲା; ସେ ଧରଣର ବନ୍ଧୁତାର ମର୍ମ ବୁଝି ପାରିବା ଭଲ ମସ୍ତିଷ୍କ ଅପଣଙ୍କର ନାହିଁ ପ୍ରମୋଦ ବାବୁ !'

ଲିଲି ଉଠି ଗ୍ଲଲଗଲା; ପ୍ରମୋଦ ବୋକା ପରି ବସି ରହିଲା ।

---

# କୋଡ଼ଏ

ଲଞ୍ଜିପଲ୍ଲୀ ପାଖର ସେହି ଡୋଠା । ସଞ୍ଜ ଅନ୍ଧାର ଯେପରି ଡାହା ଭିତରେ କମାଟ ବାନ୍ଧ ଯାଉଛି । ଗୋଟାଏ ଗୋଟାଏ ଗଛ ମୂଳେ ଧୂଆଁର କୁହେଳି ଭିତରେ ଜଳୁଛି ଭାଙ୍ଗାଳମାନଙ୍କର ଗୋଟାଏ ଗୋଟାଏ ତେଣୁଆ ତିଅରି ଚୂଲ୍ଲୀ । ରେଲଷ୍ଟେସନ ଅରି ପାଖରେ ଛୁଟ୍‌ଡ଼ାହେଲେ ଅନ୍ଧାରିଆ ଡୋଠା ଭିତରେ ଜୋଡ଼ାଗୁଣୀ ମାନଙ୍କର ସଭା ଲଗିଥିବା ପରି ଦେଖା ଯାଉଛି ।

ଅମ୍ବଗଛ ମୂଳରେ ଗୋଟାଏ ତେଣୁଆ ଚୂଲ୍ଲିରେ ହାଣ୍ଡି ବସାଇ ଦେଇ ବୁଢ଼ୀଟାଏ ଭାଜନ୍ତି ଗୁଜଳ ଝାଡୁଛି । ଚୂଲ୍ଲୀ ଆଲୁଅରେ ଅଜ ଗୋଟାଏ ଭାଙ୍ଗାଳ ଅସି ବୁଢ଼ା ପାଖରୁ କିଛି ଦୂରରେ ବସି କହିଲା, 'ମାଷ୍ଟ୍ରେ, ଘାନାଟା ଅଜ ରହି ପାରିବ ନାହିଁ ।

'ଘାନା ? ଘାନା ?? କହୁଁଠି ପଡୁଛି ସେ ? ଗୁଜଳ ଦଟା ହାଣ୍ଡିରେ ପକାଇ ମାଷ୍ଟ୍ରେ ପଗ୍ରରିଲେ । ଡାଙ୍କର ଏହି ପ୍ରଶ୍ନ ଭିତରେ ଥିଲା ଅଶଙ୍କା ଓ ବ୍ୟଗ୍ରତାର ଗୋଟାଏ ସୂକ୍ଷ୍ମ ସୂଚନା ।

ଭାଙ୍ଗାଳଟି କହିଲା, 'ବଡ଼ ବଜାରରୁ ଭିକମାଗି ଭାପୁର ବାଟେ ଫେରୁଥିଲି । ଦେଖିଲି ବ.ସ୍‌ଷ୍ଟ୍ ପାଖ ଟିଣ ଘରର ଗୋଟାଏ କୋଣରେ ପଡ଼ିଛି ଗୋଟାଏ ଲୋକ । ପାଖକୁ ଯାଇ ଦେଖିଲି-ଘାନା । ଡାକିଲି ଘାନା, ଘାନା । ଖୁବ ଡାକରେ ଜବାବ ଦେଲା, ହୁଁ । ଉଠିଲା ନାହିଁ କି ହଲଚଲ ହେଲାନାହିଁ । ଅଜ ଗଡି ଯାଏ କି ନ ଯାଏ ।

ଲୋକଟି କଥା ଶୁଣୁ ଶୁଣୁ ବୁଢ଼ା ଚୂଲ୍ଲିରେ ଜଳୁଥିବା ନିଆଁ ଆଡ଼କୁ ଏକ ଦୃଷ୍ଟିରେ ଗୃହିଁ ଗୃହିଁ ଅନ୍ୟ ମନସ୍କ ଭାବରେ କହିଲା, ହୁଁ ।

ଅଜକୁ ୪.୫ ଦିନ ହେବ ବୁଢ଼ା ଭିକ ମାଗି ମାଗି ଗୋପାଳ-ପୁର ପର୍ଯ୍ୟନ୍ତ ଚାଲି ଯାଇଥିଲା । ସେହି ଦିନୁଁ ତାହାକୁ ସେ ଦେଖି ନାହିଁ ।

ଟୋକାଟାରେ ଥିବା ସବୁ କାଙ୍ଗାଳଗୁଡ଼ିକ ବୁଢ଼ାକୁ ମାନନ୍ତି, ବୁଢ଼ାକୁ ମାଷ୍ଟ୍ରେ ବୋଲି ଡାକନ୍ତି । କାଙ୍ଗାଳଙ୍କ ଭିତରେ ଥରେ ବୁଢାର ଗୋଟାଏ ଚହ୍ଲାଲୋକ ଅସିଥିଲା; ସେ ଯେ କୁଆଡ଼େ ଗଲା କି ମଲା, କିଏ ତାର ଖବର ରଖିଛି ? ସେହି ଲୋକଟି ବୁଢ଼ାର ଘର କଥା କହୁଥିଲା ।

ଗଞ୍ଜାମ ଜିଲା ସୀମାନ୍ତ ଦେହରେ ପୁରୀ ଜିଲାର ସରହଦ ଯେଉଁଠି ମିଶି ଯାଇଛି, ସେହି ଅଞ୍ଚଳର ଗୋଟାଏ ଗାଁରେ ବୁଢ଼ାର ଘର । ବୟସ ଥିଲା ବେଳେ ସେ ଅନେକ ବର୍ଷ ଧରି ଖଣ୍ଡେ ଗାଁ ଚାଟଶାଳୀରେ ପାଠ ପଢ଼ାଉଥିଲା । ସେହି ଦିନୁଁ ସମସ୍ତେ ତାକୁ ମାଷ୍ଟ୍ରେ ବୋଲି ଡାକନ୍ତି ।

ମାଷ୍ଟ୍ରଙ୍କ ଘରୁଗୁର ତିନୋଟା ପୁଅ ଥିଲେ; ତିନି ତିନୋଟା ବୋହୂ ଥିଲେ, ବଡ଼ ପୁଅର ଦୁଇଟି ପୁଅ, ଗୋଟିଏ ଝିଅ ଥିଲା, ହଳ ହଡ଼ା ଥିଲା, ବର୍ଷକ ଚଳିବା ମାପିକ ଚାଷବାସ ଥିଲା ।

ସେ ବର୍ଷ ଗାଁରେ ଲାଗିଲା ଭୀଷଣ ହଇଜା । ଘରକୁ ଘର ପଦା ହୋଇଗଲା । ବୁଢ଼ାର ତିନି ପୁଅ ଗଲେ, ଦୁଇ ବୋହୂ ଗଲେ, ବଡ଼ ନାତଟା ମଧ୍ୟ ଗଲା; ବଞ୍ଚିଲା କେବଳ ବିଧବା ସାନ ବୋହୂ ଅଉ ସାନ ସାନ ନାତି ନାତୁଣୀ ଦୁଇଟା । ବୋହୂଟି ବୁଢ଼ାକୁ ଫୁଟାଇ ଦିଏ, ନାତି ନାତୁଣୀଙ୍କୁ ଚଳାଏ । ଚାଷ କରିବ କିଏ ? ବୁଢ଼ା ହଳହଡ଼ା ବିକି ଦେଲା । ଯେଉଁ ବର୍ଷ ଜ୍ୱର ଭୋଗି ଭୋଗି ବୋହୂଟା ଅଉ ତା ସାଙ୍ଗେ ସାଙ୍ଗେ ନାତଟା ମଲା, ସେହି ବର୍ଷ ମଧ୍ୟ ଖଜଣା ବାକିରେ ବୁଢ଼ାର

ଜମିଜମା ନିଲାମ ହୋଇଗଲା । ବୁଢ଼ା ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ନାତୁଣୀଟାକୁ ପାଖକୁ ଟାଣି ଆଣିଲା । ଏହି ପିଲା ଖଣ୍ଡିକ ରହିଲା ଏତେ ବଡ଼ ସଂସାରରେ ତାର ସମ୍ବଳ । ଏହି ପିଲାଟି ଭିତରେ ଜଗି ରହିଲା ତାର ଲୁପ୍ତ ପ୍ରାୟ ସଂସାରର ସ୍ମୃତି ।

ଗାଁରେ ପୁଣି ବୁଢ଼ା ଚାହାଶାଳୀ ପିଟାଇଲା । ସେଥିରୁ ଯାହା ମିଳେ ସେଥିରେ ବୁଢାଟି ଆଉ ତାର ଚାର ବର୍ଷର ନାତୁଣୀଟି ବେଳାଏ ଖାଇ ବେଳାଏ ଉପାସ ରହି ଚଳି ଯାଉଥିଲେ ।

ତା ପରେ ଆସିଲା ଝଡ଼, ତାପରେ ଅକାଳ ଦୁର୍ଭିକ୍ଷ, ଝଡ଼ରେ ବୁଢାର ଘର ଭାଙ୍ଗିଗଲା; ତା ତଳେ ପଡ଼ି ନାତୁଣୀଟି ମଲା । ତା ଜୀବନର ଶେଷ ଦୀପଶିଖାଟି ଲିଭିଗଲା । ସଂସାରର ସବୁ ସମ୍ପର୍କ ସରିଲା । ବୁଢା କିଛି ଦିନ ମାଟି କାମୁଡ଼ି ଗାଁରେ ପଡ଼ି ରହିଲା । ତା' ପରେ ଆସିଲା ନିର୍ମମ ଅନ୍ନାଭାବ । ଓଡ଼ିଶାର ହଜାର ହଜାର ଲୋକଙ୍କ ପରି ବୁଢ଼ାକୁ ମଧ୍ୟ ଦାଣ୍ଡର କାଙ୍ଗାଳରେ ପରିଣତ କଲା ।

ବୁଢା ଭିକମାଗି ବୁଲେ । ଯେଉଁ ଦିନ ମିଳେ ସେ ଦିନ ଖାଏ । ଯେଉଁ ଦିନ ନ ମିଳେ ସବୁ କାଙ୍ଗାଳଙ୍କ ପରି ସେ ଦିନ ସେ ମୁହିଁ ବୁଜି ପଡ଼ିରହେ; କିନ୍ତୁ ସବୁବେଳେ ତା ଛାତି ଭିତରେ ଜୀଇଁ ରହିଥାଏ ଗୋଟାଏ ବିରାଟ କ୍ଷୁଧା, ଗୋଟାଏ ତୀବ୍ର ହାହାକାର । କାଙ୍ଗାଳ ପିଲାଗୁଡ଼ିକୁ ଦେଖିଲେ ସେ ଚାହିଁ ରହେ—ସେହିମାନଙ୍କ ଭିତରେ ଯେପରି କି ସେ ତାର ହଜି ଯାଇଥିବା ଆପଣା ଲୋକ ଗୁଡ଼ିକୁ ଖୋଜୁଛି । ସେ ତା ପାଖରେ ଥିବା କାଙ୍ଗାଳ ଗୁଡ଼ିକର ସେ ଖବର ନିଏ; ସେମାନଙ୍କର ଘର କେଉଁଠି, ସେମାନଙ୍କର ଅଛି, କିଏ ସେମାନେ ଥିଲେ କେମିତି—ଏସବୁ କଥା ପଚାରେ; ଆଉ ସେମାନଙ୍କ ଭିତରୁ ଯେ ପଡ଼ିଗଲା, ଯେ ଅକ୍ଷମ ହୋଇଗଲା; ଯେ ମରଣ ଦ୍ୱାରରେ

ପଡ଼ିଗଲା, ତା ପାଇଁ ବୁଢ଼ାର ଖାଇବା ହାଣ୍ଡିରୁ ମୁଠାଏ ଭାତ, ମୁହଁରୁ ପଦେ କଥା ସବୁବେଳେ ଥାଏ । ବୁଢ଼ା ମନେକରେ ଏ କାଙ୍ଗାଳ ଗୁଡ଼ିକ ଯେପରି ତାର ଅପଣାର, ତା ଘର ପାଖରେ ଥିବା ସବୁ ଛୋକିଲା ଯାକ ,ଯେପରି ଗୋଟାଏ ପରିବାରର ଲୋକ ଏହି ମହାମାରୀରେ କେତେ ପିଲା ତାରି କୋଳରେ ଶେଷ ନିଃଶ୍ୱାସ ଛାଡ଼ିଛନ୍ତି, କେତେ ଲୋକ ତାରି ମୁହଁକୁ ଚାହିଁ ଚାହିଁ ଆଖି ବୁଜିଛନ୍ତି । ବୁଡା ତାର ହିସାବ ରଖି ନାହିଁ; କିନ୍ତୁ ମୃତ୍ୟୁର ବେଦନା ସହିତ ତାର ଘନିଷ୍ଠ ପରିଚୟ, ଶେଷ ମୁହୂର୍ତ୍ତ ସହିତ ତାର ଏକ ପ୍ରକାର ଅସ୍ମୀଭୂତା ହୋଇ ଯାଉଛି; ସେଥିପାଇଁ ଜୀବନ୍ତ ପ୍ରତି ତାର ମାୟା, ମମତା ଓ ସମବେଦନାର ସୀମା ନ ଥାଏ ।

ଲଞ୍ଜିପଲ୍ଲୀ ଟୋଳରେ ବୁଢା ରହିବା ଦିନଠାରୁ ତାର ଏକ ନୂଆ ସଂସାର ସୃଷ୍ଟି ହୋଇଛି । ବୁଢା ସହର ଭିତରୁ ବୁଲି ବୁଲି ଭିକ ମାଗି ଅଣେ । ତାର ଗୁଡ଼ିଆ ଦୋକାନଗୁଡ଼ାକ ପ୍ରତି ବେଶି ଦୃଷ୍ଟି, କେଉଁଠୁ ଦିଟା ପକୋଡ଼ି, କେଉଁଠୁ ମୁଠାଏ ଭୁଜୁଡ଼ା, କେଉଁଠୁ ଖଣ୍ଡେ ଗଜା ସଂଗ୍ରହ କରିବାରେ ତାର ବେଶି ତତ୍ପରତା । ଯାହା ଯୋଗାଡ଼ ପାଏ, ତାହା ଫୁଟାଏ— ନିଜେ କିଛି ଖାଏ —ଅଳ୍ପ ସେଦିନ ଯାହାକୁ ଭିକ ନ ମିଳେ ଯେ ଅକ୍ଷମ ହେବାରୁ ଭିକ ମାଗି ଯାଇ ପାରିନାହିଁ, ଏପରି ଲୋକ ଦେଖି ମୁଠାଏ ମୁଠାଏ ଦିଏ । ବୁଢ଼ା ଟୋଳାକୁ ଫେରିବା ସଙ୍ଗେ ସଙ୍ଗେ ତା ଘର ପାଖରେ ହାଡ଼ ଚମ ବାକୀ ରହିଥିବା ମଣିଷ ପିଲା ଗୁଡ଼ିକର ଭିଡ଼ ଲାଗିଯାଏ, ବୁଢ଼ା କାହା ହାତରେ ଦିଏ ଖଣ୍ଡେ ପକୋଡ଼ି, କାହା ହାତରେ ଅଧ ଖଣ୍ଡେ ଗଜା; କାହା ହାତରେ ବା ଦୁଇଟା ଭୁଜୁଡ଼ା । ପିଲା ଗୁଡ଼ିକ ସେ ସବୁକୁ ଧରି ଗିଳି ପକାନ୍ତି । ବୁଢ଼ା ଏକ ଦୃଷ୍ଟିରେ ସେମାନଙ୍କୁ ଚାହିଁ ରହିଥାଏ ।

ସତରେ ଦୁଇ ସ୍ତ୍ରୀବନ୍ଧୁ ବାଙ୍ଗାଲ ବୁଢ଼ାର ଶୋଇବା ସ୍ଥାନ ପାଖକୁ ଆସି ବସନ୍ତି, ବୁଢ଼ାଙ୍କ ସହିତ ଗଳ୍ପ ଆରମ୍ଭ କରନ୍ତି । ବଡ଼ ବଜାରର ଜଣେ ପାନଦୋକାନୀ, ସେ ନିତି ଖବର କାଗଜ ପଢ଼େ, ବୁଢ଼ା ତା'ର ଦୋକାନରେ ବସି ପଢ଼ୁଥିବା ସବୁ ଖବର ଶୁଣି ଆସେ । ଏହି ବାଙ୍ଗାଲମାନଙ୍କର ଏ ଅବସ୍ଥା ପାଇଁ ଦାୟୀ କିଏ, ବୁଢ଼ା ସେ କଥା ମନେ ମନେ ଠିକ୍ କରି ନେଇଛି । ତା ମନ କଥା ସମୟ ସମୟରେ ସେ ବାଙ୍ଗାଲମାନଙ୍କୁ କହେ ।

ସେ ଦିନ ମୂଳିଆ ବାଙ୍ଗାଲ ବୁଢ଼ାଙ୍କୁ କହିଲା, ଗାଁଆ ଗଲା, ଗଣ୍ଡା ଗଲା; ଘର ଗଲା ଦ୍ୱାର ଗଲା; ପିଲା କବିଲା ବାଟ କଡ଼ରେ ପଡ଼ି ମଲେ । ଏମିତି ଘଟଣା କେତେଦିନ ଲାଗିଥିବ ? ଆମର ଭାଗ୍ୟ କଅଣ ଆଉ ଫେରିବ ନାହିଁ ମାଷ୍ଟ୍ରେ ?

ମାଷ୍ଟ୍ରେ ଛୁଣ୍ଡା କନାରେ ଗଣ୍ଠି ପକାଇ ପକାଇ କହିଲେ, ଫେରିବ ଫେରିବ—ତୁ ଯେତେବେଳେ ମରିବୁ ସେତେବେଳେ ତୋ ଭାଗ୍ୟ ଫେରିବ । ବଞ୍ଚିଲେ ନୁହେଁ—ବଞ୍ଚିଲେ ନୁହେଁ । ଆରେ ତୋ ବଞ୍ଚିବାଟା ବନ୍ଧରେ ଖୁବ ବଡ଼ ବଡ଼ ଲୋକେ ଲାଗ ପଡ଼ିଛନ୍ତି- ଖୁବ ବଡ଼ ବଡ ଲୋକେ ତୋ ତଣ୍ଟି ଚିପି ତୋ ମୁହଁରୁ ଖାଇବା ଗଣ୍ଡାକ କାଢି ନେଉଛନ୍ତି । ତେବେ, ତୁ ରହିଥିବୁ—ଏମିତି ଜଳ ଜଳ କରି ରହିଥିବୁ । ସେମାନେ ନେଉଥିବେ, ବାଣ୍ଟୁଥିବେ ବଳିଲେ ଫିଙ୍ଗୁଥିବେ । ତାଙ୍କ ଇଚ୍ଛା, ତାଙ୍କ ଖୁସି, ତାଙ୍କ ମନ । ତୁ କିଏ ? ତୁ ବଞ୍ଚିବୁ କାହିଁକି ?

ବୁଢ଼ା ତୁନୀ ହୋଇଗଲା ।

ମୂଳିଆ କିଛି ବୁଝି ପାରିଲା ନାହିଁ । ସେ ଜାଣେ ବୁଢ଼ା ଅନେକ ସମୟରେ ବାୟାପରି ବକେ, ସେମିତି ବକୁଛି । ସେ ଦେଖୁଛି ବୁଢ଼ା

ବଡ଼ ବଜାରର ସେ ପାନ ଦୋକାନ ପାଖରେ ଛିଡ଼ା ହୋଇ ସେଦିନ ଖବର କାଗଜ ଶୁଣି ଥିଲା ! ବୁଢ଼ା ତ କଣ ଏମିତି ବକିଲା । ମୂଳଅ ଟିକଏ ରହିଯାଇ ପୁଣି କହିଲା, ଆମେ ଖାଇବାକୁ ନ ପାଇ କଣ ଏମିତି ମରୁଥିବା ।

ମାଷ୍ଟ୍ରେ ଛିଣ୍ଡାକନାକୁ ସଜାଡ଼ୁ ସଜାଡ଼ କହିଲେ, 'ହଁ ମରୁଥିବ, ଅଲବତ୍ ମରୁଥିବ, ମରିବାକୁ ବାଧ୍ୟ । ତମ ବାପ ଏମିତି ମରିଛନ୍ତି, ଗୋସାଇଁ ବାପ ମରିଛନ୍ତି, ତମର ପିଲା କବିଲା ସେମିତି ମଲେ—ତମେ ମରିବ । ତମେ ? ତମେ କିଏ ହୋ ତମେ ଖାଇବାକୁ ପାଇବ ? ତମର ବଳ ଅଛି; ତମର ଜୋର ଅଛି, ତମର ଛାତିରେ ସାହସ ଅଛି ? ତମ ମୁହଁର ଭାତ ମୁଠାକ ସେମାନେ ଯେମିତି କାଢ଼ି ନେଉଛନ୍ତି, ସେମିତି ତମେ ତାଙ୍କ ହାତମୁଠାରୁ ତାହା ଛଡ଼ାଇ ଆଣି ପାରିବ ? ନା, ପାରିବ ନାହିଁ—ସେ କଥା ତମ ଦହାତ ହେବନାହିଁ । ତମେ ଗରିବ, ଅଲବତ୍ ମରିବ । ନ ଖାଇ ମରିବାକୁ ଜନ୍ମ ହୋଇଛ; ମରିବ ନାହିଁ ?

ସେତେବେଳକୁ ଦୁଇ ତିନି ଜଣ କାଙ୍ଗାଳ ବୁଢ଼ା ପାଖରେ ଆସି ପହଞ୍ଚି ଯାଇଥିଲେ । ସେମାନଙ୍କ ଭିତରୁ ଜଣେ କହିଲା; ମାଷ୍ଟ୍ରେ କଣ ଖବର ଆସିଛି ?

'ହଁ ଆସିଛି, ଖବର ଆସିଛି । ଖବର ଆସିଛି, ଯାହାର ଧନ ଅଛି, ଯାହାର ବଳ ଅଛି, ସେ ତମର ତଣ୍ଟି ଉପରେ ଅଜୁରି ଦମ୍ଭରେ ଛିଡ଼ା ହେବେ, ତମର ଏହି ଛାତିର ପିଞ୍ଜରା ହାଡ଼ ତିନି ଖଣ୍ଡ ଉପରେ ନାଚିବେ । ତୁମେ ରକ୍ତ ବାନ୍ତିକରିବ—ମରିବ, ଆଉ ସେମାନେ ତମର ମଲା ମୁର୍ଦ୍ଦାର ଉପରେ ବସି ମଉଜ କରିବେ, ବୁଝିଲ ।'

ସେତେବେଳକୁ ବୁଢ଼ା ମୂଳିଆ ମୁହଁକୁ ଗୁହିଁ ରହିଛି; ଏକାବଡ଼ ଭିତରେ ପଶି ରହିଥିବା ତା ଆଖି ଦୁଇଟାରୁ ଯେପରି କି ନିଆଁ ବାହାରି ପଡ଼ୁଛି । ମୂଳିଆ ତା ଆଡ଼କୁ ଗୁହିଁ ଡରିଗଲା ।

ବୁଢ଼ା ନିଜ ମନକୁ ନିଜେ କହିଲା ପରି କହି ଗୁଲିଲା, ହୁଁ ସେମାନେ ତମ ଗ୍ରଣ୍ଡ ଉପରେ ନାଚିବେ— ନାଚିଛନ୍ତି – ନାଚି ଆସିଛନ୍ତି— ତମେ ? ତମେ ଗୁଷ୍ଡ଼ା କିଏ ? ତମକୁ ପଗ୍ଟରେ କିଏ ? ତମେ ମୂଳିଆ ଗୁଷ୍ଡ଼ା । ତମେ ଗୁଷ କରି ଫସଲ୍ କର; ଖାଏ କିଏ ? ତମେ ? ନା ନା; ଖାଇବାବାଲା ତମେ ନୁହଁ, ଖାଇବାବାଲା ଡକାଇତ, ଚୋର, ପାଜି—ଯେ ତୁମଠାରୁ କଳେ ବଳେ କୌଶଳେ ଫସଲ୍ ଛଡ଼ାଇ ନିଏ, ଆଉ ତମେ ଭୋକିଲା ରହି ଶୁଖି ଶୁଖି ମର; ଆଜ ଯେମିତ ଝିଙ୍ଗିଆ ପୋକପରି ମରୁଛ ସେମିତ ମର । ମୂଳିଆ ନିଜ ଦେହର ରକ୍ତକୁ ଝାଳକରି ଢୋଠା ଗଢ଼େ, ଦୋତାଲା ଗଢ଼େ; —ରହେ କିଏ ? ରହିବାବାଲା ସେହି ଡକାଇତ, ଚୋର, ଦଗାବାଜ । ଆଉ ମୂଳିଆ ଭଗୁରୀର କୁଡ଼ିଆ ଖଣ୍ଡିଏ ମଧ୍ୟ ରହେ ନାହିଁ; ସେ ବାଟ କଡ଼ରେ ଥିବା ଗଛତଳେ ପଡ଼ି ମରେ—ଆଜ ମରୁଛି । ତମେ ମରିବ ନାହିଁ—ତମେ ସାଦା ସିଧା ଲୋକ, ଡକାଇତ କରିବାକୁ ତମର ବଳନାହିଁ, ଚୋରି କରିବାକୁ ତମର ଡର ଅଛି, ଦଗାବାଜ କରିବାଟାକୁ ତମେ ଘୃଣାକର; ତମେ ମରିବ ନାହିଁ, ମରିବ କିଏ ?

ମୂଳିଆ ମନେ କଲା ବୁଢ଼ାର ମୁଣ୍ଡ ଆଜ ବେଶି ଖରାପ ହୋଇଛି, ସେ ସେଠୁ ଉଠି ପଳାଇଲା । ପାଖ ଗଛତଳେ ମାଆ ପାଖରେ ଶୋଇଥିବା ଗୋଟାଏ କାଙ୍ଗାଳପିଲା ବୁଢ଼ା ପାଟିରେ ନିଦରୁ ଉଠି ଅଖି ମଳି ମଳି ତା ପାଖରେ ଆସି ପହଞ୍ଚିଲା । ବୁଢ଼ା ତାକୁ ଡ଼ାକି ନେଇ ନିଜ ପାଖରେ ବସାଇ ତାର ନୁଖୁରି ମୁଣ୍ଡଟାକୁ

ଅଙ୍ଗିଷ ଦେଉ ଦେଉ କହୁଲା, 'ଏହୁ ମରଣ, ଏହି ମଡ଼କ, ଏହି ମଣିଷ ମରୁଡ଼ି—ଏହାର ଭିତରେ ରହିଛି ତମର ଜୀଇବାର ମନ୍ତ୍ର । ଏହାର ଭିତରେ ରହିଛି ଏ ରୋଗର ମହୋଷଧି । ତମେ ମର, ଯେତେ ପାରୁଛ ସେତେ ମର କ୍ଷତି ନାହିଁ, ଖାଲି ଜାଣିରଖ ତମେ ହେଉଛ ଦେଶର ଶହକେ ୯୯ ଜଣ । ତମ ଭିତରୁ ସମସ୍ତେ ଅନ୍ନର କାଙ୍ଗାଳ; କିଏ ବର୍ଷରେ ମାସେ, କିଏ ଦୁଇ ମାସ, କିଏ ଛ ମାସର କାଙ୍ଗାଳ, ପ୍ରଭେଦ ଏତିକି । କାଙ୍ଗାଳ ସମସ୍ତେ କିନ୍ତୁ କାଙ୍ଗାଳ ହୋଇଯିବା ଡର ସମସ୍ତଙ୍କର । ସେଇଥିପାଇଁ କାଙ୍ଗାଳମାନଙ୍କ ଭିତରେ ମାଡ ପିଟା । ବଳୁଆ କାଙ୍ଗାଳ ଦୁର୍ବଳଆ କାଙ୍ଗାଳଠାରୁ ମୁହଁର ଗ୍ରାସ ଛଡ଼ାଇ ନେବାକୁ ଚେଷ୍ଟା କରୁଛି; ଦୁହିଁଙ୍କ ଭିତରେ ମାରପିଟ ଲାଗିଛି; ଦୁହେଁ ଦୁର୍ବଳ ହୋଇ ପଡୁଛନ୍ତି; ଆଉ ଶାଗୁଣା ଦିଏ ଉପରେ ବସିଛି ଧନୀ—ସେ ଦୁହିଙ୍କ ମାଂସ ଖାଉଛି । ତମେ ଗୁଡ଼ାକ ମୂର୍ଖ, ତମେ ଗୁଡ଼ାକ ବୋକା, ତମେ ଗୁଡ଼ାକ ବୁଦ୍ଧିହୀନ । ଏ ସବୁ ଦେଖୁଛ, ଜଳକା ପରି ଗୃହିଁ ରହୁଛ । କିଛି ବୁଝି ପାରୁନା; ବୁଢ଼ା ହେଲିଣି, ଦେହରେ ରକ୍ତ ନାହିଁ । ତମ ଶୁଖି ଶୁଖୁଆ ହୋଇ ଗଲିଣି; ତଥାପି ଏ ସବୁ ଦେଖି ଦେଖି ମୋର ହାଡ଼ ଗୁଡ଼ାକ କଡ଼ କଡ଼ ହୋଉ ଦିଏ, ଛାତି ଭିତରୁ କିଏ ଗୋଟାଏ ହୁଙ୍କାର ମାରେ; ଅଙ୍ଗୁଳିର ହାଡଗୁଡ଼ାକ ମୁଠା ହୋଇ ଯାଏ ।'

ବୁଢ଼ା ତୁନି ହୋଇଗଲା, ତା ପାଖରେ ବସିଥିବା କାଙ୍ଗାଳ-ମାନେ ମନେକଲେ ବୁଢ଼ାଟାର ମୁଣ୍ଡ ଆଜି ବେଶି ଗରମ ହୋଇ ଯାଇଛି; ସେଇଥିପାଇଁ ସେ ବେଶି ବକୁଛି ।

ବୁଢ଼ା ତାକୁ ଆଉଜି ବସିଥିବା ପିଲାଟାର ଛାତି ହାଡ଼ ଉପରେ ହାତ ବୁଲାଇ ବୁଲାଇ କହି ଗୃଲିଲା, 'ପିଲାର ଏହି ଛାତିହାଡ

ଗୁଡ଼ାକ ଏ ଅନ୍ୟାୟ ସମ୍ବନ୍ଧରେ ଡ଼ାକ ଛାଡ଼ୁଛି; ଏ ଅତ୍ୟାଚାରର ପ୍ରତିକାର ପାଇଁ ଦାବୀ କରୁଛି । ଏହାର ପ୍ରତିକାର ହେବ; ଏହି କାଙ୍ଗାଳ-ମାନେ ଏହାର ପ୍ରତିକାର କରିବେ । ଏମାନଙ୍କର ରକ୍ତ ଶୋଷିକରି ଯେଉଁମାନେ ମୋଟା ହୋଇଛନ୍ତି, ସେମାନଙ୍କ ରକ୍ତ ସ୍ରୋତ ସ୍ରୋତ ଶୁଖି ଯିବ, ଏମାନଙ୍କ ଘର ଭାଙ୍ଗି ନେଇ, ଯେଉଁମାନେ ପକା ତୋଳିଛନ୍ତି ସେମାନଙ୍କ ଘର ଚୂନା ହୋଇଯିବ । ବୈଶାଖ ମାସର ବଣ—ନିଆଁ ପରି ପୃଥିବୀଟା ଉପରେ ନିଆଁର ଲହରୀ ଧାଇଁ ବୁଲିବ, ଆଜି ତା ଭିତରେ ଆନନ୍ଦରେ ତାଳମାରି ନାଚ କରିବେ—ଏମିତି ପିଲା । ହେଇ ସିଦ୍ଧିଆ, ଟିକିଏ ନାଚ—ଅରେ ଟିକିଏ ଭଲ ନାଚେ ।'

ବୁଢ଼ାକୁ ଅଜଗ୍ଭ ବସିଥିବା ପିଲାଟା କହିଲା, 'ହଁ,'—
'ଅରେ ଉଠ, ଟିକିଏ ଠିଆ ହ, ଟିକିଏ ନାଚ ।'
'ନାହିଁ ମାଷ୍ଟ୍ରେ, ନିଦ ଲାଗୁଛି ।'

'ହଉ, ହଉ, ଶୁଅ, ମୋତେ ଅଜଗ୍ଭ ଶୋଇପଡ । ଶୁଅ, ଶୁଅ; ମୁଁ ମଧ୍ୟ ସେତେବେଳକୁ ଶୋଇ ପଡ଼ିଥିବି—ମହାମଉଜରେ, ମହା ଆନନ୍ଦରେ, ସେ ନିଦରୁ ଉଠିବା କଥା ନାହିଁ—ବୁଝିଲୁ । ଦୁଃଖ ରହିଲା ଏତିକି, କାଙ୍ଗାଳ ପିଲାଙ୍କ ଖୁସି ନାଚ ଦେଖି ପାରିବି ନାହିଁ, କାଙ୍ଗାଳମାନେ ଯେତେବେଳେ ତାଙ୍କ ହାଡ଼ୁଆ ହାତରେ ନୂଆ କରି ଦୁନିଆକୁ ଗଢିବେ, ସଜାଇବେ, ତାହା ଦେଖିବା ପାଇଁ ମୁଁ ନ ଥିବି । ହଉ, ଶୁଅ – ମୋର ପାଖରେ ଶୁଅ ।'

ବୁଢ଼ା ତଳେ ବିଛାହୋଇଥିବା ଛିଣ୍ଡା ଅଖା ଉପରେ ଗଡ଼ି ପଡିଲା, ପିଲାଟି ତାର ପାଖରେ ଶୋଇଲା ।

———

## ଏକୋଇଶ

ବୁଢ଼ା ଭିକ ମାଗେ, ଖାଏ, ଶୁଏ, ନିଜ ମନକୁ ମନ ବକେ —ଏମିତି ଚାଲୁଥିଲା, ଲକ୍ଷ୍ମୀପକ୍ଷୀ ଛୋଟାର ସେ ଗଛଟା ମୂଳରେ ଧାନା ଆସି ପଡ଼ିବା ଦିନରୁ ବୁଢ଼ାର ଆଉ ଗୋଟାଏ ଢଙ୍ଗ ଦେଖା ଦେଲା । ସବୁ କାଙ୍ଗାଳକୁ ବୁଢ଼ା ନିଜର ଲୋକପରି ଦେଖେ; କିନ୍ତୁ ଧାନା ପାଇଁ ତା ହୃଦୟରେ ଯେପରି କି ଗୋଟାଏ ଅଲଗା ସ୍ଥାନ ଥିଲା । ବୁଢ଼ାର ବଡ଼ପୁଅର ଚେହେରାର ଗୋଟାଏ ଡାଞ୍ଚା ଧାନାର ଚେହେରାରେ ଥିଲା,—ସେମିତି ପୃଥିବୀର ଅନେକ ଲୋକଙ୍କ ଚେହେରାର ଢଙ୍ଗ ଆଉ ଅନେକ ଲୋକଙ୍କ ଭିତରେ ଥାଏ; କିନ୍ତୁ ବୁଢ଼ା ତାର ଭିତରେ ତାର ହଜି ଯାଇଥିବା ଅତୀତର ଗୋଟାଏ ସ୍ପର୍ଶ ଅନୁଭବ କରୁଥିଲା । ସେଥିପାଇଁ ସହସ୍ର କାଙ୍ଗାଳ ଭିତରେ ବୁଢ଼ା ଧାନାକୁ ଆପଣାର ଲୋକ ବୋଲି ମନେ ମନେ ଧରି ନେଇଥିଲା । ତେଣୁ ବ୍ରହ୍ମପୁରର ବଡ଼ବଜାର ଠାରେ ଭିକମାଗି ଗ୍ରାମପୁର ବାଟେ ଫେରିଥିବା କାଙ୍ଗାଳଟି କଥା ଚୁଲ୍ଲୀ ପାଖରେ ଶୁଣୁ ଶୁଣୁ ବୁଢ଼ା ଅନ୍ୟମନସ୍କ ଭାବରେ କହିଲା—'ହୁଁ' ! !

ବୁଢ଼ା ପାଟିରୁ ଆଉ କଥା ବାହାରିଲା ନାହିଁ । ସାଉଣ୍ଟି ଆଣିଥିବା ଶୁଖିଲା ଡାଙ୍ଗିରୁ ଖଣ୍ଡେ ଖଣ୍ଡେ କରି ଚୁଲ୍ଲୀରେ ମୁହାଁଇବାରେ ସେ ଲାଗିପଡ଼ିଲା ।

ଆଉ ଗୋଟାଏ କାଙ୍ଗାଳ ଆସିଲା ବୁଢ଼ା ପାଖକୁ । କହିଲା, 'ମାଉସ୍ତ୍ରେ, କାଲି ସକାଳୁ ମୁଁ ଇଚ୍ଛାପୁର ଆଡ଼କୁ ଯାଉଛି ।'

ଅନ୍ୟ ଦିନ ହୋଇଥିଲେ ବୁଢ଼ା ତାଙ୍କୁ ଅନେକ କଥା କହିଥାନ୍ତା । ଆଜି ତା କଥା ଶୁଣି ସେ କେବଳ କହିଲା, 'ହୁଁ, ଆଉ ଜଳନ୍ତା ଚକ୍ଷୁ ଅଡ଼କୁ ଗୃହିଁ ରହିଲା ।

ବାଙ୍ଗାଲି ପିଲାଟିଏ ଆସିଲା, ଡାକିଲା, 'ମାଷ୍ଟ୍ରେ, ମାଷ୍ଟ୍ରେ, ବୁଢ଼ା କହିଲା, ହୁଁ ।'

ତାପରେ ଚୁପ୍, ତାପରେ ଆଉ କିଛି କଥା ନାହିଁ ।

ମାଷ୍ଟ୍ରେ ସବୁଦିନେ ସବୁପିଲାଙ୍କୁ ଆଦର କରନ୍ତି । ପାଖକୁ ଡାକି ନେଇ ବସାନ୍ତି । ସେମାନଙ୍କ ସଙ୍ଗରେ ଗଳ୍ପ କରନ୍ତି । ଏ ପିଲାଟି ମଧ୍ୟ ସବୁଦିନେ ବୁଢ଼ାଠାରୁ ଆଦର ଯତ୍ନ ପାଏ । ୧୦।୧୫ ଦିନକାଳ ବୁଢ଼ା ଏଠି ନଥିଲା; ଆଜି ଆସିଛି । ସେ ତା ପାଖକୁ ଆସିଲା, ତାଙ୍କୁ ଡାକିଲା, ବୁଢ଼ା ତାଙ୍କୁ କିଛି କହିଲା ନାହିଁ । ପିଲାଟି କେତେ-କେଳ ଯାଏ ସେଠାରେ ଛିଡ଼ାହୋଇ ରହିଲା । ତା ପରେ ଅଭିମାନରେ ଫେରିଗଲା ଆଉ ଗୋଟାଏ ଗଛମୂଳେ ବସିଥିବା ତା ବୋଉ ପାଖକୁ; ତା ପାଖରେ କାନ୍ଦପକାଇଲା ।

ବୁଢ଼ା ମନ ଭିତରେ ବଢୁଥିଲା ଗୋଟାଏ ଝଡ଼ ; ଯାନା— ଯାନା ତାର କେହି ନୁହେଁ । ଲକ୍ଷ ଲକ୍ଷ ବାଙ୍ଗାଲି ପରି ସେ ମଧ୍ୟ ଗୋଟାଏ ବାଙ୍ଗାଲି । ସେ ପଡ଼ିଛି, ସେ ମରିଯିବ, ଏ କଥାରେ ତା-ମନ ଭିତରଟାରେ ଏମିତି ଲେଉଟ ପାଲଟ ଲାଗିଛି ତାଙ୍କର ? ବାଙ୍ଗାଲି ମରିବା ପଡ଼ିବା କିଛି ଗୋଟାଏ ନଆକଥା ନୁହେଁ । ତାହାର ଆଖି ଆଗରେ ଶହ ଶହ ବାଙ୍ଗାଲି ମରିଛନ୍ତି, ଏଇ ବ୍ରହ୍ମପୁରରେ, ଏହି ତୋଟାରେ କେତେ ମରିଛନ୍ତି । ଗୋପାଳପୁର ଠାରୁ ବ୍ରହ୍ମପୁରକୁ ଫେରୁ ଫେରୁ ସେ ଦେଖିଥିଲା; ଗୋଟାଏ ତୋଟା କଡ଼ରେ ଗୋଟାଏ ବାଙ୍ଗାଳିର ଶବ ପଡ଼ିଥିଲା । ତାଙ୍କୁ ବଳିଆ ଶାଗୁଣା ଖାଉଥିଲେ ।

ଅଉ କିଛି ଦୂର ନାଲି ଠାଙ୍ଗର ଭୂଇଁରେ ଥିବା ଏକୁଟିଆ ଗଛମୂଳେ ଅଉ ଗୋଟାଏ କାଙ୍ଗାଳ ଗଛକୁ ଅଉଜି ମରି ଯାଇଥିଲା । ତାପାଖରେ ଗୋଟାଏ କୁକୁର ବୁଲୁଥିଲା । ଏ ସବୁ ସେ ଅନେକ ଦେଖିଛି । କେତେ ମୁମୂର୍ଷୁ କାଙ୍ଗାଳ ମୁହଁରେ ସେ ଶେଷ ଢୋକ ପାଣି ଦେଇଛି । କାହିଁ, କାହାରି ପାଇଁ ତ ତା ମନ ଏମିତ ହୁଏ ନାହିଁ ? କାହିଁକି ବା ହେବ ? ବୁଢ଼ା ତ ଭଲରୂପେ ଜାଣେ, ବଞ୍ଚିବା ଏମାନଙ୍କ ପକ୍ଷରେ ଅତି ଅସ୍ୱାଭାବିକ ବିଷୟ—ମରିବାଟା ନୁହେଁ, ବରଂ ମରିବାଟା ଏମାନଙ୍କ ପାଇଁ ଅତି ନିଶ୍ଚିତ ଘଟଣା । ଏମାନଙ୍କର ବଞ୍ଚିବାର ଅଧିକାର ଅଛି । ଏ କଥା ମାନି ନେବାକୁ କେହି ରାଜି ନୁହନ୍ତି । ଏମାନେ ବଞ୍ଚନ୍ତୁ ଏ କଥା ଭାବିବାଟା ଦୁନିଆରେ ଯେ କାହାରି କାମ ଏପରି ତ ଜଣାଯାଉ ନାହିଁ । ତେବେ ସେ ଧାନାକଥା କାହିଁକି ଭାବୁଛି ? ଧାନା ବଞ୍ଚିଲେ କେତେ ନ ବଞ୍ଚିଲେ ବା କେତେ?

ସେ ବିରକ୍ତ ହୋଇ ପାଖରେ ପଡ଼ିଥିବା ଛିଣ୍ଡା କନା ଖଣ୍ଡକୁ ଦୂରକୁ ପକାଇ ଦେଲା, ଚୁଲ୍ଲୀଟା ଲଗାଇ ଦେଇ ଚୁପ ହୋଇ ବସିପଡ଼ିଲା । ସେତେବେଳକୁ ଚୁଲ୍ଲୀ ଉପରେ ବସିଥିବା ହାଣ୍ଡିରେ ଗୁଳିଆ ଗଣ୍ଡାକ ଜାଉ ହୋଇ ସାରିଥିଲା ।

ବୁଢ଼ା ଖାଇବା ପାଇଁ କିଛି ଉଦ୍ୟମ କଲାନାହିଁ । ଗତ କାଲି ଏତିକିବେଳେ ମୁଠାଏ ଚୂଡ଼ା ଖାଇ ସେ ପାଣି ପିଇଥିଲା । ଚୁଲ୍ଲୀ ଲଗାଇଲାବେଳେ ସେ ଭାବିଥିଲା, ଚଞ୍ଚଳ ମୁଠାଏ ଖାଇ ଶୋଇ ପଡ଼ିବ, ଗୋଡ଼ ଦୁଇଟା ବିନ୍ଧୁଥିଲା; କିନ୍ତୁ କେଜାଣି କେମିତି ସବୁକଥା ଲେଉଟ ପାଉଟ ହୋଇଗଲା ।

ଫେରି ସେହି ଧାନା ? ସେ କିଏ ? ସେ ମଲେ ତାରି କ୍ଷତି କଅଣ ? ତା ପୁଅ ମରିଥିଲା । ହଁ, ହଁ, ତା ପୁଅ ତା ବଡ଼ ପୁଅ ଯେ ଜନ୍ମ ହେଲାବେଳେ ତା ଘରେ ଆନନ୍ଦ ଉତ୍ସବ ଲାଗିଥିଲା; ଯାହାର

ଏହୋଉଣା ଦିନ ସେ ବାହାବୁଢ଼ା ,ଶିଉଣୀ କରିଥିଲା, ଠିଅ ପାଲି କରିଥିଲା । ସେହି ପୁଅ ସେଉଛା ଧାନା ପଢିଥିଲା, ନା ? ଧାନାକୁ ଦେଖିଲେ ସେ ଟୋକାଟା କଥା ତାହାଙ୍କ କେଜାଣେ ମନେ ପଡ଼ି-ଯାଏ; ଅଉ ତା ସଙ୍ଗରେ ମନେ ପଡଯାଏ ଅନେକ ଦିନର ଅନେକ ପୁରୁଣା କଥା —ତା ଘର, ତା ସ୍ତ୍ରୀ, ତା ପୁଅ, ବୋହୂ, ନାତିନାତୁଣୀ ତା ହଳ ହଡ଼ା, ତା ଗୃହ ଜମି । ଏଗୁଡ଼ାକ ଅଜି ସ୍ୱପ୍ନର କଥା । ଧାନାକୁ ଦେଖିଲେ ତାଙ୍କ କେଜାଣେ ଏ ସ୍ୱପ୍ନଗୁଡ଼ାକ ବେଳେବେଳେ ତା ମନରେ ଡେଇଁ ଉଠେ । ସେଇଥିପାଇଁ ବୋଧହୁଏ ଲକ୍ଷ ଲକ୍ଷ ବାଙ୍ଗାଳ ଭିତରେ ଧାନା କଥା ତାକୁ ବାଧୁଛି ।

ବୁଢା ତୁନୀହୋଇ କିଛି ସମୟ ବସିଲା । ଚୂଲ୍ଲୀ ଉପରେ ବସିଥିବା ହାଣ୍ଡିଟିକୁ ଖଣ୍ଡେ ଛିଣ୍ଡା କନାରେ ବାନ୍ଧ ହାତରେ ଝୁଲାଇ ଧୀରେ ଧୀରେ ଅନ୍ଧାର ଭିତରକୁ ଗୁଲିଲା ।

———

## ବାଉଣି

'ଧାନା, ଧାନା, ହେ ଧାନା !

ବୃନ୍ଦାପୁର ବାରାକ୍ସ ପଡ଼ିଆ ପାଖର ମୋଟର ଷ୍ଟେଣ୍ଡର ଟିଣ ଘର । ସାମନାରେ ଅଳ୍ପିଅ ଖୁଣ୍ଟ ବେକ୍ ଅଢ଼େଇ ମୁଖା ପିନ୍ଧା ପିନ୍ଧିଛି । ବିଜୁଳିବତୀ ଦ୍ୱାରା ଟିଣ ଘରର କେତେକ ଅଂଶରେ ଝାପ୍ସା ଅଲୁଅ ପଡ଼ୁଛି । ସେ ଘର ପଛପାଖରୁ ଅନ୍ଧକାର ଘନୀଭୂତ ହୋଇ ଡୋଟା, ପଡ଼ିଆ, ବିଲମାଳ ଟପି ପଶ୍ଚିମ ଦିଗର କେସଣ୍ଡିମାଳ ପର୍ବତର କଳା ଦେହରେ ମିଶିଯାଇଛି ।

ଝିଣ ଘରର ସେପାଖର ଅନ୍ଧାରିଆ କଣରେ ଗୋଟାଏ ନର-କଙ୍କାଳ ପଡ଼ିଛି । ତାରି ପାଖରେ ବସିପଡ଼ି ବୁଢ଼ା ଡାକିଲା, 'ଦୀନା, ଦୀନା, ହେ ଦୀନା ।'

'ଦୀନା, ଦୀନା, ହେ ଦୀନା—ଦୁଇ ଡାକ, ତିନି ଡାକ, ଛଅ ଡାକ ଜବାବ ନାହିଁ, ଉତ୍ତର ନାହିଁ ।

ତେବେ ଲୋକଟା କଅଣ ମରିଗଲା ? ବୁଢ଼ା ଦୀନା ଛାତିରେ ହାତ ଦେଲା, ଦେଖିଲା, ନା ମରି ନାହିଁ—ସେ ପର୍ଯ୍ୟନ୍ତ ଜୀବଟା ଅଛି ।

ପାଖରେ କଳସୀ ପୋଷକର ମୁନାଏ ପାଣି ଆଣି ବୁଢ଼ା ଦୀନା ମୁହଁରେ ଛିଞ୍ଚିଦେଇ ଡାକିଲା, 'ଦୀନା, ଦୀନା, ହେ ଦୀନା ।'

ଦୀନା ଅତି କ୍ଷୀଣ ସ୍ୱରରେ କହିଲା; 'ଏଁ' ।

ସମୁଦ୍ର ଲହରୀ ଆର ପାରିରେ ଥିବା ଚନ୍ଦ୍ରବାଳ ଡୋଲରେ ଭାସି ବୁଲୁଥିବା ଲୋକର ଉତ୍ତର ପରି ତାହା ଦୂରାଗତ ।

ବୁଢ଼ା ପୁଣି ଡାକିଲା 'ଦୀନା, ଦୀନା, ହେ ଦୀନା ! ପାଣି ପିଇ ଦୀନା କିଛି କହିଲା ନାହିଁ ; ସମ୍ଭବତଃ କହିପାରିଲା ନାହିଁ ।

ସାଙ୍ଗରେ ଆଣିଥିବା ଭଙ୍ଗା ଝିଣରେ ବୁଢ଼ା କଳସୁ ପାଣିଆଣି ଦୀନା ମୁହଁରେ ଧରିଲା । ଦୀନା ଅତି କଷ୍ଟରେ ଦି ଢୋକ ପିଇଲା ।

ବୁଢ଼ା ଛିଣ୍ଡାକନାରେ ବାନ୍ଧି ଆଣିଥିବା ହାଣ୍ଡିକୁ ଫିଟାଇଲା; ସେଥିରେ ଥିବା ଜାଉରୁ ମେଞ୍ଚାଏ ପାଣିରେ ଗୋଳାଇ ବସି ରହିଲା ।

ଘୋଡ଼ା ଦେଉଳର ଘାଗୁଡ଼ି ଶବ୍ଦ ସହିତ 'ଦୁଇଖଣ୍ଡ ଝୁଣ୍ଟବୋ ରେଳଷ୍ଟେସନ ଆଡ଼କୁ ଧାଇଁଗଲା, ତା ପରେ ଗୁଲିଗଲା ଆଉ ଖଣ୍ଡେ ଝୁଣ୍ଟବୋ । ବାରକ୍ସ ପଡ଼ିଆର ପଶ୍ଚିମରେ ଥିବା ଦକ୍ଷିଣ ସାହିର କୁକୁର-ମାନଙ୍କ ଜାଣି 'କାହିଁକି 'ଭୁକି ଉଠିଲେ; ବଳି ମଝିରେ ଥିବା

ନୀଳକଣ୍ଠେଶ୍ୱର ତୋଟା ଉପରକୁ ଧାଇଁ ଆସିଲା ଗୋଟାଏ ଜଟବନ୍ତ ଉଲ୍‌କା ଅନ୍ଧାର ଆକାଶ କୋଳରେ କ୍ଷଣିକ ଆଲୋକରେଖା ଟାଣି ।

ବୁଢ଼ା ପୁଣି ଡାକିଲା, 'ଧାନ', ହେ ଧାନା ।'

ଉତ୍ତର ମିଳିଲା 'ହୁଁ',

'ଉଠ, ବସ୍—ମୁଁ ତତେ ଧରୁଛି, ବସ୍ ।'

ଧାନାଠାରୁ କିଛି ଉତ୍ତର ମିଳିଲା ନାହିଁ । ବୁଢ଼ା ତାକୁ ଧରି ଧୀରେ ଧୀରେ ଉଠାଇ ନିଜ ଦେହକୁ ଆଉଜାଇ ବସାଇଲା । ତା ପରେ ପାଣିରେ ଗୋଳା ହୋଇଥିବା ଜାଉ ଟିଣଟା ତା ମୁହଁପାଖରେ ଧରି କହିଲା, 'ନେ ପିଇ ଦେ ।'

ଧାନା ପିଇବାପାଇଁ ଚେଷ୍ଟା କଲା; କିନ୍ତୁ ପିଇ ପାରିଲା ନାହିଁ; ବୋଧହୁଏ ପିଇ ପାରିବା ଶକ୍ତି ତାର ନ ଥିଲା ।

ବୁଢ଼ା କହିଲା, 'ତଣ୍ଟି ଶୁଖି ଯାଇଛି ? ଗିଳି ପାରୁନାହୁଁ ? ନେ, ଧୀରେ ଧୀରେ, ଟିକିଏ ଟିକିଏ କରି ଗିଳି ଦେ ।'

ଧାନା ଚେଷ୍ଟାକଲା; ଢୋକେ, ଦ' ଢୋକ, ତିନି ଢୋକ, ତା ପରେ ଆଉ ପାରିଲା ନାହିଁ ।

ବଳି ହୋଇଥିବା ଛୁଣ୍ଡା ଅଖା ଖଣ୍ଡକରେ ବୁଢ଼ା ତାକୁ ଶୁଆଇ ଦେଲା । ଆଉ ଜାଉକୁ ଦ ମେଞ୍ଚା କରି ଉଲପଟାରେ ପାଖ କଳରୁ ଯେତେ ପାଣି ପିଇଲା ।

ପାଖରେ ସଡ଼କ କଡ଼ରେ ଲଗା ହୋଇଥିବା ଖଣ୍ଡେ ଫଟୋରେ ଜଣେ ଫଟୋବାଲା ଶୋଇ ପଡ଼ିଥିଲା ! ବୁଢ଼ାର ଡକାଡକିରେ ତାର ନିଦ ଭାଙ୍ଗି ଯାଇଥିଲା । ବୁଢ଼ା ପାଣି ପିଇ ଧାନା ପାଖକୁ ଯାଇ ସେଠାରେ ବସିପଡ଼ିଲା ।

ବୁଢ଼ା ନୀରବ ହୋଇ ସେଠାରେ ବସିଥାଏ । ଝିଅଟିର ବାପା କହିଲା, 'ଲୋକଟା ତମ ପୁଅ କି ? ମୋର ମନେ ହେଲା, ସେଠା ସବୁ ଜାଣିଛି ।'

ବୁଢ଼ା ତାକୁ ଟିକିଏ ଚାହିଁ ମାଗିଲା । ଝିଅଟିର ବାପା ତା ଅଣ୍ଟାରେ ଖୋସା ହୋଇଥିବା ଖଣ୍ଡେ ବିଡ଼ି କାଢ଼ି ଲଗାଇ ଖଣ୍ଡିଏ ବିଡ଼ିଖଣ୍ଡ ବୁଢ଼ା ହାତକୁ ଦେଲା, ବୁଢ଼ା ବସି ବସି ବିଡ଼ି ଟାଣିଲା । ଝିଅଟିର ବାପା ସେହିପରି ଛିଡ଼ାହୋଇ ପୁଣି କହିଲା, 'କାଲି ସଞ୍ଜବେଳେ ଜଣେ ଲୋକକୁ ଚୋଟପେଟାରେ ଘୁଞ୍ଚି ଏଠାକୁ ଫେରି ଆସି ଦେଖିଲି ଏ ଲୋକଟା ଏଠି ପଡ଼ିଛି । କେତେ ଏମିତି ବାଟ କଡ଼ରେ ପଡ଼ିଛନ୍ତି । ପୁଣି ଆଜି ସୂର୍ଯ୍ୟ ଉଠିବାବେଳେ ଗାଡ଼ି ଲଗାଇ ସଞ୍ଜ ମୋଟରକୁ ଆସି ଦେଖେ, ଲୋକଟା ସେମିତି ପଡ଼ିଛି । ଭାବିଲି, ଏଇଟା ମରିଗଲା ।'

ବୁଢ଼ା କିଛି କହିଲା ନାହିଁ ।

ଝିଅଟିର ବାପା କହି ଲାଗିଲା, 'ଦିନକାଳ ଯେମିତି, ଏଥିରେ ଝିଅ ପୋକ ପରି ବାଟ କଡ଼ରେ ପଡ଼ି ମଣିଷ ମରୁଛନ୍ତି । ଗୁଡ଼ିଏ ଟଙ୍କାକୁ ହେଲା ଦୁଇ ସେର; ତାହା ମଧ୍ୟ ମିଳୁ ନାହିଁ । ଦିନାକୁ ଦଶଅଣା ବାରଅଣା ପଇସା ରୋଜଗାର କରୁଛି; ଦୁଇ ଦିନରେ ମୁଠାଏ ଭାତ ଖାଇବାର କଷ୍ଟ ହେଲାଣି । ଗୁହା ଆଉ ଏଣ୍ଡୁଘିରେ ପ୍ରାଣ ବଞ୍ଚିଛି । ଏମିତି କାଳ କେବେ ହୋଇ ନ ଥିଲା ଏକା ।'

ବୁଢ଼ା କହିଲା, 'ହୁଁ ।'

ଗୀନା ଧୀରେ ଧୀରେ କଡ଼ ମୋଡ଼ିଲା ।

ଝିଅଟିର ବାପା କହିଲା, 'ଆଉ କିଛି ଦିନ ଗଲେ ଆମେ ସମସ୍ତେ ତମରି ଏଇ ପୁଅପରି ବାଟ କଡ଼ରେ ପଡ଼ି ମରିବା ।'

ପୁଅ ? —ବୁଢ଼ା ଘିନାର ନିଶ୍ଚଳ ମୁଣ୍ଡରେ ହାତ ବୁଲାଇ-ବାକୁ ଲାଗିଲା ।

ବାଟ ଉପରୁ କିଏ ଜଣେ ଲୋକ ଡାକିଲା,'ହେ ଝିଟକାବାଲା ।

'ବାବୁ' ବୋଲି କହି ସେ ଚାଲିଗଲା ।

ବୁଢ଼ା ଘିନା ମୁଣ୍ଡ ପାଖରେ ସେମିତି ବସି ରହିଲା ।

ପୂର୍ବ ଦିଗରେ ପ୍ରଭାତର ପ୍ରଥମ ଜ୍ୟୋତି ଯେତେବେଳେ ଧୀରେ ଧୀରେ ଫୁଟି ଆସୁଥିଲା, ଘିନାର ଚେତା ଫେରିଲା । ସେ କ୍ଷୀଣ ସ୍ୱରରେ କହିଲା, 'ପାଇଅ ।'

ବୁଢ଼ା ଅଗ୍ରହ ସହକାରେ କହିଲା, 'ନାହିଁ ମୁଁ—ମାଷ୍ଟ୍ରେ ।'

'ମାଷ୍ଟ୍ରେ ! ମୁଁ ଟିକିଏ ଉଠନ୍ତି ।'

ମାଷ୍ଟ୍ରେ ତାକୁ ଧରି ଉଠାଇଲେ । ସେ ଧୀରେ ଧୀରେ ଉଠି ବସିଲା ।

ମାଷ୍ଟ୍ରେ ତା ମୁହଁ ପାଖକୁ ସେ ଭଙ୍ଗା ଟିଣରେ ଥିବା ପାଣିରେ ଗୋଳା ଛାଳିତକ ବଢ଼ାଇ ଦେଲେ । ଘିନା ଏକା ନିଃଶ୍ୱାସରେ ତାହା ପିଇ ଦେଇ ମାଷ୍ଟରଙ୍କ ମୁହଁ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲା ।

ନୀଳକଣ୍ଠେଶ୍ୱର ଆଡ଼େ ଥିବା ବିଲ ଭିତରୁ ଦଳେ ବିଲୁଆ ଭୁକି ଉଠିଲେ । ପାହାନ୍ତିଆ ଗାଡ଼ିକୁ ଅଗପଛ ହୋଇ ଦୁଇ ଖଣ୍ଡ ଝିଟକା ଚାଲିଗଲା ।

ଖଣ୍ଡେ ଦୂରରେ ଥିବା ଗୋଟିଏ ଯାତ୍ରୀ ମୋଟରର ଜୋରରେ ଇଞ୍ଜିନରେ କିଏ ନିର ହାଉଆ ଦେଇ ତାଜି କରୁଥିବା ଶବ୍ଦ ଆରମ୍ଭ ହେଲା ।

---

# ତେଇଶ

ସକାଳ ହେବା ସାଙ୍ଗେ ସାଙ୍ଗେ ବ୍ରହ୍ମପୁର ସଡ଼କରେ ପଞ୍ଚାକୁ ପଞ୍ଚା ତାଙ୍କାଳ ଦେଖା ଦେଲେ । ଗଧ ଓ ଘୁଷୁରି ପରି ସେମାନେ ବ୍ରହ୍ମପୁର ସହରର ଗୋଟାଏ ଅତି ସାଧାରଣ ଦୃଶ୍ୟରେ ପରିଣତ ହୋଇଥିଲେ । ମନେ ହେଉଥିଲା ଯେପରି ବ୍ରହ୍ମପୁରର ରାଜପଥରେ ଦୁର୍ଭିକ୍ଷର ଅଙ୍ଗଚତ ପଟୁଆର ଚାଲିଛି ।

ସକାଳୁ କୃଷ୍ଣା ଉଠି ମାଗିବାକୁ ବାହାରିଲା; ଗଲାବେଳେ ସୀନାକୁ କହିଗଲା, 'ତୁ ଏଇଠି ଶୋଇଥିବୁ ।'

ଅଗରେ ଲାଗିଗଲା ନୋଟର ସ୍କାଣ୍ଡର ଗହଳ । ସମସ୍ତେ ବ୍ୟସ୍ତ । ଖଣ୍ଡେ ଟିକଟ କିଣି, ନୋଟଟରେ ଛୁଡ଼ା ହେବାପାଇଁ ଚାରିଖଣ୍ଡେ ଜାଗା କରିନେବା ପାଇଁ ସମସ୍ତେ ଉଦ୍‌ଗ୍ରୀବ । ସମସ୍ତଙ୍କ ହାତରେ ଟଙ୍କାକିଆ କାଗଜ ନୋଟ । ଅକାଳରେ ବାର୍ଜଣଧାନ ଫଳେ ବୋଲି ଲୋକେ କହନ୍ତି । ଏ ଭୀଷଣ ଅକାଳରେ ଟଙ୍କା-କିଆ ନୋଟର ପ୍ରାଦୁର୍ଭାବ ଦେଖି ମନେ ହେଉଥିଲା ଏହାହିଁ ୧୯୪୨-୪୩ ଦୁର୍ଭିକ୍ଷର ବାର୍ଜଣ ଧାନ । ଧାନର ଚାଉଳ ବଦଳରେ ବାର୍ଜଣ ଧାନର ଚାଉଳ ଖାଇ ଲୋକେ କିଛିଦିନ ବଞ୍ଚିପାରୁଥିଲେ, ଟଙ୍କାକିଆ ନୋଟକୁ ଚୋବାଇ, ଗିଳି ତା ଉପରେ ମୁନାଏ ପାଣି ପିଇବା ଦ୍ୱାରା ତାହାର ଭୋକ ମେଣ୍ଟିଛି ବୋଲି ଶୁଣା ଯାଇ ନାହିଁ ।

ନୋଟ ନେଇ ବଜାର । ନୋଟ ଭଙ୍ଗାଇବାର ଉପାୟ ନାହିଁ; ରେଜା ଅଭାବ । ଟଙ୍କାକିଆ ନୋଟ ପାଖରେ ଥିଲେ ମଧ୍ୟ ହୋଟେଲ-ବାଲା ଚାହା ଦେଉ ନାହିଁ, ପାନବାଲା ପାନ ଦେଉ ନାହିଁ;

ମୋଟରବାଲା ମୋଟରରେ ସ୍ଥାନ ଦେଉନାହାନ୍ତି । ଯେଉଁଠାରେ ଟଙ୍କା ପଇସା କାରବାର ସେଠାରେ ଆରମ୍ଭ ହୋଇଛି ଚରମ ବିଭ୍ରାଟ । ବ୍ରହ୍ମପୁର ମୋଟର ଷ୍ଟାଣ୍ଡରେ ଏ ସମୟରେ ସବୁଦିନ ଏପରି ବିଭ୍ରାଟ ଘୃଟେ, ଉଇବାଡ ଲାଗେ, ଗଣ୍ଡଗୋଳ ସୃଷ୍ଟି ହୁଏ । ସେଦିନ ମଧ୍ୟ ସେହିପରି ହୋଇଥିଲା । ଏହା ସହିତ ମୋଟର ଷ୍ଟାଣ୍ଡରେ ରୁଣ୍ଡ ହୋଇଥିବା କାଙ୍ଗାଳମାନଙ୍କର ବାବୁ, 'ପଇସାଟିଏ' 'ବାବୁ, ଖାଇ ନାହିଁ,' ବାବୁ, ବାବୁ, ବାବୁ—ବୁଭୁକ୍ଷିତର ଆର୍ତ୍ତନାଦ ମିଶିବା ଫଳରେ ସ୍ଥାନଟାରୁ ଉଠୁଥିଲା ଗୋଟାଏ ବିକଟ ଗୁଞ୍ଜନ । ଏକ ଦିଗରେ ଫିଟଫାଟ ଲୁଗାବୁଣ୍ଡା; ଅପର ଦିଗରେ ମଇଳା ଚିରିଣ୍ଡା କନା । ଏକ ଦିଗରେ ବାବୁର ମୋଟା ପେଟର ସ୍ତର, ଅନ୍ୟ ଦିଗରେ ବୁଭୁକ୍ଷିତ କାଙ୍ଗାଳର ନରକଙ୍କାଳ । ଏକ ଦିଗରେ କ୍ଷମତାପନ୍ନ ପଇସାବାଲାର ଔଦ୍ଧତ୍ୟ, ଅପର ଦିଗରେ ନିରନ୍ନ ନିଃସହାୟର କାର୍ପଣ୍ୟ । ଏସବୁ ମିଶି ସଜୀବ ରୌରବର ଗୋଟାଏ ଜୀବନ୍ତ ଛବି ସେଠାରେ ସୃଷ୍ଟି ହେଉଥିଲା ମନେ ହେଉଥିଲା, ଦୁନିଆର ସମସ୍ତେ ଯେପରି ପାଗଳ ହୋଇଯାଇଛନ୍ତି; ଦେଶଟା ଗୋଟାଏ ବିରାଟ ପାଗଳ ଖାନାରେ ପରିଣତ ହୋଇଛି; ବଡ଼ ଠାରୁ ସାନ ପର୍ଯ୍ୟନ୍ତ, ପଣ୍ଡିତ ଠାରୁ ମୂର୍ଖ ପର୍ଯ୍ୟନ୍ତ ସମସ୍ତଙ୍କର ମୁଣ୍ଡ ଗୋଳମାଳ ହୋଇଯାଇଛି । ସେମାନେ ଯାହା କହୁଛନ୍ତି, ତାର ଅର୍ଥ ନାହିଁ; ସେମାନେ ଯାହା କରୁଛନ୍ତି, ତାର ଅର୍ଥ ନାହିଁ । ନିଜ ଘରେ ନିଆଁ ଲଗାଇବା ପାଇଁ ସମସ୍ତେ ଯେପରି କି ଉଦ୍ୟତ, ସମସ୍ତେ ଯେପରି ବ୍ୟଗ୍ର, ଜଣେ ଅନ୍ୟ ଜଣକର ତଣ୍ଟି କାଟିବା ପାଇଁ ଯେପରି ତତ୍ପର ।

ବୀନା ମୋଟର ଷ୍ଟାଣ୍ଡର ଗୋଟିଏ କୋଣରେ ପଡ଼ିଥାଏ—ଉଠିବାର ଶକ୍ତି ନାହିଁ । ସେ ପଡ଼ ପଡ଼ ଭାବୁଥାଏ । ଭାବୁଥାଏ—

ତାର ନିଜ କଥା । ସେ ଠିକ କରିଥିଲା, ମରିବ । ତାର ସେ ଅବସ୍ଥାରେ ବଞ୍ଚିବାଠାରୁ ମରିବା ଖୁବ ସହଜ । ବଞ୍ଚିବା ପାଇଁ ଚେଷ୍ଟା କରି କରି ଯେତେବେଳେ ସେ କ୍ଳାନ୍ତହୋଇ ପଡ଼ିଲା, ସେତେବେଳେ ତା ପକ୍ଷରେ ମରିବା ଛଡ଼ା ଆଉ ଉପାୟ ଅଛି କଅଣ ?

ବଞ୍ଚିବ ? ବଞ୍ଚିବ କାହିଁକି ? କାହାପାଇଁ ? ସେ ତ ନିଜେ ବଞ୍ଚିବ ବୋଲି ସେହି ଅନ୍ଧାର ରାତିରେ ଘରଛାଡ଼ି ଆସି ନ ଥିଲା ? ସେ ଆସିଥିଲା, ଦୁଇଟା ପ୍ରାଣୀ—ତାର ସାବିଅ, ତାର ପୁଅକୁ ବଞ୍ଚାଇବା ପାଇଁ । ସେ ଆସିଥିଲା, ଆହାର ସଂଗ୍ରହ କରିନେଇ ସେମାନଙ୍କ ମୁହଁରେ ଦେବ, ସେମାନେ ବଞ୍ଚିବେ । ଦେଢ଼ ମାସରୁ ଉପର ହେଲାଣି । ସେମାନେ ବଞ୍ଚି ଥିବେ ତ ? ସେ ଭିକ ମାଗିଛି; ମୁଠାଏ ଚାଉଳ ଯେତେବେଳେ ପାଇଛି, ସେତେବେଳେ ତାହା ସାଇତି ରଖିବା ପାଇଁ ହୋଟେଲ ପାଖ ନାଳରେ ପଡ଼ିଥିବା ଅଇଁଠା ପତରୁ ଗୋଟି ଗୋଟି ଭାତ ସାଉଁଟି ଖାଇଛି; ଆଉ କୁକୁର ଗୁଡ଼ାକ ତା ପାଖରେ ଛିଡ଼ାହୋଇ ତାକୁ ଚାହିଁ ରହିଛନ୍ତି । ସେଇ ମୁଠାକ ଚାଉଳ—ତାକୁ ସଞ୍ଚିରଖି ସେ ଭାବିଛି, କାଲି ପୁଣି ଆଉ ମୁଠାଏ ମିଳିବ; ପଅରି ଦିନ ଆଉ ମୁଠାଏ, ସେ ସବୁକୁ ସଞ୍ଚି ରଖିବ, ବେଶି ହୋଇ ଗଲେ ସେତକ ସାଙ୍ଗରେ ନେଇ ତା ଗାଆଁକୁ ଯିବ, ସାବିଅ ମୁହଁରେ ତା ପୁଅ ମୁହଁରେ ମୁଠାଏଲେଖା ଭାତ ଦେବ । ତା ପରେ ହୁଏତ ଦିନେ, ଦୁଇଦିନ, ତିନିଦିନ ତାକୁ ଭିକ ମିଳି ନାହିଁ, ସେ ଉପାସ ରହିଛି; କିନ୍ତୁ ସେ ଚାଉଳ ଗଣ୍ଡାକୁ ଖାଇ ନାହିଁ । ପୁଣି ଯେତେବେଳେ ଦେଖିଛି ଯେ, ନ ଖାଇଲେ ତାକୁ ମରିବାକୁ ହେବ ସେତେବେଳେ ସେତକକୁ ଫୁଟାଇ ଖାଇ ଦେଇଛି । ଏହିପରି କେତେ ଚେଷ୍ଟା ସତ୍ତ୍ୱେ ତାର ସ୍ତ୍ରୀ ପିଲାଙ୍କୁ ବଞ୍ଚାଇବା ପାଇଁ କିଛି ସଂଗ୍ରହ କରି

ପାରି ନାହିଁ ! ପୁଣି ଯେ ଚେଷ୍ଟା କରିଛି ଫରୁଆ କରବା ପାଇଁ, ପୁଣି ଆଶା କରିଛି ବଞ୍ଚିବା ପାଇଁ, ଦୂର ଗାଁରେ ପଡ଼ି ତା ଉପରେ ନିର୍ଭର କରି ରହିଥିବା ମଣିଷ ଦୁଇଟାଙ୍କୁ ବଞ୍ଚାଇବା ପାଇଁ; କିନ୍ତୁ ତାର ସବୁ ଆଶା ଫେଲ ହୋଇଛି, ସବୁ ଚେଷ୍ଟା ପଣ୍ଡ ହୋଇଛି । ତା ସ୍ତ୍ରୀ, ତା ପୁଅ—ଅଜଯାଏ ସେମାନେ ବଞ୍ଚି ଥିବେ ?—ନା ଅସମ୍ଭବ । କିଏ ତାଙ୍କ ମୁହଁରେ ଆହାର ଦେବ ? କିଏ ତାଙ୍କୁ ବଞ୍ଚାଇବ ? ତେବେ ନିଜେ ବଞ୍ଚିବା ପାଇଁ ସେ ବା କାହିଁକି ଏତେ ଚେଷ୍ଟା କରିବ ? ସେ ବଞ୍ଚିବାରେ ଆଉ ଲାଭ କଅଣ ?

ସେଇଥିପାଇଁ ସେ କୁଆଡ଼େ ଗଲା ନାହିଁ, କିଛି ମାଗିଲା ନାହିଁ, କାହାରିକୁ ଗୁହାରିଲା ନାହିଁ; ମୁହଁମାଡ଼ି ମୋଟର ଷ୍ଟାଣ୍ଡର ଗୋଟାଏ କଣରେ ପଡ଼ି ରହିଥିଲା । ଦିନେ ଗଲା, ଦୁଇଦିନ ଗଲା; କ୍ରମେ କ୍ରମେ ତା ଆଖି ଆଗରେ ଅନ୍ଧାର ମାଡ଼ି ଆସିଲା; ମୁଣ୍ଡ ଭିତରଟା ଶୂନ୍ୟ ପରି ଲାଗିଲା; ସେ ମନେକଲା, ତାର ବେଳ ହୋଇ ଆସିଲା ! ସେଇଠିକ ହିଁ ଜଣେ । ତା ପରେ ତାର ଜ୍ଞାନ ନ ଥିଲା ।

ତା ପରେ ଆଖି ମେଲାଇ ଦେଖେ—ମାଷ୍ଟ୍ରେ । ବୁଢ଼ା ତା ପାଖରେ ବସିଛି । ତା ମୁହଁରେ ସେ କାଉ ହିକିଏ ଦେଉଛି, ତାକୁ ବଞ୍ଚାଇବା ପାଇଁ ଚେଷ୍ଟା କରୁଛି । ସେ ଏଠାରେ ପଡ଼ିଥିଲା ବୋଲି ମାଷ୍ଟ୍ରେ ଜାଣିଲେ କିପରି ? ତାକୁ ବଞ୍ଚାଇବାକୁ ତାଙ୍କର ଏତେ ଚେଷ୍ଟା କାହିଁକି ? ତା ଭଳି ହଜାର ହଜାର କାଙ୍ଗାଳ ତ ବାଟ କଡ଼ରେ ପଡ଼ି ମରୁଛନ୍ତି; କେହି ତାଙ୍କ ଖବର ରଖୁ ନାହାନ୍ତି, କେହି ତାଙ୍କୁ ବଞ୍ଚାଇ ରଖିବା ପାଇଁ ଚେଷ୍ଟା କରୁ ନାହାନ୍ତି । ଏ ବୁଢ଼ା ତା ପାଇଁ ଏତେ ବ୍ୟସ୍ତ କାହିଁକି ? ସେ ବଞ୍ଚିଲେ ବା ବୁଢ଼ାର ଲାଭ କଅଣ ? ତା ମନେ ପଡ଼ିଲା, ଲଞ୍ଜିପକ୍ଷୀ ଗୋଟାରେ ସେ ପହଞ୍ଚିବା

ଧନ ଠାରୁ ବୁଢ଼ା ବରାବର ତାକୁ ସାହାଯ୍ୟ କରିଛି, ତା ଖବର ନେଇଛି, ତାକୁ ସାନ୍ତ୍ୱନା ଦେଇଛି । ବୁଢ଼ା ତାକୁ କହେ, 'ହେଇ ପରା ତୋ ଆଖି ଆଗରେ ସାରିଆ ପରି ଶହଶହ ସ୍ତ୍ରୀ, ତୋ ପୁଅ ପରି ଶହଶହ ପୁଅ ମରି ଯାଉଛନ୍ତି । ସେମାନଙ୍କର କଅଣ କେହି ସ୍ୱାମୀ ନାହାନ୍ତି ? ସେ ପିଲାଗୁଡ଼ାଙ୍କର କଅଣ କେହି ବାପ ନାହାନ୍ତି ? ସେ ସବୁ ଭାବ ନାହିଁ ଧାନା, ସେ ସବୁ ଭାବିଲେ ବଞ୍ଚିବୁ ନାହିଁ । ଆମେ ନିଜେ ବଞ୍ଚି ପରେ ପର କଥା ଭାବିବୁ । ଏ ବେଳ ଏମିତି ପଡ଼ିଛି ।'

ବୁଢ଼ା ପୁଣି କହେ, 'ସେମାନେ କଅଣ ଆଉ ତୋ ଗାଁରେ ଥିବେ ? ତୋ ଗାଁରେ କଅଣ ଅଛି ଯେ ଖାଇ ବଞ୍ଚିବେ । ଆମରି ପରି ଜୀବନ ବଞ୍ଚାଇବା ପାଇଁ ସେମାନେ କୁଆଡେ ଚାଲି ଯାଇ ଥିବେ । ଯାଆନ୍ତୁ, ଯାଇ ଯଦି ଜୀବନରେ ବଞ୍ଚିଥାନ୍ତି ଭଲ । କେବେ ହେଲେ ତ ଘରକୁ ଫେରିବେ । କେବେହେଲେ ତ ଦେଖା ହେବ ।'

ଏ ବୁଢ଼ା ତାର କିଏ ? ଏତେ କଥା କହେ କାହିଁକି ? ଏତେ ବୁଝାଏ କାହିଁକି ? ଧାନାର ମନେ ପଡ଼ିଲା, ତା ବାପ କଥା । ସେ ମଧ୍ୟ ତାକୁ ଏହିପରି ଦେଖି ପାରୁଥିଲେ; ଏହିପରି ତା କଥା ବୁଝୁଥିଲେ । ଆର ଜନ୍ମରେ ବୁଢା ବୋଧହୁଏ ତା ବାପ ଥିଲା ।

ଧାନା ପଡ଼ିପଡ଼ି ଭାବୁଛି । ଆର ଜନ୍ମ ? ମଲା ଉତ୍ତାରୁ ମଣିଷ କଅଣ ପୁଣି ଜନ୍ମ ହୁଅନ୍ତି । ହୁଅନ୍ତୁ, ତାର ଆପତ୍ତି ନାହିଁ । କିନ୍ତୁ ଏ ଜନ୍ମରେ ତତଲ ଡାଲରେ ପଡ଼ି ଛଟପଟ ହେବା ପରି ଆର ଜନ୍ମରେ ଯଦି ଭୋକଉପାସ ନାଁରେ ଭାଜି ହେବାକୁ ହୁଏ, ତେବେ ଆଉ ଥରେ ଜନ୍ମ ହେବା ପାଇଁ ସେ ରାଜି ନୁହେଁ । ତାର ଏତେ ଦୁଃଖ, ଏତେ କଷ୍ଟ କଅଣ ଯଥେଷ୍ଟ ନୁହେଁ ଯେ ଅହୁରି

ଦୁଃଖଯନ୍ତ୍ରଣା ଭୋଗ କରିବାପାଇଁ ପୁଣି ତାକୁ ଜନ୍ମ ଦେବାକୁ ହେବ ?

ସେ—ଧାନା । ସେ ତ କେବେହେଲେ କାହାର କିଛି କ୍ଷତି କରିନାହିଁ, କାହାରିକୁ କଷ୍ଟ ଦେଇ ନାହିଁ । ତେବେ ତାକୁ ଏ ଦଣ୍ଡ କାହିଁକି ? ସେ ଅସରନ୍ତି ଦୁଃଖକଷ୍ଟରେ ପଡ଼ି ପୋଡ଼ି ହୋଇ ଯାଉଛି କାହିଁକି ? ସେ ତ ଏକା ନୁହେଁ; ତାହାର ପରି ହଜାର ହଜାର ଲୋକ ମୁଠାଏ ଖାଇବାକୁ ନ ପାଇ ଘରଛଡ଼ା ହୋଇ ଭୂତ ପ୍ରେତ ପରି ବୁଲୁଛନ୍ତି କାହିଁକି ? ଏମାନେ କାହାର କି ଦୋଷ କରିଛନ୍ତି ? ଏମାନେ କାହାର କି କ୍ଷତି କରିଛନ୍ତି ? ନା, ଏ ସବୁ କିଛି କଥା ନୁହେଁ । ମାର୍କ୍ସେ ଯାହା କହୁଥିଲେ ଠିକ୍ । ଗୁଡ଼ାଏ ଲୋକ ମେଣ୍ଟ ବାନ୍ଧି, ଷଡ଼ଯନ୍ତ୍ର କରି ସେମାନଙ୍କ ମୁହଁରୁ ଆହାର କାଢ଼ି ନେଉଛନ୍ତି । ତାଙ୍କୁ ସାହାଯ୍ୟ କରିବାପାଇଁ ପୁଲିସ ଅଛି, ଫୌଜ ଅଛି । ସେଇ ବଳରେ ସେମାନେ ହଜାର ହଜାର ଲୋକର ଭାତ ଛଡ଼ାଇ ନେଇ ଶବ ଦେଉଛନ୍ତି; ନିଜେ ଲାଭ କରୁଛନ୍ତି । ଲୋକେ ମଲେ କେତେ, ସରିଲେ କେତେ ? ସେମାନଙ୍କର ଯାଏ କେତେ, ଆସେ କେତେ ? ଏ କଥା ସତ, ଏ କଥା ଠିକ୍ । ତା ନ ହେଲେ, ହଜାର ହଜାର ଲୋକ ଯେତେବେଳେ ଖାଇବାକୁ ପାଉ ନାହାନ୍ତି, ଗୁଡ଼ାଏ ଲୋକ ସେତେବେଳେ ମଉଜରେ ଅଛନ୍ତି କିପରି ? ହଜାର ହଜାର ଲୋକ ବାଟ କଡ଼ରେ ପଡ଼ିଛନ୍ତି; କୋଠା ତିଆରି ତ ଚାଲିଛି, ଥିଏଟରର ବାଇସ୍କୋପ ତ ଚାଲିଛି, ହୋଟେଲ ସବୁ ତ ଚାଲିଛି, ବଜାରରେ ଲଗା ଦୋକାନ, ମନୋହର ଦୋକାନ ତ ବନ୍ଦ ହୋଇ ନାହିଁ; ବଡ଼ ଲୋକମାନେ ତ ମୋଟରରେ ଚଢ଼ି ବୁଲି ଯାଉଛନ୍ତି, ତାଙ୍କ ଘର ସ୍ତ୍ରୀ ଲୋକମାନଙ୍କ ବେଶ ତ କମି ନାହିଁ,

ତାଙ୍କ ଦେହର ସୁନା ଅଳଙ୍କାର ତ ସେହିପରି ରହିଛି । ସେମାନେ କି ପାପ କରିଥିଲେ ଯେ ମୁଠାଏ ଭାତ ନ ପାଇ ମରିବେ ? ଆଉ ବଡ଼ ଲୋକମାନେ କି ପୁଣ୍ୟ କରିଥିଲେ ଯେ, ସେମାନେ ମଙ୍ଗଳ ମଙ୍ଗଳମୟରେ ରହିବେ ? ଏ କଥା ତ କେହି ବୁଝୁ ନାହାନ୍ତି, ଏ କଥା ତ କେହି ବିଗ୍ଚାର କରୁ ନାହାନ୍ତି । ମାଷ୍ଟ୍ରେ କହୁଥିଲେ, ଦିନେ ଏହାର ନ୍ୟାଯ୍ୟ ବିଚାର ହେବ—ନିଷ୍ପତ୍ତି ହେବ । ସେ କଥା ହୁଏତ ଠିକ୍; କିନ୍ତୁ ସେତେବେଳକୁ ସେ ନ ଥିବ, ସାବିଆ ନ ଥିବ, ତା ପୁଅ ନ ଥିବ ।

ଦେହ ଦୁର୍ବଳ, ମସ୍ତିଷ୍କ ତା ଅପେକ୍ଷା ଦୁର୍ବଳ । ଧାନା ଆଉ କିଛି ଭାବି ପାରିଲା ନାହିଁ । ତାକୁ ତନ୍ଦ୍ରା ଲାଗି ଆସିଲା ।

ଗୋଟାଏ ପରେ ଗୋଟାଏ ମୋଟର ହର୍ଣ୍ଣ ଦେଇ ଗ୍ଲଲି, କ୍ରମେ କ୍ରମେ ଗହଳି କମି ଆସିଲା । ମଠର ସ୍ଥାଣ୍ଟ୍ରିର କର୍ମଗୃସ୍ଥମାନେ ପାନ ଦୋକାନରେ ବସି ପଇଡ଼ ପିଇବା ଆରମ୍ଭ କଲେ । ଦ'ଗୁଟେଟା କାଙ୍ଗାଳ ସେ ଟିଣଘର ଭିତରକୁ ଆସି ବସିଲେ । ଛୁଡ଼ା ହେବା ବା ଗୃଳିବା ଶକ୍ତି ସେମାନଙ୍କର ଆଉ ନ ଥିଲା ।

ଧାନା ସେହିପରି ପଡ଼ି ରହିଲା ।

---

## ନଟିଣୀ

ସୂର୍ଯ୍ୟ ସେତେବେଳକୁ ମୁଣ୍ଡ ଉପରକୁ ଉଠିଲେଣି । ଖରା ଚଡ଼ଚଡ଼ ମାରୁଛି । ବାରିକ୍ସ ସାମନାର ପିଚୁ ରାସ୍ତା ଏତେ ଗରମ ଯେ ଗୋଡ଼ ଦେଲେ ଫୋଟକା ହୋଇଯିବ ବୋଲି ମନେ ହେଉଛି । ଛିଣ୍ଡା କନା ଖଣ୍ଡେ ମୁଣ୍ଡରେ ପକାଇ ସେହି ଉତ୍ତପ୍ତ ରାଜପଥ ଉପରେ ବୁଢ଼ୀ ଗୃଲିଛି ବାରିକ୍ସ ଆଡ଼କୁ ।

ଶରୀର ଦୁର୍ବଳ । ଦିନ ଗୋଟାଏ ବାଜିଲା, ଯେ ପର୍ଯ୍ୟନ୍ତ ବୁଢ଼ା ମୁହଁରେ ପାଣି ପଡ଼ି ନାହିଁ, ତଥାପି ବୁଢ଼ା ସେହି ତାତଲା ରାସ୍ତା ଉପରେ ଯେତେ ଶୀଘ୍ର ଚାଲିପାରେ ଚାଲିଛି । ବାଟରେ ଗୋଟାଏ ପିଣ୍ଡିଉପରେ ଅଶ୍ୱତ୍ଥ ଗଛ । ତା ଛାଇ ତଳେ ସେ ମୁହୂର୍ତ୍ତେ ମାତ୍ର ଛିଡ଼ାହେଲା, ତା ପରେ ଚାଲିଲା । ତା ଚାଲିବା ଉପରେ ଯେପରି କି ଗୋଟାଏ ମଣିଷର ଜୀବନ ନିର୍ଭର କରୁଛି, ସେହିପରି । ଏକ ତୀବ୍ର ଉଦ୍‌ବେଗ ତାର ଚାଲିରୁ ଫୁଟି ଉଠୁଥିଲା ।

ମୋଟର ଷ୍ଟାଣ୍ଡର ଟିଣଘର କଣରେ ପଡ଼ିଛି ଦୀନା । ଦୀନା ଏକ ପ୍ରକାର ତନ୍ଦ୍ରାର ମୋହରେ ପଡ଼ି ରହିଛି ସକାଳୁ । ତାହାପରର ଘଟଣାସବୁ ତା ମସ୍ତିଷ୍କ ଭିତରକୁ ସ୍ୱପ୍ନର ଛାଇ ପରି ପଶି ସ୍ୱପ୍ନ ସହିତ ମିଶି ଯାଉଛି । ସେ ସ୍ୱପ୍ନ ଓ ଜାଗରଣ ମଝିରେ ପଡ଼ି ରହିଛି ।

ବୁଢ଼ା ଡାକିଲା, 'ହେ ଦୀନା ଉଠ ।'

ଏତେବେଳକେ ସେ ମୁଠାଏ ଭାତ ଡାଲି ତରକାରୀ ପାଇଛି । ସେତିକି ଧରି ସେ ଧାଇଁଛି ଦୀନାକୁ ଖୁଆଇବା ପାଇଁ ।

ସକାଳୁ ବଜାରରେ ବୁଲି ବୁଲି ସେ ହାଲିଆ ହୋଇ ଗୋଟାଏ ହୋଟେଲ୍ ସାମନାରେ ଥିବା ବରଗଛ ମୂଳରେ ବସି ରହିଲା । ଗୋଟାଏ ଲୋକ ପତ୍ର ପାଖରେ ବସି ଖାଇ ଖାଇ ସେଇଠି ବାନ୍ତି କରି ପକାଇଲା ଆଉ ଖାଇଲା ନାହିଁ । ହୋଟେଲର ଚାକର ପତ୍ରଟାକୁ ଯେମିତି ଆଣି ନଳାକୁ ଫିଙ୍ଗି ଦେଲା । କୁକୁରଗୁଡ଼ାକ ପତ୍ରପାଖରେ ପହଞ୍ଚି ପହଞ୍ଚି ବୁଢ଼ା ତାକୁ ଉଠାଇ ନେଇ ଧାଇଁଛି ।

ବାଟରେ ପଡ଼ ଫିଟାଇ ସେ ଦେଖିଲା, ଲୋକଟା ଖୁବ୍ କମ ଖାଇଛି—ଯାହା ଅଛି ସେଥିରେ ଧୀନାର ଶୁଖିଲା ପେଟରେ ଦୁଇ ଓଳି ଚଳିଯିବ । ଧୀନାଠା ଖାଉ—ଉଠୁ । ତା ପରେ ଦେଖାଯିବ । ନିଜେ ସବାକୁ କିଛି ଖାଇ ନାହିଁ । ଅଜି ଅଉ ତାକୁ କିଛି ଖାଇବାକୁ ମିଳିବ ନାହିଁ, ଏ କଥା ତା ମନରେ ମଧ୍ୟ ଉଠି ନ ଥିଲା ।

ଧୀନା ଉଠିଲା । ଛିଣ୍ଡା କନାରେ ବାନ୍ଧିଥିବା ପଡ଼ ଫିଟାଇ ବୁଢ଼ା ତା ଆଗରେ ରଖି କହିଲା, 'ଖାଇ ଦେ ।'

ବୁଢ଼ା ଟିଣ ଧରି କଳ ପାଖକୁ ପାଣି ଅଣିବାକୁ ଗଲା । ଧୀନା ପାଖରେ ତାହା ରଖିଦେଇ କହିଲା,'ଦେ ଖାଇଦେ । ଯାହା ଖାଇବୁ ଖା, ଯାହା ରହିବ ବଖିଦେ, ସଞ୍ଜରେ ଖାଇବୁ କି କାଲି ସକାଳେ ଖାଇବୁ ।'

ଧୀନା ବୁଢ଼ା ଅଡ଼କୁ ଚାହିଁ କହିଲା, 'ତମେ ?'

ବୁଢ଼ା ହସିବାର ଚେଷ୍ଟା କରି କହିଲା, 'ମୁଁ ? ମୁଁ ଚାଲି ବୁଲି ପାରୁଛି । କିଛି କୁଆଡ଼ୁ ମିଳିଯିବ । ତୁ ଟିକିଏ ଦମ୍ଭ ହୋଇ ଯା । ତୁ ପରା ତୋ ଗାଆଁକୁ ଯିବୁ ?'

'ଗାଆଁକୁ ?'—ବୁଢ଼ା କଥାର କ୍ଷୀଣ ପ୍ରତିଧ୍ୱନି ପରି ଧୀନ କହିଲା । ହାତରେ ମୁଠାଏ ଭାତ ସେ ମୁହଁକୁ ଉଠାଇ ଥିଲା, ତା ସେହିପରି ରହିଲା, ଧୀନା ନିର୍ବାକ ହୋଇ ବୁଢ଼ା ମୁହଁକୁ ଚାହିଁ ରହିଲା ।

ବୁଢ଼ା କହିଲା, 'ହିଁ ଗାଆଁକୁ । ତୁ ଟିକିଏ ଚାଲି ପାରି, ଗାଆଁକୁ ଯିବୁ—ତୋ ଗାଆଁକୁ । ଯେମିତି ଚାହୁଁଛୁ କଅଣ ? ଖାଇ ଦେ ।'

ଧୀନାର ଆଖିରୁ ଦ' ଟୋପା ଲୁହ ତାହାରିବା ପରି ହେଲା; କିନ୍ତୁ ଲୁହର ଗ୍ରନ୍ଥିଗୁଡ଼ାକ ବୋଧହୁଏ ତା ଦେହର ମାଂସ ସହିତ

ଶୁଣି ଯାଉଥିଲା, କାହାରିକୁ ନାହିଁ, ତା' ଅଣ୍ଟି ତୁଳଟା ଫାଟି ଗଲା ପରି ମନେ ହେଲା ।

ବୁଢ଼ା ପୁଣି କହିଲା, 'ଖାଇ ଦେ । ବସିଛୁ କାହିଁକି ? ହଁ ତୋ ଗାଆଁକୁ ଯିବୁ । ଯିବୁ କେମିତ ? ଟିକଏ ଗୁହଲ ପାରିଲେ ତ ।'

'ଗାଆଁକୁ କାହିଁକି ଯିବି ?'

'ଅରେ, ଅଚ୍ଛା ମଣିଷ ତ । ତୋ ଗାଆଁ—କୁ ଯିବୁ ନାହିଁ ।

'ଗାଆଁରେ କଏ ଥିବ ଅଉ ଯାଏଁ ।'—ଧୀନା ସ୍ୱପ୍ନରୁ ଉଠିଲା ପରି ଧୀରେ ଧୀରେ କହିଲା ।

'ହଁ ଥିବେ, ଥିବେ । ତୁ ସେ ସବୁ କଥା କିଛି ଭାବ ନାହିଁ । ମୁଁ ତୋ ପାଇଁ ଗୁରୁ ସେବ ଗୁହଲ ଅଣିବ । ବୁଝିଲୁ, ସେ ଦିନ, ବାଟରେ ଯାଉ ଯାଉ ଦେଖିଲି ଗୋଟାଏ ହାତକଙ୍କ' ଘଣ୍ଡି ପଡ଼ିଛି । ତୋଧନୁଏ କେହି ବାବୁ ମାତାଲ ହୋଇ ଗାଡ଼ିରେ ଗଡ଼ୁଥିଲା, ତା ହାତରୁ ସେଇଟା ଖସି ପଡ଼ିଥିଲା । ଭୋରଟାରୁ ଉଠି ମୁଁ ବୁଲୁଛି, ମୋ ଆଖିରେ ପଡ଼ିଲା । ସେଇଟାକୁ ନେଇ ଲୁଚାଇ ରଖିଥିଲି । ବଡ଼ବଜାରର ଗୁହଲ ଗୋଦାମର ଜଣେ ଗୁହଲକୁ ସେଇଟା ଦେଖାଇବାରୁ ସେ ମତେ ଦୁଇସେର ଗୁହଲ ଦେବ ବୋଲି କହିଲା । ମୁଁ ତାକୁ କହିଲି, ଗୁରୁସେରଟି ଗୁହଲ ଦେଲେ ମୁଁ ଏ ଘଣ୍ଡିଟା ଦେବ । ଏ ଘଣ୍ଡିଟା ମୋ ପାଖରେ ରହିଲା, ଗୁହଲ ନେବ, ଏ ଘଣ୍ଡିଟା ଦେବ ।'

ଧୀନା ଅବାକ୍‌ହୋଇ ଗୁହିଁ ରହିଲା । ଗୁରୁସେର ଗୁହଲ; ତାର ଷୋଳଦିନ ଜିନ୍ଦଗୀରେ ଚଳନ୍ତା, ସେତିକ ସେ ତାକୁ ଦେଇ ଦେବ ? ଅଉ କାହାର କଥା ହୋଇଥିଲେ ଧୀନା ବିଶ୍ୱାସ କରନ୍ତା ନାହିଁ ; କିନ୍ତୁ ମାଷ୍ଟ୍ରେ—ମାଷ୍ଟ୍ରଙ୍କ କଥା ଯାହା, କାମ ତାହା ।

ଗୋଟାଏ ଢାଙ୍ଗାଳ ସେ ବାଟରେ ଯାଉଥିଲା । ଦୂରରୁ ବୁଢ଼ାକୁ ଦେଖି ତାଙ୍କ ଅଡ଼କୁ ଅସି କହିଲା; 'ମାଷ୍ଟ୍ରେ ଶୁଣୁଛ ବ୍ରହ୍ମପୁରରେ ଢାଳ୍ଠାରୁ ଛତ୍ର ଖୋଲୁଛି । ଆମମାନଙ୍କୁ ଖାଇବାକୁ ଦଅଯିବ, ଆମେ ଖାଇବୁ ।'

ମାଷ୍ଟ୍ରଙ୍କ ମୁହଁ ଅଷାଢ଼ ଆକାଶ ପରି ଗମ୍ଭୀର ହୋଇଗଲା । ସେ କହିଲା, 'ହୁଁ ।'

ଢାଙ୍ଗାଳଟି ମନେ କରିଥିଲା ବୁଢ଼ା ଏ ଖବର ଶୁଣି ଖୁସି ହେବ । ସେଥିପାଇଁ ଏ ଖବର ଦେବାଲାଗି ସେ ତାଙ୍କ ପାଖକୁ ଧାଇଁ ଅସିଥିଲା । କାହିଁ, ବୁଢାଟା ଖୁସି ହେଲା ନାହିଁ ?

ଢାଙ୍ଗାଳଟି ପୁଣି କହିଲା, 'ଖାଇବାକୁ ନ ପାଇ ଆମେ ଅଉ ବାରଦ୍ୱାର ହେବୁ ନାହିଁ । ସାଧୁଅ କହୁଥିଲା ଏଥର ବଞ୍ଚିଗଲୁ ।'

ବୁଢ଼ା ଢାଙ୍ଗାଳଟିର ଖୁସି ଦେଖି ରାଗିଗଲା । କହିଲା, 'ଯେଉଁମାନେ ଛତ୍ର ଖୋଲୁଛନ୍ତି ସେମାନେ ତୋର ଶ୍ୱଶୁର ଯେ ସେମାନେ ତୋ ପାଇଁ ଜୋଇଁ ଭୋଜନ ଖଞ୍ଜି ଦେବେ ? ସେମାନେ ଆମକୁ ଭାତରେ ମାରିଲେ । କାଙ୍ଗାଳ କଲେ । ଆମ ଭିତରେ ଅଉ ଯେଉଁତକ ମଣିଷପଣିଆ ଥିଲା, ତାକୁ ମାରିବାକୁ ବସିଛନ୍ତି ହାତରେ । କୁକୁର ଅଡ଼କୁ ମୁଠାଏ ଅଇଣ୍ଠା ଭାତ ଢଳାଇଲା ପରି ଆମ ଅଡ଼କୁ ମୁଠାଏଲେଖା ଭାତ ଫିଙ୍ଗି ଦେବେ । ଆମେ ମାଗୁଥିଲୁ, ନିଜେ ବୁଲି ନିଜର ଖାଇବା ଯୋଗାଡ଼ କରୁଥିଲୁ । ଯେଉଁ ଦିନ ପାଉଥିଲୁ; ଖାଉଥିଲୁ, ନ ମିଳିଲେ ଉପାସ ରହୁଥିଲୁ—ମରୁଥିଲୁ ମଣିଷ ପରି, ମାରୁଥିଲୁ ମୁଣ୍ଡଟାକୁ ଟେକି ରଖି । ଆମ ମୁହଁର ଭାତ କିଏ କାଢ଼ି-ନେଇଛି, ତାହା ଆମେ ବୁଝୁଥିଲୁ । ତା' ଉପରେ ଦାଉ ସାଧିବା ପାଇଁ ଆମ ଛାତି ଭିତରଟା ସବୁବେଳେ ରାଗ ହିଁ ବଦାର ହୋଉ-

ଥିଲା । ଆମର ନିଃଶ୍ୱାସ ସାଙ୍ଗେ ସାଙ୍ଗେ ବାହାରୁଥିଲା ଚାଣୁଆ ଅଭିଶାପ । ଆମେ ମଣିଷ, ଆମର ସେତିକି ବଳ, ସେତିକି କ୍ଷମତା ଥିଲା । ଏଣିକି ସେମାନେ ଆମକୁ ମୁଠାଏ ଖାଇବାକୁ ଦେଇ ସେ ବଳ, ସେ କ୍ଷମତାତକ କାଢ଼ି ନେବାକୁ ବସିଛନ୍ତି । ଆମମାନଙ୍କୁ ମଣିଷପଣିଆରୁ ବାହାରି କରି କୁକୁର ସହିତ ସମାନ' କରିବାକୁ ବସିଛନ୍ତି । ପାଞ୍ଚଲକ୍ଷ କାଙ୍ଗାଳ ମରିଗଲେ ଦୁଃଖ ନାହିଁ । ଆଜି ଯେଉଁ ନିଆଁ ଆମ ଭିତରେ ଜଳୁଛି, ତାହା ଯଦି ଚିରକାଳ ପାଞ୍ଚଟା କାଙ୍ଗାଳ ଭିତରେ ଜଳୁଥାଏ । ତେବେ ତାହା ହିଁ ହେବ ଯଥେଷ୍ଟ । ସେଇ ନିଆଁରୁ ଦିନେ ବଣପୋଡ଼ ହେବ; ସେଇ ନିଆଁରୁ ଗୃହଅଗ୍ନି ନିଆଁ ଜଳିଉଠିବ । ଆଜି ଆମ ମୁହଁର ଭାତ କାଢ଼ିନେଇ ଆମ ପେଟରେ ଯେଉଁମାନେ ଗୋଇଠା ମାରୁଛନ୍ତି, ସେମାନେ ପୋଡ଼ିଯିବେ—ଜଳି ପାଉଁଶ ହୋଇଯିବେ । ଖୁସି ହେଉଛୁ—ଛାମରେ ଖାଇବୁ ବୋଲି ଖୁସି ।'

କାଙ୍ଗାଳଟି ମନେ କଲା ମାଷ୍ଟରଙ୍କ ପାଗଳପଣ ବାହାରିଲା । ସେ ବଗୁଲି କିଛି ନ କହି ତାଙ୍କର ଅଙ୍କକୁ ଗୁହିଁ ରହିଲା ।

ଧାନା ଆଖି ଦୁଇଟାରୁ ନିଆଁ ଫୁଟିପଡ଼ିବା ପରି ଜଣାଗଲା ।

ବୁଢ଼ା ଭୁଲିଗଲା ତା ପାଖରେ ଧାନା ବସିଛି ଏ କାଙ୍ଗାଳଟି ବସିଛି । ସେ ମନକୁମନ ବକିଲା, 'ଖୁସି ହେଉଛନ୍ତି—ଖୁସି ? ଟୋ ଛୁ-ମାରି ପୋଡ଼ା ଦାନ କରାଯାଉଛି—ଆମର ଗୋଡ଼ୁକୁ ଗ୍ଲାନି ତା ଚମକ । ଦୁଇଖଣ୍ଡରେ ଯୋଡ଼ା ତିଆରି କରି ଆମକୁ ଦିଆ ଯାଉଛି; ସେଥିରେ ପୁଣି ଖୁସି । କି ରେ, ଆମେ ଆଜି ବାଟର କାଙ୍ଗାଳ କାହା ପାଇଁ ? କେଉଁ କାରଣରୁ ? ଏଇ ଚୋର, ଏଇ ଡାକୁ, ଏଇ ମୋର—ଜମିଥିଲା; ଘର ଅନ୍ନ—ସବୁଥିଲା । ଗଲା କୁଆଡ଼େ ? ଜମିଜମା, ଘରଦ୍ୱାର ଏହା

ସବୁ ତ କର୍ପୂର ନୁହେଁ ଯେ କୁଆଡ଼େ ଉଡ଼ିଗଲା । ମିଠାଇ, ରସଗୋଲା ନୁହେଁ ଯେ କେହି ଗିଳି ଦେଲା । ନା ନା, ବାବୁ ସେ ସବୁ କିଛି ନୁହେଁ । ଟେକ୍ସ, ଡକାଇତ, ଜୁଆଚୋର୍ମି କରି - ଆମଠାରୁ କାଢ଼ି ନେଇଗଲେ; ଆମ ଘର ଭାଙ୍ଗି ଦେଲେ; ଆମକୁ ବାଟର ଭିକାରୀ କରି ଛାଡ଼ିଦେଲେ । ଆମେ ଯେତେବେଳେ ଶହ ଶହ ସଂଖ୍ୟାରେ ବାଟ କଡ଼ରେ ପଡ଼ି ମଲୁ, ସେମାନଙ୍କ ଓକେଇତର ଫଳ ତାଙ୍କ ଆଖି ଆଗରେ ବଡ଼ ବିକଟ ହୋଇ ଦିଶିଲା । ଆମର ପ୍ରେତ ତାଙ୍କ ଶୋଇବା ଘରେ ପଶି ନାଚିଲା । ଆମର ନିଃଶ୍ୱାସ ତାଙ୍କର ମଙ୍ଗଳ-ମଙ୍ଗଳସଜ୍ଜ ପିତା କରି ଦେଲା । ସବୁ ମଣିଷ ଉପରେ ମନୁଷ୍ୟତା ତୋଳି ଯେଉଁ କଥାଟା ଅଛି, ତାହା ନ୍ୟାୟ ଦାବୀକଲା । ଏଗୁଡ଼ାକ ତ ପାପୀ, ହତ୍ୟାକାରୀ, ଡକାୟତ । ନ୍ୟାୟର କି ଜବାବ ଦେବେ ଏମାନେ ? ସେଇଠୁ ଆରମ୍ଭ କଲେ ଜୁଆଚୋର । ଠେସଉଠୁ ଆରମ୍ଭ କଲେ ଧର୍ମକୁ ଅଣ୍ଟିଠାଇ । କଳାପାଣିରୁ ଫେରିଥିବା ଜଗୁ ମଲିକ କହୁଥିଲା ଫାଶୀ ଦେବା ଆଗରୁ କୁଆଡ଼େ ଫାଶୀରେ ଲଟକିବା ଲୋକଟିକୁ ଗାଧୋଇ ପାଧୋଇ ଦିଅନ୍ତି, ତୁଳସୀ ଗଙ୍ଗାଜଳ ଦିଅନ୍ତି, ଭାଗବତ ପଢ଼ି ଶୁଣାଇ ତା ପରେ ହାତ ଗୋଡ଼ ବାନ୍ଧି ଦେଇ ଫାଶୀ ଖୁଣ୍ଟରେ ଝୁଲାଇ ଦିଅନ୍ତି । ଏ ଠିକ୍ ସେମିତି କଥା । ଆମକୁ ବାଟର କଙ୍ଗାଳ କରି, ବାଟ କଡ଼ରେ ପଡ଼ି ମରିବା ପାଇଁ ଆମକୁ ଠେଲିଦେଇ, ଛତ୍ରରେ ଅନ୍ନଦାନ କରି ପୁଣ୍ୟ କରିବେ ସେମାନେ ? ଆମେ ମରୁଛୁ—ଭଲ; ତୁମେ ଆମକୁ ମାରି ପକାଉଛ—ଭଲ; କିନ୍ତୁ ତମର ବଡ଼ଲୋକୀ ଦେଖାଇ, ତମର ଦୟାମାୟାର ପୁଅଙ୍ଗ ଦେଖାଇ, ଦାନଧର୍ମର ଦ୍ୱାହି ଦେଇ ଆମକୁ ଅପମାନ ଦେବ, ଆମ ମୁହଁରେ ଯୋତା ପିଟିବ—କି ଅଧିକାର ଅଛି ତମର ? କିଏ ତମକୁ ସେ ଅଧିକାର ଦେଲା ? ସେ କାହିଁ ହେବ

ନାହିଁ । ସେ ପାଠ ଚଳିବ ନାହିଁ । ବୁଢ଼ା ହେଲଣି, ଖାଇବାକୁ ନ ପାଇ ଅନ୍ତ ଶୁଖି ଗଲଣି ! ତଥାପି—ତଥାପି ମୋର ଏ ହାଡ଼ ଦ' ଖଣ୍ଡ ଡାକ ଛାଡ଼ୁଥିବ—ଗ୍ରେଟ୍, ଡକେଟ, ଲୁଅଟ୍ରେଟ୍, ହତ୍ୟାକାରୀ ।

ବୁଢ଼ାର ଆଖି ଦୁଇଟା ଜ୍ୱଳି ଉଠୁଥାଏ, ହାତ ଦୁଇଟା ମୁଷ୍ଟିବଦ୍ଧ, ଛାତିର ହାଡ଼ଗୁଡ଼ାକ ଶ୍ୱାସ ତାଳରେ ପଡ଼ି ଉଠୁଥାଏ ପଡ଼ୁଥାଏ; ଚେହେରାରୁ ଫୁଟି ପଡ଼ୁଥାଏ ରକ୍ତାକ୍ତ ହିଂସାର ପଦଚିହ୍ନ । ବାଙ୍ଗାଳଟାର ମନେ ହେଲା, ବୁଢ଼ା ସାମନାରେ ଯାହାକୁ ପାଇବ ତାକୁ କାମୁଡ଼ି ଦେବ, ନଖରେ ବିଦାରି ଦେବ । ସେ ଡ଼ରିଗଲା । ଉପୁରର ତାର ଶୀର୍ଣ୍ଣ ଛାତିଟା ଥରି ଉଠିଲା । ବାପା ରେ ବାପା; ଏ ମାଷ୍ଟର ବୁଢା—ସମସ୍ତଙ୍କୁ ଏତେ ଦେଖି ପାରେ, ଏତେ ଭଲ ପାଏ; ଏମିତି ରାଗ ତ କେହି ତାର କେବେ ଦେଖି ନ ଥିଲେ ? ବୁଢ଼ାର ମୁଣ୍ଡ ଖରାପ ହୋଇଗଲା; ବୁଢାଟା ପାଗଳ ହୋଇଗଲା । ଏଠାରୁ ପଳାଇଲେ ରକ୍ଷା । ନ ହେଲେ ଭଲ ଥାଏ ମନ୍ଦ ଥାଏ । ବାଙ୍ଗାଳଟି ଉଠି ସେଠାରୁ ଚାଲିଗଲା ।

ବୁଢ଼ା ତା ଅଡ଼କୁ ଚାହିଁ ଉଚ୍ଚ ସ୍ୱରରେ କହିଲା, 'ଧାନା, ପଳାଇଲୁ । ବିଚାରା, ଛାତି ତଳେ ତାର କେତେ ଦୁଃଖ, କେତେ ଯନ୍ତ୍ରଣା ଜମା ହୋଇଛି ରେ । ସେଇ ପଇସା—ସେଇ ଘର—ଯେମିତି ଘର ତାର ଥିଲା, ଯେମିତି ପିଲାପରିବାର ଧେନ ଘର କରୁଥିଲା । ସବୁ ଗଲା—ସବୁ ଯାଇଛି—ଆଜି ସେ ବାଙ୍ଗାଳ, ଲଙ୍ଗରେ ଭାତ ମୁଠାଏ ମିଳିବ ବୋଲି ଖୁସି ହେଉଛି ।'

ବୁଢ଼ା ମୁଣ୍ଡର ଶିରଗୁଡ଼ାକ ହଠାତ୍ ଛାଡ଼ା ହୋଇ ପଡ଼ିଲା । ଓହ ପ୍ରାଣି ଭରି କହିଲା, 'ଧାନା, ଧାନା, ମନେ ହେଉଛି ମୁଁ ତା

ତଣ୍ଡି ଶଠି ମାରିବ, ତା କଲିଜା ଶିର ପଚାରିବ, ତାର ରକ୍ତ ମୁଣ୍ଡରେ ବୋଳି ଧାଇଁ ବୁଲିବ । ସେଇ—ସେ ଉତେଇତ, ସେଇ —ସେ ଅତ୍ୟାଗୃହୀ; ସେଇ— ସେ ହତ୍ୟାକାରୀ; ସେଇ —ସେ ତୋତେ କାଙ୍ଗାଳ କରିଛି, ମୋତେ କାଙ୍ଗାଳ କରନ୍ତି, ତାକୁ କାଙ୍ଗାଳ କରିଛି ।'

ଯାନାର ଖୁସିଲା ଘୁଡ ଭିତରଟାରେ ନିଆଁର ତରଙ୍ଗ ନାଚି ବୁଲୁଥିବାର ସେ ଅନୁଭବ କଲା । ଉଠିବାର ଶକ୍ତି ନାହିଁ, ହାତ ଟେକିବାକୁ କଷ୍ଟ ହେଉଛି, ତଥାପି ତାର ଡାହାଣ ହାତଟା ମୁଠା ହୋଇଗଲା । ସେ ଡାକିଲା, 'ମାଟ୍ରେ ! '

ମାଟ୍ରେ କହିଲେ, 'ହୁଁ ! '

ବୁଢ଼ା ଆଖିରୁ ଦୁଇ ଟୋପା ଲୁହ ଗଡ଼ି ପଡ଼ିଲା ।

ଷ୍ଟାଣ୍ଡରେ ମୋଟରଟାଏ ଆସି ପହଞ୍ଚିଲା; ଯାତ୍ରୀମାନଙ୍କର ଗହଳି ଲାଗିଗଲା । ଯେ ଯାହାର ଗନ୍ତବ୍ୟ ସ୍ଥାନକୁ ଯିବାପାଇଁ ବ୍ୟସ୍ତ ।

ଟିଣ ଘରର ସେ କଣରେ ଯେ ଦୁଇଟି ବସ୍ତ୍ରହୀନ ଜୀବନ୍ତ କଙ୍କାଳ ଦୁଇଟି ବାକ୍ସ ଉପରେ ଠିକ ଚଡ଼ରେ କୁହୁଳି କୁହୁଳି ଜଳୁଥିଲା, ସେ ଆଡ଼କୁ ସେମାନଙ୍କର ଦୃଷ୍ଟି ନ ଥିଲା, ଦୁନିଆରେ କାହାର ମଧ୍ୟ ଦୃଷ୍ଟି ନ ଥିଲା ।

---

# ପଚଶ

ରମ୍ଭାଠାରୁ ଛତ୍ରପୁର ଅଡ଼କୁ ଯେଉଁ ନାଲିସଡ଼କ ପଡ଼ିଛି ତା କଡ଼ରେ ଥିବା ଗୋଟାଏ ବଡ଼ ଗାଁରେ ଶରତ୍ ଗୋଟାଏ ଆଶ୍ରମ ଖୋଲିଲା ।

ଗାଁର ସେ ମୁଣ୍ଡରେ ଗୋଟାଏ ବଡ଼ ଘର, ତାହାରେ ପୋଖରୀ, ପଛେ ଏହାର ଗୃହ କଡ଼ରେ କଦଳୀ ବଗିଚା ଥିଲା । ସେହି ଘର ଖଣ୍ଡିକ ନେଇ ଶରତ୍ ରହିଲା । ନ ରହି ତାର ଗତି ବା କଅଣ ? ବାଚେଶ୍ୱରର ନିମନ୍ତ୍ରଣ ଫଳରେ ଗଞ୍ଜାମ ଜିଲ୍ଲାର ଅବସ୍ଥା ଦେଖିବାକୁ ଆସି ତାର ଅନ୍ତରଆତ୍ମା ଶୁଷ୍କ ହୋଇଗଲା । ଏତେ ଦୈନ୍ୟ, ଏତେ ଦୁଃଖ ଯେ କିପରି ଭାବରେ ଗୋଟାଏ ଅଞ୍ଚଳରେ ପୁଞ୍ଜୀଭୂତ ହୋଇଯାଇ ପାରେ, ତାହା ଦେଖି ତାର କଳ୍ପନା ସ୍ତବ୍ଧ ହୋଇଗଲା, ତାର ହୃଦୟ ବିକ୍ଳାନ୍ତ ହୋଇଗଲା, ତାର ମନୁଷ୍ୟତା ବିଦ୍ରୋହୀ ହୋଇ ଉଠିଲା । ତା ମନେ ହେଲା, ଈଶ୍ୱର ସମସ୍ତ ଅଭିଶାପ ଏକତ୍ରିତ ହୋଇ ଏ ଅଞ୍ଚଳରେ ମୂର୍ତ୍ତିଲାଭ କରିଛି ।

କିଏ ଏମିତି କଲା ? କାହିଁକି ଏମିତି ହେଲା ? ଏସବୁ ପ୍ରଶ୍ନ ଭାବିବାକୁ ଯାଇ ତା ମସ୍ତିଷ୍କ ଭିତରେ ନିଆଁ ଜ୍ୱଳି ଉଠିଲା, ତା ଛାତି ଭିତରେ ବିପ୍ଳବର ଜ୍ୱାଳାମୟ ହଳାହଳ ଫେନିଳ ହୋଇଉଠିଲା, ତା ଶିରାପ୍ରଶିରାରେ ଧାଇଁ ବୁଲିଲା ଅଗ୍ନିର ତରଳ ସ୍ରୋତ । ମନୁଷ୍ୟ ଜଗତରେ ଯେଉଁମାନେ ଏତେ ବଡ଼ କ୍ରୂର କର୍ମ କରି ପାରନ୍ତି, ଈଶ୍ୱର ଅସୀମ କ୍ଷମା ଉପରେ ସେମାନଙ୍କର ଅଣୁମାତ୍ର ଦାବି ନାହିଁ ବୋଲି ସେ ଅନୁଭବ କଲା । ସେ ମନେକଲା, ଏଥିପାଇଁ ଯେଉଁମାନେ

ଦାସ୍ତୀ ସେମାନେ ମନୁଷ୍ୟର ଶତ୍ରୁ, ମନୁଷ୍ୟ ଜାତିର ବୈରୀ, ମନୁଷ୍ୟ ସମାଜ ଭିତରୁ ସେମାନଙ୍କୁ ଲୋପ କରିବା ପ୍ରତି ମନୁଷ୍ୟର କର୍ତ୍ତବ୍ୟ ।

ସେ ବୀରେଶ୍ୱରଙ୍କୁ କହିଲା, 'ଯେଉଁମାନଙ୍କ କାର୍ଯ୍ୟ ଫଳରେ ଆଜି ହଜାର ହଜାର ଲୋକ ଏତେ ଯନ୍ତ୍ରଣା ଭୋଗୁଛନ୍ତି, ଏପରି କିଂଶହାସ୍ତ ଭାବରେ ମୃତ୍ୟୁମୁଖରେ ପଡ଼ୁଛନ୍ତି, ଏକ ମୁହୂର୍ତ୍ତମଧ୍ୟରେ ଯଦି ଲେଲିହାନ ଅଗ୍ନି ତରଙ୍ଗ ସେମାନଙ୍କୁ ଗ୍ରାସ କରନ୍ତା, ତା ଭିତରେ ପଡ଼ି ସେମାନେ ଯଦି ରୌରବଯନ୍ତ୍ରଣା ଭୋଗ କରନ୍ତେ, ତେବେ ସେମାନଙ୍କ ପ୍ରତି ମୋର କୌଣସି ସହାନୁଭୂତି ହୁଅନ୍ତା ନାହିଁ, ବୀର ।'

ବୀର ହସି ହସି କହିଲା, 'ଅଥଚ ତୁ ଅହିଂସାର ଏକନିଷ୍ଠ ସାଧକ ।'

ଶରତ୍ ଗମ୍ଭୀର ଭାବରେ କହିଲା,'ଏହାହିଁ ତ ଚରମ ଅହିଂସା । ଯେଉଁମାନଙ୍କ ହିଂସାପୂର୍ଣ୍ଣ କାର୍ଯ୍ୟ ଫଳରେ ସହସ୍ର ସହସ୍ର ଲୋକ ମୃତ୍ୟୁମୁଖରେ ପଡ଼ୁଛନ୍ତି, ଅହିଂସା ଉପରେ ଦାବୀ କରିବାରେ ତ ସେମାନଙ୍କର କୌଣସି ଅଧିକାର ନାହିଁ ।'

କିନ୍ତୁ ଏପରି ନିରର୍ଥକ ଅକ୍ରୋଶଦ୍ୱାରା ତ ଜଣେ ଭୁଖା ଲୋକର ପେଟ ପୂରିବ ନାହିଁ କି ଗୋଟାଏ ପିଲା ମୃତ୍ୟୁମୁଖରୁ ଫେରି ଆସିବ ନାହିଁ । ସେଥିପାଇଁ ଶରତ୍ ଠିକ୍ କଲା, ସେ ଏହି କାଙ୍ଗାଳମାନଙ୍କ ସହିତ ରହିବ, ତାଙ୍କ କରୁଣ ହୃଦୟରେ ଅଣୁବ ଫଗୁର କରିବାରେ ଚେଷ୍ଟା କରିବ, କିଛି କରି ନ ପାରିଲେ ତ ସେମାନଙ୍କ ମନରେ ଟିକିଏ ଆଶ୍ୱାସନା ଦେଇ ପାରିବ । ସେଇଥିପାଇଁ ଶରତ୍ ସେ ଗାଁରେ ଘରଖଣ୍ଡିଏ ନେଇ ରହିଲା ।

ଗୀରେଶ୍ୱର ଏ ଘରକୁ ଶରତ୍‌ର ଆଶ୍ରମ ବୋଲି ଆଖ୍ୟା ଦେଇ କହୁଥିଲା । ଶରତ୍ ଏହାର ପ୍ରତିବାଦ କଲେ ମଧ୍ୟ ସେ ଘର ଗଣ୍ଡି ଗ୍ରାମରେ ଆଶ୍ରମ ବୋଲି ପରିଚିତ ହୋଇଗଲା ।

ଶରତ୍‌ର ଆଶ୍ରମ ଆରମ୍ଭ ହେବାର ଦଶଦିନ ପରେ ଗୀରେଶ୍ୱର ସମୟ କରି ଆସି ଦେଖିଲା, ଘର ଆଗରେ ଏକ ଛାମୁଣ୍ଡିଆ, ତା ତଳେ ଅନେକଗୁଡ଼ିଏ କାଙ୍ଗାଳ ରୁଣ୍ଡ ହୋଇଛନ୍ତି, ଘର ଭିତରେ ମଧ୍ୟ କାମଧନ୍ଦାର ଯୋଗାଡ଼ । ଗୁଡ଼ାଏ କାଙ୍ଗାଳ ପିଲା କୁଆଡ଼ୁ ଆସି ଯୁଟି ଯାଇଛନ୍ତି । ଗୋଟାଏ ଘରେ ରହିଛି ଗୁଡ଼ାଏ ଅରଟ । ତିନି ଚାରିଜଣ ଲୋକ ସେଥିରେ କଟିବାରେ ବ୍ୟସ୍ତ । ଶରତ୍ ନିଜେ କୋଠ ଉପରେ ଗୋଟାଏ ପିଲାକୁ ଗାଧୋଇ ଦେଉଛି । ପିଲାଟିର ମୁଣ୍ଡରୁ କେଶପୁଞ୍ଜ ଉପୁଡ଼ି ଯାଇଛି, ଆଖି ଦୁଇଟି କୋଟରଗତ, ଗାଲର ହାଡ଼ ବାହାରି ପଡ଼ିଛି, ଦେହରେ ହାଡଗୋଡ଼ ଗୁଡ଼ାକ ଶୁଖିଲା ଡାଙ୍ଗ ଗୁଡ଼ିଏ ପରି ରହିଛି, ଛାତିର ପଞ୍ଜରା ଗଣି ହେଉଛି, ବାହାରକୁ ବାହାରି ପଡ଼ିଛି କେବଳ ପେଟଟା । ଏହି ପିଲାଟା— ଶରତ୍ ଏହାକୁ ନିଜ ପୁଅପରି ଯତ୍ନକରି ଗାଧୋଇ ଦେଉଥିବାର ଦେଖି ଗୀରେଶ୍ୱର ସ୍ତମ୍ଭୀଭୂତ ହେଲା ।

ଘରେ ବସି ଗୀରେଶ୍ୱର ପଚାରିଲା, 'ଏଗୁଡ଼ିକୁ କୁଆଡ଼ୁ ସଂଗ୍ରହ କରିଛୁ, ଶରତ୍ ?'

ଶରତ୍ କହିଲା, 'ସଂଗ୍ରହ କରି ନାହିଁ, ଏମାନେ ଯେ କୁଆଡ଼ୁ ଆସି ପହଞ୍ଚିଗଲେ ମୁଁ ବୁଝି ପାରୁ ନାହିଁ । ଏତେଗୁଡ଼ିଏ ମୋର ଆପଣାର ଲୋକ ଯେ କେମିତି କୁଆଡ଼େ ଲୁଚି ରହିଥିଲେ, ତାହା ମଧ୍ୟ ଧାରଣା କରିପାରୁ ନାହିଁ ; କିନ୍ତୁ କେବଳ ଏତିକି ବୁଝି ପାରୁଛି, ଏତେ ବଡ଼ ଦାୟିତ୍ୱ ମୁଣ୍ଡାଇବା ଭଳି ଶକ୍ତି ମୋର ନାହିଁ ।'

ସାରେଶ୍ୱର ହସିଲା ।

ଶରତ୍ କହିଲା, 'ତୁ ହସୁଛୁ, ସାର । ଏମାନଙ୍କୁ ବଞ୍ଚାଇବା, ଏମାନଙ୍କୁ ମଣିଷ କରିବା ଦାୟିତ୍ୱ ତ ଏକା ଦିନକେ ସରିବ ନାହିଁ । ଆଉ ସାରା ଜୀବନ ଏତେ ବଡ଼ ବୋଝ ବୋହି ବୁଲିବା କଅଣ ସହଜ କଥା ? ଖାଲି ମୋର ମନେ ହେଉଛି, ଯେଉଁମାନେ ଏ ପିଲାଗୁଡ଼ାକର ମୁଖର ଗ୍ରାସ କାଢ଼ି ନେଲେ, ବାପମାଆର ଅଶ୍ରୁ ଝରିଦେଲେ, ସେମାନେ କେଡ଼େ ରାକ୍ଷସ !'

ସାରେଶ୍ୱର କହିଲା, 'ଦେଖ, ତୋତେ ପରାମର୍ଶ ବା ଉପଦେଶ ଦେବ ଏଭଳି ଶକ୍ତି ବା କ୍ଷମତା ମୋର ନାହିଁ, ସେକଥା ତୁ ଜାଣୁ; କିନ୍ତୁ ମୁଁ ଗୋଟାଏ କଥା କହୁଛି, ଯେ ବା ଯେଉଁମାନେ ଏ ମଡ଼କ ପାଇଁ ଦାୟୀ ସେମାନଙ୍କ ବିଚାର ଆଜି ନୁହେ, କାଲି ନୁହେଁ, ଯୁଗ ଯୁଗ ଧରି କରିବ ଜାତି, କରିବ ସମାଜ, କରିବ ଇତିହାସ । ସେମାନଙ୍କ ବିରୁଦ୍ଧରେ ଆଜି ମନୁଷ୍ୟତାର କୋଧ ପୁଞ୍ଜୀଭୂତ ହୋଇଛି, କାଲି ପୁଞ୍ଜୀଭୂତ ହେବ ଅବଜ୍ଞାନ—ଘୃଣା । ତୁ ସେମାନଙ୍କର ବିଚାର କର ନାହିଁ । ଯେଉଁ ପବିତ୍ର କାମରେ ତୋ ହାତ ନିୟୋଜିତ ହୋଇଛି, ତା ନିକଟରେ ବିଚାରକର ନ୍ୟାୟସଙ୍ଗତ କୋଧ ନିଷ୍ପ୍ରଭ ହୋଇଯିବ । ମୁଁ ସରକାରୀ ଚାକର ସତ; କିନ୍ତୁ ମୋର ମଧ୍ୟ ଆଖି ଅଛି, ମସ୍ତିଷ୍କ ଅଛି । ମୁଁ ମଧ୍ୟ ଭବିଷ୍ୟତ୍ ଗର୍ଭକୁ ଆଖି ପକାଇ ଦେଖି ପାରୁଛି । ଦେଖୁଛି କଅଣ ଜାଣୁ ? —ବିପ୍ଳବ ।'

ଶରତ୍ ହସି ପକାଇଲା ।

ସାରେଶ୍ୱର କହିଲା, 'ତୁ ହସୁଛୁ ଯେ ମୋ ମୁହଁରେ ଏକଥା ଶୋଭା ପାଉ ନାହିଁ । ଠିକ୍; କିନ୍ତୁ ବନ୍ଧନ ଯାର ଯେତିକି ଦାଣ, ମୁକ୍ତିର ସ୍ପର୍ଶ ସେ ସେତିକି ଅଗରୁ ପାଏ । ବିପ୍ଳବର ଅଭିମୁଖୀ

ଯେଉଁମାନେ, ବିପ୍ଳବର ଉଦ୍ଭବ ଯୋଗୁଁ ଯେଉଁମାନଙ୍କ ସ୍ୱାର୍ଥରେ ପଡ଼ିବ, ବିପ୍ଳବଦ୍ୱାରା ଯେଉଁମାନେ ଚୂର୍ଣ୍ଣୀଭୂତ ହୋଇଯିବେ, ବିପ୍ଳବକାସ୍ତ ଆଗରୁ ବିପ୍ଳବର ସନ୍ଧାନ ସେମାନେ ପାଇଥାନ୍ତି । ସେଥିପାଇଁ ସେମାନେ ତା ବିରୁଦ୍ଧରେ ଆରମ୍ଭ କରନ୍ତି ଦମନ; ସେଇଥିପାଇଁ ସେମାନେ ବିପ୍ଳବର ଆଗମନ ଆଶଙ୍କାରେ ଶଙ୍କିତ ହୋଇ ପଡ଼ନ୍ତି, ଭୀତତ୍ରସ୍ତ ହୋଇପଡ଼ନ୍ତି ।

ଶରତ୍ ହସି ହସି କହିଲା, 'ଠିକ୍ କଥା! ଯେ; କିନ୍ତୁ ବିପ୍ଳବ ହେଲେ ତୁ କରିବୁ କଅଣ, ମୁଁ ସେଇ କଥା ପଚାରୁଛି ।'

'ମୁଁ କରିବି କଅଣ ? ଗୁଳିଖିଆ ଜୀବ ତ, ପ୍ରଥମ ଘରେ କବାଟ ବନ୍ଦକରି, ବନ୍ଧୁକରେ କେଟ୍ରିଜ୍ ଦେଇ ତାକୁ ସଜାଇ କରି ରଖି ଦେବି । ତାପରେ ଯଦି ଦେଖିଲି ବିପ୍ଳବ ଆନ୍ଦୋଳନ ଫେଲ୍, ଜୋଶମାନା, ରକ୍ତ ଓ ଗୁଳିରେ ଦବିଲା ତ, 'ସରକାର ବାହାଦୁର ଜିନ୍ଦାବାଦ୍';ଆଉ ଯଦି ବିପ୍ଳବ ଆନ୍ଦୋଳନ ସଫଳ ହେଲା, ତେବେ ଏକା ଡିଅଁକେ ଜାତୀୟ ପତାକା ଖୁଣ୍ଟ ତଳେ ଛିଡ଼ାହୋଇ 'ଇନକିଲାବ୍ ଜିନ୍ଦାବାଦ୍' ।

ଶରତ୍ ହସିଲା, ଧୀରେଶ୍ୱର ମଧ୍ୟ ହସି ପକାଇଲା ।

ପିଲାଟିଏ ଘର ଭିତରକୁ ପଶିଆସି କହିଲା, 'ଭାଇ, ହରିଅଙ୍କୁ ଜ୍ୱର ଆସିଲାଣି ।'

ଶରତ୍ ତାକୁ କହିଲା, 'ଯାଉଛି ।'

ଧୀରେଶ୍ୱରକୁ କହିଲା, 'ପିଲାଟାକୁ ଜ୍ୱର ଆସିଲାଣି । ତୁ ବସ, ମୁଁ ଟିକିଏ ତାକୁ ଦେଖିଆସେ ।'

ଶରତ୍ ବାହାରି ଗଲା ଘର ଭିତରକୁ, ଧୀରେଶ୍ୱର ସେଇ ଅଡ଼କୁ ଚାହିଁ ଭାବୁଥାଏ ଲୋକଟା କଥା । ଏତେଟା ଘରକୁ ନେଇ ନିଜ ଜୀବନ କଟାଇ ଦେଲା—ଆଉ ସେ ?

ବାହାରୁ ବାଙ୍ଗାଲଗୁଡ଼ିକର କଥାବାର୍ତ୍ତା ଶୁଣା ଯାଉଥିଲା । ଝମ୍ପୁଡ଼ିଆ ବାହାରେ ପଡ଼ୁଥିଲା ସୁନେଲି ଖରା । ବାରଅଛେଡ଼ ଗୋଟାଏ କଜଳପାତି ଡାକୁଥିଲା ।

———

## ଛବିଶ

ପ୍ରମୋଦ ଯାଇ ପହଞ୍ଚିଲା ଲିଲିଙ୍କ ଘରେ ।

'ମଧୁକର' ପତ୍ରିକାରେ କ୍ଷିତୀଶର ଗୋଟାଏ ପ୍ରେମଗଳ୍ପ ବାହାରିଛି । ସେ ଗଳ୍ପର ନାୟକ ପ୍ରମୋଦ ଓ ନାୟିକା ଲିଲି । ଅବଶ୍ୟ ଲେଖକ 'ପ୍ରମୋଦ' ନାମ ପରିବର୍ତ୍ତେ 'ପ୍ରଦୋଷ' ଓ 'ଲିଲି' ପରିବର୍ତ୍ତେ 'ବଲି' କରିଛି; କିନ୍ତୁ ଏ ଦୁହିଙ୍କର ପ୍ରେମର ବିଶିଷ୍ଟ ଅଭିବ୍ୟକ୍ତିକୁ ରୂପଦାନ କରିବା ଯେ ଏ ଗଳ୍ପର ଉଦ୍ଦେଶ୍ୟ ଏ କଥା ପତ୍ରିକାଟିରେ ଲେଖା ପ୍ରକାଶିତ ହୋଇଛି ବୋଲି ସାଙ୍ଗେ ସାଙ୍ଗେ କ୍ଷିତୀଶ ପ୍ରମୋଦ ପାଖକୁ ଧାଇଁଯାଇ କହିବାକୁ ଛାଡ଼ି ନାହିଁ । ସୁନେଲି ହାଓ୍ୱା, ମଖମଲ ପରି ଚନ୍ଦ୍ର କିରଣ, ମେଲ୍‌ଗାଡ଼ି ପରି ତୀବ୍ର ଆବେଗ, କୋଠନ ଗଛର ରଙ୍ଗୀନ ଅଶ୍ରୁ, ସଗେଣୀର ସହାସ୍ୟ ଚୁମ୍ବନ, ଭେନସ୍ ପ୍ରତିମା ପରି ଚେହେରା, ମେଡ଼ୋନା ପରି ଗ୍ରୀବାଭଙ୍ଗୀ, ଗ୍ରାମଫୋନ ରେକର୍ଡ଼ ପରି ସ୍ୱରଲହରୀଭରା ହୃଦୟ, ଟର୍ଚ୍ଚ ଲାଇଟ ପରି ଅଧିର ଜ୍ୟୋତି—ଏ ସବୁଗୁଡ଼ାକର ଯଥାଯଥ ସଂଯୋଗ ଫଳରେ କ୍ଷିତୀଶ ଏପରି ଧରଣର ଗୋଟାଏ ଅର୍ଥ ଅନୁସାରେ ଏ ଗଳ୍ପଟିକୁ ଗଢ଼ିଛି ଯେ, ଓଡ଼ିଆ ସାହିତ୍ୟରେ କୌଣସି ଦିନ ତାହା ଦେଖାଦେଇ ନ ଥିଲା; ଅହୁରି ଶହେ ବର୍ଷରେ ମଧ୍ୟ ଦେଖା ଦେବ କି

ନା ସନ୍ଦେହ । ତାର ଧାରଣା, ଏହାକୁ ଇଂରେଜରେ ଅନୁବାଦ କଲେ ନୋବେଲ୍ ପ୍ରାଇଜ୍‌ଟା ଉପରେ ତାର ଦାବୀ ସମ୍ପୂର୍ଣ୍ଣ ରୂପେ ସାବ୍ୟସ୍ତ ହୋଇଯିବ । ପ୍ରମୋଦ, ବନମାଳୀ ଓ କ୍ଷିତୀଶ ତିନିହେଁ ବସି ଗଳ୍ପଟାର ଆଲୋଚନା କରୁ କରୁ କ୍ଷିତୀଶ ଏହି ମତ ବ୍ୟକ୍ତ କରି ଥିଲା, ବନମାଳୀ ଓ ପ୍ରମୋଦ ଏ ମତକୁ ହୃଦୟର ସହିତ ସମର୍ଥନ କରିଥିଲେ ।

ବନମାଳୀ କହିଲା, 'ଦେଖ ପ୍ରମୋଦ ବାବୁ, ଏ ଗଳ୍ପ ମିସ୍ ମହାନ୍ତିଙ୍କ ଦୃଷ୍ଟିକୁ ଆସିବା ଦରକାର । ସେ 'ମଧୁକର' ପଢ଼ନ୍ତି ତ ?'

ପ୍ରମୋଦ କହିଲା, 'ନା, ଲିଲି ଓଡ଼ିଆ ପଢ଼ିବା ଦେଖିବାର ମୁଁ କେବେ ଦେଖି ନାହିଁ । ଅନେକ ସେ ମତେ କହିଛନ୍ତି, ଓଡ଼ିଆ ପଢ଼ିବାରେ ଅର୍ଥ ନ ଥାଏ । ସେଥିପାଇଁ ସେ ସବୁ ପଢ଼ିବା ପଢ଼ି ସମୟ ନଷ୍ଟ କରିବାକୁ ସେ ଠିକ ମନେ କରନ୍ତି ନାହିଁ ।'

କ୍ଷିତୀଶ ଏଥିରେ ଏକମତ ହୋଇ କହିଲା, 'ଓଡ଼ିଆ ମାସିକ-ପତ୍ରର ସମ୍ପାଦକଗୁଡ଼ାକର ଅର୍ଥ ଜନଗଣ ସହିତ ପରିଚୟ ନାହିଁ କହିଲେ ଚଳେ । ସେଥିପାଇଁ ଏ ସବୁ ପଢ଼ିବା ପଢ଼ିଲେ ମନରେ ଆନନ୍ଦ ଜାଗେ ନାହିଁ —ଜାଗେ ବିରକ୍ତି ।

ବନମାଳୀ ବିରକ୍ତ ହୋଇ କହିଲା, 'ଦେଖ କ୍ଷିତୀଶ, ମୁଁ ଅର୍ଥର ଆଲୋଚନା କରୁ ନାହିଁ; ମୁଁ କହୁଛି, ଏ ଲେଖାଟା ଯେପରି ମିସ୍ ମହାନ୍ତିଙ୍କ ଦୃଷ୍ଟିରେ ପଡ଼େ ତାର ବ୍ୟବସ୍ଥା କରିବା ପ୍ରମୋଦ ବାବୁଙ୍କ କର୍ତ୍ତବ୍ୟ ।'

'ତା ନ ହେଲେ ଯେ ମୋ ଲେଖାର ମୂଳ ସାର୍ଥକତାଟା ଲୋପ ପାଇଯିବ', କ୍ଷିତୀଶ ସାହିତ୍ୟିକ ସୁଲଭ ଭାଷାରେ କହିଲା ।

ସେତିକି ବେଳକୁ 'ମଧୁକର' ଖଣ୍ଡିକ ପ୍ରମୋଦ ହାତରେ ସବୁବେଳେ ରହିବାର ସୌଭାଗ୍ୟ ଲାଭ କଲା । କଲେଜର ଯେତେ

ଜଣ ସଙ୍ଗୀଙ୍କୁ ଏ ଲେଖାଟା ଦେଖାଇବା ସମ୍ଭବ, ସମସ୍ତଙ୍କ ଦୃଷ୍ଟିକୁ ତାହା ଆଣିବା ଢଙ୍ଗରେ ପ୍ରମୋଦ ପ୍ରବଳ ଉଦ୍ୟମ ଚଳାଇବାରେ ତ୍ରୁଟି କରି ନ ଥିଲା । ପ୍ରଥମେ ତାʼର ଆଗ୍ରହ ହୋଇଥିଲା, ଲିଲି ପାଖକୁ ଧାଇଁଯାଇ ଏ ପତ୍ରିକାଟି ଦେଖାଇବ; କିନ୍ତୁ ବଦମାସ୍ ମଲ୍ଲିକା ଧୋବା ତାରି ସିଲ୍କର ବ୍ଲାଉଜ୍ ପଞ୍ଜାବୀଟା ତ ଦେଇ ନ ଥିଲା; ସେ ଯିବ କେମିତି ତା ପ୍ରେମିକା ପାଖକୁ । ଟ୍ରଙ୍କରେ ଅନ୍ୟ ବହୁତ ଜାମା ଗଣ୍ଡ ଭାଙ୍ଗି ଥିଲେ ମଧ୍ୟ ସେ ସବୁରୁ କୌଣସିଟାକୁ ପିନ୍ଧି ତାଙ୍କ ଘରକୁ ଯିବାପାଇଁ ତା ମନ ବଳିଲା ନାହିଁ । ପ୍ରେମିକସୁଲଭ ଚେତେଇ ନ ଥାଇ ଏତେ ଗଳ୍ପର ନାୟକ ହେବା ଉଚିତ ନୁହେଁ ।

ତେଣୁ ତହିଁ ଆରଦିନ ସକାଳେ 'ମଧୁକର' ଖଣ୍ଡିକୁ ଧରି ପ୍ରମୋଦ ଲିଲିଙ୍କ ଘରେ ଯାଇ ପହଞ୍ଚିଲା । ସେତେବେଳେ ଲିଲି ତା ଟେବୁଲ ପାଖରେ ବସି ଖଣ୍ଡେ ବଙ୍ଗଳା ଉପନ୍ୟାସ ପଢୁଥିଲା । ପ୍ରମୋଦକୁ ଦେଖି ସେ କିଛି କହିଲା ନାହିଁ ।

ପ୍ରମୋଦ ଖଣ୍ଡିଏ ଚୌକିରେ ବସିପଡ଼ି କହିଲା, 'ସନ୍ତୋଷ ବାବୁ ଯେଉଁ ଗଳ୍ପଟି ଲେଖିଛନ୍ତି, ତମେ ଦେଖିଛ ?'

ଲିଲି କହିଲା, 'କି ଗଳ୍ପ ?'

'ଏଇ ମାସର 'ମଧୁକରରେ' ଛାପା ବାହାରିଛି ।'

'ରବିସ୍, ବାଜେ । ସେସବୁ ମୁଁ ପଢେ ନା—ସେସବୁ ପଢିବା ପାଇଁ ମୋର ସମୟ ନାହିଁ ।'

ପ୍ରମୋଦ ହତାଶ ହେଲା । ଏ ପତ୍ରିକାରେ ପ୍ରକାଶିତ ହୋଇଥିବା ଗଳ୍ପଟି ସେ କେମିତି ଲିଲି ଦୃଷ୍ଟିକୁ ଆଣିବ, ତାହା ତା ପକ୍ଷରେ ଏକ ସମସ୍ୟା ହୋଇ ପଡ଼ିଲା ।

ପତ୍ରିକାରେ ପ୍ରକାଶିତ ହୋଇଥିବା ଗଳ୍ପଟି ବାହାର କରି ସେ ଲିଲି ଆଗକୁ ବଢ଼ାଇ ଦେଇ କହିଲା, 'ଦେଇଛି ସେ ଗଳ୍ପଟା । ସେଥିରେ ପ୍ରେମର ଏକ ଅର୍ଟିଷ୍ଟିକ୍ ଅଭିବ୍ୟକ୍ତି ଅତି ସୁନ୍ଦର ଭାବରେ କ୍ଷିତୀଶ ଫୁଟାଇଛି ।'

ବଙ୍ଗଳା ଉପନ୍ୟାସ ଉପରୁ ଦୃଷ୍ଟି ଉଠାଇ ଲିଲି କହିଲା,'ଭାଇ ଗଣ୍ଡେ ଚିଠି ଦେଇଛନ୍ତି ।'

'ଭଲ କଥା; କିନ୍ତୁ ଏ ଗଳ୍ପଟା… '

'ସେଥିରେ ସେ ଗଞ୍ଜାମ ଯିବା ପାଇଁ ମୋତେ ଲେଖିଛନ୍ତି ।'

'ଠିକ୍, କିନ୍ତୁ କ୍ଷିତୀଶ …..'

'ଆପଣ ମଧ୍ୟ ଇଚ୍ଛା କଲେ ମୋ ସାଙ୍ଗରେ ଯାଇ ପାରନ୍ତି । ଭାଇ ଲେଖିଛନ୍ତି, ପ୍ରମୋଦ ବାବୁଙ୍କୁ ମଧ୍ୟ ଆସିବାକୁ କହିବୁ ।'

ପ୍ରମୋଦ ବ୍ୟଗ୍ର ହୋଇ କହିଲା, 'କାହିଁକି ?'

ଲିଲି ସେହି ବହି ଆଡ଼କୁ ଚାହିଁ ଚାହିଁ କହିଲା, 'ଶରତ ବାବୁ ଗଞ୍ଜାମରେ ଆଶ୍ରମ ଖୋଲିଛନ୍ତି । ସେ ଆଶ୍ରମରେ ଦୁଇଶରୁ ଡଜନ୍ ଅନାଥ ପିଲା ଅଛନ୍ତି । ଗୁଡ଼ାଏ କାଙ୍ଗାଳଙ୍କୁ ପ୍ରତିଦିନ ସେଠାରେ ଖାଇବାକୁ ଦିଆ ଯାଉଛି । ଶରତର ଏସ କାର୍ଯ୍ୟ ପରିଦର୍ଶନ କରିବା ପାଇଁ ଭାଇ ଆମକୁ ଡାକିଛନ୍ତି ।'

'ଅର୍ଥାତ୍ ?'

'ଶରତ୍ ବାବୁ ତ ପାଗଳ । ଭାଇଙ୍କର ମଧ୍ୟ ସେ ଧରଣର ପାଗଳପଣିଆ ଅଛି । ଦୁହେଁ ମିଶି ଗୋଟାଏ କାର୍ଯ୍ୟ ଆରମ୍ଭ କରିଛନ୍ତି । ଶରତ୍ ବାବୁଙ୍କର ତ କିଛି କାମ ନାହିଁ । ସେ ଏ କାମରେ ଲାଗିଛନ୍ତି । ଅଉ ଭାଇ ଯାହା ଦରମା ପାଉଛନ୍ତି, ସେଥିରୁ ନିଜ ଖର୍ଚ୍ଚ ପାଇଁ ଖୁବ୍ କମ ଟଙ୍କା ରଖି ବାକିତକ ସେଥିରେ ଲଗାଉଛନ୍ତି । ମୁଁ ନୂଆ

ଝଙ୍କାଲନର ଖଣ୍ଡେ ବ୍ରହ୍ମପୁରୀ ଶାଢ଼ୀ କିଣିବାକୁ ଲେଖିଥିଲି । ଉତ୍ତର ଆସିଲା ୪୦ ଟଙ୍କାରେ ଚଳୁଛି । ଅଉ ଟଙ୍କା ନାହିଁ ।'

ଦେଖ, ଏଗୁଡ଼ାକ ଠିକ୍ ନୁହେଁ ।'

'କେଉଁଟା ଠିକ୍ ନୁହେଁ ? ବ୍ରହ୍ମପୁରୀ ଶାଢ଼ୀ......'

'ନା, ନା, ତା ନୁହେଁ—ଏମିତି ବାଜେ କାମରେ ପଇସା ଖରଚ କରିବା ଠିକ୍ ନୁହେଁ ।'

ଲିଲି ବହିଖଣ୍ଡ ଟେବୁଲ ଉପରେ ରଖିଦେଇ କହିଲା, 'ଆପଣ ଯିବେ ତ ? ଆସନ୍ତା ଶନିବାର ଦିନ ମୁଁ ଯିବି ବୋଲି ସ୍ଥିର କରିଛି ।'

ପ୍ରମୋଦ କହିଲା, 'ତମର ସଙ୍ଗସୁଖ ଲାଭ କରିବାର ଲୋଭ ଛାଡ଼ିବା ସମ୍ଭବ କି ?'

ଲିଲି ଗମ୍ଭୀର ଭାବରେ କହିଲା, 'ପ୍ରମୋଦ ବାବୁ !'

'ଅଚ୍ଛା ରହସ୍ୟ ଉପରେ ମଧ୍ୟ ୧୪୪ ଧାରା ଜାରି କଲେ ଦମ୍ ବନ୍ଦ ହୋଇ ଯିବାର ଆଶଙ୍କା ଅଛି । ଚିଲିକାର ଦୃଶ୍ୟ, ଗଞ୍ଜାମର ନୀଳମାଳ ପାହାଡ଼ପର୍ବତର ଦୃଶ୍ୟ, ସାଙ୍ଗ ହୋଇ ଦେଖିବାର ସୁଯୋଗଟାକୁ ହେଳାରେ ହରାଇବାର ପାତ୍ର ଅନ୍ତତଃ ମୁଁ ନୁହେଁ । ଅଜି ତା ସାଙ୍ଗକୁ ଶରତ୍ ବାବୁଙ୍କର ପାଗଳପଣିଆ । ଏ ଉପଲକ୍ଷ ଧରି ଯଦି ସବୁ କାମ ହୋଇଯାଏ, ତେବେ କ୍ଷତି କଣ ?'

ଲିଲି ହସି ହସି କହିଲି,'ଆପଣ ବଡ଼ ଖୋଲା ଭାବରେ କଥା-ଗୁଡ଼ାକ କହନ୍ତି ।'

'ତମ ପାଖରେ ଖୋଲାଖୋଲି କଥା ନ କହିଲେ ପାପ ହେବ ।'

'ତେବେ, ମୁଁ ଅଜି ଭାଇଙ୍କୁ ଚିଠି ଲେଖୁଛି ଯେ, ଆମେ ଦୁହେଁ ଆସନ୍ତା ଶନିବାର ତାଙ୍କ ପାଖକୁ ଯିବୁଁ ।'

ଲିଲି ଜୋରେ ଡାକିଲା, 'ପ୍ରକାଶ !'

ପ୍ରମୋଦ ମଧ୍ୟ ଉଠିଲା ।

ଷ୍ଟିମରର ସର୍ଚ୍ଚଲାଇଟ୍ ଆଲୋକ ଆସି ପଡ଼ି ରହିଲା ଲିଲିର ଚେହେରା ଉପରେ ।

---

## ସତାଇଶ

ଶରତ୍‌ର ଆଶ୍ରମ । ଦିନ ୧୨ଟା ହେବ । ଗ୍ରାମ୍ୟ ଲୋକେ ଧାଡ଼ିକୁ ଧାଡ଼ି କାଙ୍ଗାଳି ଖାଇବାକୁ ବସିଛନ୍ତି । ସେମାନଙ୍କ ପତ୍ରରେ ଦିଆଯାଇଛି ଭାତ, ଡାଲି, ତରକାରୀ — ଛତର ଖାଇ ନୁହେଁ । ଶରତ୍ ଅଣ୍ଟାରେ ଲୁଗା ଭିଡ଼ି ପରିବେଷଣ କରୁଛି ।

ଏହି ସମୟରେ ଖଣ୍ଡେ ମୋଟର ଗାଡ଼ି ଆସି ଆଶ୍ରମ ଦ୍ୱାରରେ ଛିଡ଼ା ହେଲା । ସେଥିରୁ ଓହ୍ଲାଇ ଆସିଲେ ବୀରେଶ୍ୱର, ଲିଲି ଓ ପ୍ରମୋଦ ।

ଶରତ୍ ସେମାନଙ୍କୁ ଦେଖି କହିଲା, 'ତୁମେମାନେ ଘରେ ଯାଇ ବସ । କାମ ସାରି ମୁଁ ଯାଉଛି ।'

ଘର ଆଡ଼କୁ ଚାଲି ଚାଲି ବୀରେଶ୍ୱର ଜବାବ ଦେଲେ, 'ହଉ, ଆପଣଙ୍କର କର୍ତ୍ତବ୍ୟ ସମାପନ ହେଉ ।'

ଘର ପିଣ୍ଡାରେ ବସି ସେମାନେ କାଙ୍ଗାଳମାନଙ୍କ ଭୋଜନ ଦେଖୁଥିଲେ । ପ୍ରାୟ ଦୁଇଶହ କାଙ୍ଗାଳ । ସେମାନଙ୍କୁ ଅତି ଯତ୍ନର ସହିତ, ପରିଷ୍କୃତ ପରିଚ୍ଛନ୍ନ ଭାବରେ ଖାଦ୍ୟ ଦିଆ ଯାଉଛି । ସେମାନେ

ମନୁଷ୍ୟ ଭାବରେ ତାହା ନେଉଛନ୍ତି । ସମ୍ପ୍ରଦାୟ ବ୍ୟବସ୍ଥା ଭିତରେ ମନୁଷ୍ୟ ପ୍ରତି ସମ୍ମାନ ଓ ଅନ୍ତରକ ସେବାଭାବ ଫୁଟି ଉଠୁଛି । ଏଠାରେ ଛନ୍ଦ ଦ୍ୱାରରେ ଜଗିଥିବା ନାଲପଗଡିର ଔଦ୍ଧତ୍ୟ ନାହିଁ ବା ଛନ୍ଦର ବିତରଣ ଭିତରେ ଦେଖା ଯାଉଥିବା ଅଭଦ୍ରତା ବା ତାଚ୍ଛଲ୍ୟର ଚିହ୍ନ ନାହିଁ । ଶାନ୍ତିସଂଘର ସେବାରେ ଯେ ଉଦାର ପବିତ୍ରତା ପ୍ରକାଶ ପାଇଥାଏ ଆଶ୍ରମର ପ୍ରତ୍ୟେକ କାର୍ଯ୍ୟ ଭିତରେ ତାହା ସ୍ପଷ୍ଟ ହୋଇ ଉଠିଥିଲା ।

ସାରେଶ୍ୱର ବସି ବସି ଏ ସବୁ ଲକ୍ଷ୍ୟ କରୁଥିଲା; ଶରତ୍ ପ୍ରତି ସ୍ନେହସୌହାର୍ଦ୍ଦ୍ୟରେ ତାର ଛାତି ଫୁଲି ଉଠୁଥିଲା ।

ଲିଲି ଓ ପ୍ରମୋଦ ମୂକ ପରି ବସି ଏ ସବୁ ଦେଖୁଥିଲେ । ଶରତ୍‌ର ଏ ସବୁ କାର୍ଯ୍ୟର ମର୍ମ ବୁଝିବା ପରି କ୍ଷମତା ବା ଇଚ୍ଛା ସେମାନଙ୍କର ନ ଥିଲା । ଛନ୍ଦସ୍ଥଳରୁ ଏ ପର୍ଯ୍ୟନ୍ତ ମୋଟରରେ ଆସିବାର କ୍ଳାନ୍ତି ଓ ଦୁହିଁଙ୍କର ସାନ୍ନିଧ୍ୟର ମୋହ, ସେମାନଙ୍କ ପକ୍ଷରେ ଯଥେଷ୍ଟ ଥିଲା ।

ଖାଇ ସାରି କାଙ୍ଗାଳମାନେ ପାଖ ତୋଟାରେ ବନ୍ଧା ହୋଇ ଥିବା ଛାମୁଣ୍ଡିଆ ତଳେ ବିଶ୍ରାମ ନେବାକୁ ଗଲେ । ହାତଗୋଡ଼ ଧୋଇ ଆସି ଶରତ୍ ଅରଟ ଖଣ୍ଡେ ଧରି ବସି ପଡ଼ିଲା । ସେତେବେଳକୁ ସେ ଘରେ ସାରେଶ୍ୱର, ଲିଲି ଓ ପ୍ରମୋଦ ବସିଥିଲେ । ଗୋଟାଏ ଅନାଥ ପିଲା କଞ୍ଚା ତଳଣା ଆଣି ଶରତ୍ ପାଖରେ ଥୋଇ ଦେଇଗଲା ।

ଶରତ୍ କହିଲା, 'ଖାଇବା କାମଟା ସାରି ଦେବା ଭଲ; ଏଠି ଆଉ କ'ଣ ବ୍ୟବସ୍ଥା ହେବ ?'

ସାରେଶ୍ୱର କହିଲା, 'ଦେଖ, ସମସ୍ତଙ୍କୁ କାଙ୍ଗାଳ ମନେ କରିବା ଠିକ୍ ହେବ ନାହିଁ । ତୁ ଦେଖୁଛୁ, ମୁଁ ଗୋଟାଏ ଜେପୁଛି

ମେଜେଷ୍ଟ୍ରର ଅଭ୍ର ଏ ଦୁଇଜଣ କଟକ କଲେଜର ଷ୍ଟୁଡେଣ୍ଟ । ଖାଇବା ଭଲ ଗୋଟାଏ ଅତି ପାର୍ଥିବ କଥାକୁ ଏପରି ଅଭଦ୍ର ଭାଷାରେ ଆମମାନଙ୍କ ଆଗରେ ଆଗତ କରି ତୁ ସଭ୍ୟତାର ମସ୍ତକ ଚର୍ବଣ କରୁଛୁ ।'

ଶରତ୍ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ଦେଖାଇ କହିଲା, 'ଠିକ୍; କିନ୍ତୁ କଥା ହେଉଛି ତୋର ସ୍ୱଭାବଗତ ସହିତ ମୁଁ ଅପରିଚିତ ନୁହେଁ । ବସା ପ୍ରକାଶ ରେସେପେଇ ଭରି ବସିଛୁ ବାବୁ ଖାଇବେ ବୋଲି; ବାବୁ ଦାଣ୍ଡରୁ କେଉଁ ଭାଙ୍ଗାଳ ଅତିଥିଙ୍କୁ ଡାକି ଆଣି ସବୁତକ ଖୁଆଇ ଦେଲେ । ତା ପରେ ହୁକୁମ ଦେଲେ—ଚୂଡ଼ା ଅଛି ? ଏ ସବୁ ତ ଡେପୁଟି ମେଜେଷ୍ଟରଙ୍କ ବସାରେ ଚଳେ, ନା ରେ ଲିଲି ।'

ଲିଲି ହସି ପକାଇଲା ।

ଶ୍ରୀଶ୍ୱର ଲିଲିକୁ ଧମକ ଦେଇ କହିଲା, 'ଚୁପ୍ । ତୁମେ ସବୁ ମୋତେ ଗୃହବାସରୁ ତଡ଼ିବା ପାଇଁ ଷଡ଼ଯନ୍ତ୍ର କରୁଛ ନା କଅଣ ? ସରକାର ବାହାଦୁର ଯେତେବେଳେ ବରାବର କହୁଛନ୍ତି ଯେ, ଦେଶରେ ଖାଦ୍ୟ ଜିନିଷ ଦୁର୍ଲଭ ହେଉଛି, ଲୋକେ ଖାଇ ପିଇ ମହା ସୁଖରେ ଅଛନ୍ତି, ସେତେବେଳେ ମୁଁ ଭାଙ୍ଗାଳଗୁଡ଼ାକୁ ବାଟ ଭଡ଼ରୁ ଗୋଟାଇ ଆଣି ୮ ଥର ଖୁଆଉଛି ଯେ ସେମାନେ ପୁଣି ନ ଖାଇ—ସେତେବେଳେ ତ ଆଇନ ଅନୁସାରେ ରାଜଦ୍ରୋହ ହୋଇଗଲା, ମୁଁ ମୋ କାର୍ଯ୍ୟ ଦ୍ୱାରା ଆଇନ ଅନୁସାରେ ଭାରତବର୍ଷରେ ପ୍ରତିଷ୍ଠିତ ସରକାର ବିରୁଦ୍ଧରେ ଦ୍ୱେଷଭାବକୁ ବିସ୍ତାର କରୁଛି—spreading disaffection against Government established by law in India—ବୁଝିଲୁ, ଏହା ରାଜଦ୍ରୋହ ସୂଚକ ସଙ୍କେ-

ଦ୍ରୋହ । ଏ ଅବସ୍ଥାରେ କି ଆମ ସଦାଶୟ ସରକାର ମୋଟେ ଶୃଙ୍ଖଳା ରଖି ପାରନ୍ତି ?'

ପ୍ରମୋଦ ଏ ସବୁର ମର୍ମ କିଛି ବୁଝି ପାରୁ ନ ଥିଲା; ଖାଲି କଥାଟାଏ କହିବା ଉଦ୍ଦେଶ୍ୟରେ କହିଲା, 'ଠିକ୍ କଥା । କିନ୍ତୁ ସରକାର ଏମିତି ମିଛ କଥାଗୁଡ଼ାକ ଘୋଷଣା କରୁଛନ୍ତି କାହିଁକି ? ଆମେ ତ ସ୍ୱଚକ୍ଷୁରେ ଦେଖୁଛୁ ଖାଦ୍ୟାଭାବ ।'

ବୀରେଶ୍ୱର ହସି ହସି କହିଲା,'କଲେଜରେ ଏସବୁ ପାଠ ପଢ଼ା ହୁଏ ନାହିଁ ପରା । ଆମେ ସମସ୍ତେ ଯାହା ଦେଖୁଛେ, ଯାହା କହୁଛେ, ସରକାର ଯଦି ସେଇ କଥା ଦେଖିଲେ; ସେଇ କଥା କହିଲେ, ତେବେ ତାହା ସରକାର ହୋଇ ରହିବ କିମିତି ? ସେମାନେ ଲୋକଙ୍କୁ ଚଳାଇବେ କେମିତି ? ଚାଷୀଙ୍କୁ ଖାଦ୍ୟାଭାବ, ଚପରାସୀଠୁ ହାକିମମାନଙ୍କୁ ଖାଦ୍ୟାଭାବ—ସମସ୍ତଙ୍କୁ ଖାଦ୍ୟାଭାବ, ତଥାପି ଦେଶରେ ଖାଦ୍ୟାଭାବ ପଡ଼ିଛି ଏକଥା କେହି କହି ପାରିବେ ନାହିଁ । ଏହାହିଁ ହେଉଛି ସରକାରୀ ନୀତିର ଧାରା ।'

ଲିଲି କହିଲା 'ଏଇଟା ବଡ ଅନ୍ୟାୟ କଥା ।'

ବୀରେଶ୍ୱର ତାକୁ ମିଛଟମକ ଦେଇ କହିଲା, ''ଚୁପ୍ ! ରାଜଦ୍ରୋହ !'

ଲିଲି ଉତ୍ତେଜିତ ହୋଇ କହିଲା, 'ହେଉ ରାଜଦ୍ରୋହ ! ଶରତ୍ ବାବୁ ମୁଁ ଠିକ୍ କଥା କହୁ ନାହିଁ ?'

ଶରତ୍ ଏକ ମନରେ ବସି ସୂତା କାଟୁଥିଲା; ଲିଲିର ଏକଥା ଶୁଣି ଟିକିଏ ହସିଲା ।

ବୀରେଶ୍ୱର ଶରତ୍ ଆଡ଼କୁ ଚାହିଁ କହିଲା, 'ଦେଖ ଶରତ୍, ସୂତା କାଟି କାଟି ଏପରି ହସିବା ହାସ ତୁ ଲିଲିକୁ ତାର ରାଜ-

ଦୋ୍ହାସ୍ତ୍ରଙ୍କ ମତବାଦରେ ଉପସ୍ଥାପିତ କରୁଛୁ—ଅର୍ଥାତ ଏଇଟା ଏକ statement—ଦଣ୍ଡନୀୟ । ବୁଝିଲ ।'

ଶରତ୍ ସେହିପରି ସତ୍ତା କରି ବାହି କହିଲା, 'କଣଚାର ସ୍ତ୍ଙ୍କ ଏପର୍ଯ୍ୟନ୍ତ ତୋ ମୁଣ୍ଡରୁ ଖସି ନାହିଁ, ଦେଖୁଛି । କଥା ହେଉଛି ସରକାର ଘରର ତୁମେ କର୍ମଗୃଷ୍ୱପୁଙ୍ଗବଗୁଡ଼ାକ ଅଭାବର ମାରପେଷରେ ସବୁ କରପାର; ଅଚ ଏ ଲୋକଗୁଡ଼ାକୁ ମରଣ ମୁହଁରୁ ବଞ୍ଚାଇ ପାର ନାହିଁ ? ଲୋକଙ୍କର ଭଲ ତମଦ୍ୱାରା ସମ୍ଭବ ନୁହେଁ—ସମ୍ଭବ ଯେତକ ଜୁଗପ । ସେକଥା ଛାଡ଼ । ମୁଁ ଖାଲି ଦେଖୁଥିଲି, ପ୍ରମୋଦ ବାବୁ ଓ ଲଳି ଦେଇଙ୍କୁ । ସେମାନେ ବଡ଼ ଉତ୍ତେଜିତ ହୋଇ ପଡ଼ିଛନ୍ତି ଏହି ଦରମଲା ବାଙ୍ଗାଳଗୁଡ଼ାକୁ ଦେଖି । ସୁଖସ୍ୱାଚ୍ଛନ୍ଦ୍ୟଭରା ବାଯୁମଣ୍ଡଳ ଭିତରେ ସେମାନେ ରହୁଥିବାରୁ ଗୁହଁନ୍ତି, ଦୁଃଖଦୁର୍ଦ୍ଦଶାର ଦୃଶ୍ୟ ଦେଖି ସେମାନଙ୍କ ମନରେ ଜାଗେ ବିରକ୍ତି, ନା ପ୍ରମୋଦ ବାବୁ ।'

ପ୍ରମୋଦ ଗମ୍ଭୀର ହୋଇ କହିଲା, 'ଠିକ୍ ।'

'କିନ୍ତୁ କେତେ ବିରକ୍ତ ହେବେ ଆପଣମାନେ ? ଆଜ ଦେଶ ଅବସ୍ଥା ଠିକ ଏ ଉଲଟ ହୋଇ ଉଠିବାରୁ ଆପଣମାନେ ଏ ଶବସ୍ତୂପର ଦୃଶ୍ୟ ଦେଖୁଛନ୍ତି, ସେଇଟା ତ ଦେଶର ଚିରନ୍ତନ ଅବସ୍ଥା—ପ୍ରଭେଦ ଏତିକି ଆମରି ଦେହସହା ହୋଇଯିବାରୁ ସର୍ବ୍ବଦା ତାହା ଆମ ଆଖିରେ ପଡ଼େ ନାହିଁ ।'

ବାଚେଶ୍ବର ହସି ହସି କହିଲା, 'ମହାତ୍ମା ଶରଚନ୍ଦ୍ର ବକ୍ତୃତା ଆରମ୍ଭ କଲେ ।'

ଶରତ୍ କହିଲା, 'ବକ୍ତୃତା ନୁହେଁ ମୁଁ ପ୍ରମୋଦ ବାବୁଙ୍କୁ ଆମର ଏ ଅବସ୍ଥାର ଗୋଟାଏ ଦିଗ ଦେଖାଇ ଦେଉଛି । ସେମାନେ ସୁଖୀ

ଶାନ୍ତ ଢେଉରେ ବଢ଼ିଛନ୍ତି । ଦେଶର ପ୍ରକୃତ ଅବସ୍ଥାଟା ତାଙ୍କ ଦୃଷ୍ଟିରୁ ସବୁବେଳେ ଲୁଚାଇ ରଖିବା ପାଇଁ ସମସ୍ତେ ବ୍ୟସ୍ତ । ଆଜି ଯଦି ସେମାନେ ଦୁଃଖୀଙ୍କ ଭିତରକୁ ଆସିଛନ୍ତି, ତେବେ ସେମାନଙ୍କ ଦୁଃଖ କେଉଁଠି ତାହା ବୁଝିବା ଉଚିତ ହେବ ନାହିଁ କି ? ଆମ ଦେଶରେ ଦୁର୍ଭିକ୍ଷ ସବୁବେଳର ଘଟଣା । ଆମ ଦେଶର ଲୋକେ ଯେଉଁ ଅବସ୍ଥାରେ ଥାଆନ୍ତି । ଧର ଇଂଲଣ୍ଡର ଲୋକ ଯଦି ବର୍ଷକେ ମାସେ ସେ ଅବସ୍ଥାରେ ରହନ୍ତେ, ତେବେ ଟେକାପଥର ଫିଙ୍ଗି ପାର୍ଲାମେଣ୍ଟ ଘରକୁ ଭାଙ୍ଗି ଦିଅନ୍ତେ—ଅଥଚ ସେଥିପାଇଁ ତାଙ୍କ ଉପରେ ଗୁଳି ଚଳନ୍ତା ନାହିଁ କି ତାହାଙ୍କୁ ଜେଲ୍ ଖଟିବାକୁ ପଡ଼ନ୍ତା ନାହିଁ । ଏକା ଦିନକେ ଦେଶର ସରକାର ଭାଙ୍ଗି ପଡ଼ନ୍ତା । ପୃଥିବୀର ଶେଷ ସୀମାରୁ ଖାଦ୍ୟ ଆଣି ସେମାନଙ୍କୁ ଯୋଗାଇ ଯୋଗାଇ ତର ସହନ୍ତା ନାହିଁ । ଆମ ଦେଶ ତ ସେ ଦେଶ ନୁହେଁ— ଆମ ଦେଶର ଲୋକ ତ ସେ ଦେଶର ଲୋକ ନୁହନ୍ତି । ସେଥିପାଇଁ ଭାଗ୍ୟକୁ ଆଦର ମୁହିଁ ବୁଜି ସେମାନେ ସବୁ ସହି ଯାଆନ୍ତି—ବାଟ କଡ଼ରେ ପଡ଼ନ୍ତି—ମରନ୍ତି; କିନ୍ତୁ କିଛି କହନ୍ତି ନାହିଁ, କିଛି କରନ୍ତି ନାହିଁ । ମୁଁ କହୁଛି, ପ୍ରମୋଦ ବାବୁ, ସେମାନଙ୍କ ପ୍ରତି ଆପଣଙ୍କ ପରି ଲୋକର, ଲିଲି ଦେବୀ ପରି ଲୋକର କୌଣସି କିଛି କର୍ତ୍ତବ୍ୟ ନାହିଁ ? ଯଦି ଥାଏ ସେ କର୍ତ୍ତବ୍ୟ କ'ଣ ?'

ବୀରେଶ୍ୱର କହିଲା, 'ସେ କର୍ତ୍ତବ୍ୟ ଫେସନ ହେବା, ପ୍ରେମ କବିତା ଲେଖିବା, ଆଉ କଲେଜର ପାଠ୍ୟପୁସ୍ତକ ମୁଖସ୍ଥ କରି ପାସ୍ କରିବା ।'

ଶରତ୍ ଗମ୍ଭୀର ଭାବରେ କହିଲା, 'ଥଟ୍ଟାର କଥା ନୁହେଁ, ବୀର ! ପ୍ରମୋଦ ଲିଲି ଆଉ ତାଙ୍କରି ପରି ଲୋକ ତ ଆମ ଅନ୍ନେ ଏ

ଦେଶଠାରୁ ଗତିବେ । ଏ ଦେଶର ସ୍ୱାଧୀନତାର ତ ତାଙ୍କର ହାତକୁ ଯିବ । ସେମାନେ ସେମାନଙ୍କର ଉଣ୍ଟିଦ୍ଧୀ ବୃଦ୍ଧି କରନ୍ତୁ । ସେମାନେ ଫେସନ କରନ୍ତୁ, ପ୍ରେମ କବିତା ଲେଖନ୍ତୁ—ସବୁ କରନ୍ତୁ; ତା ସଙ୍ଗେ ସଙ୍ଗେ ବୁଝନ୍ତୁ ଏ ଦେଶଟାର ଗ୍ରାଡ ଉପରେ ଗୋଟାଏ ଶରନ୍ତନ ଦୁର୍ଭିକ୍ଷର ପ୍ରେତମୂର୍ତ୍ତି କପଟ ଭାବରେ ମାଡ଼ି ବସିଛି । ଏହି ପ୍ରେତମୂର୍ତ୍ତି ହିଁ ପରାଧୀନତା । ଏହି ପରାଧୀନତା କବଳରୁ ଦେଶ ମୁକ୍ତ ନ ହେବା ପର୍ଯ୍ୟନ୍ତ ଦୁର୍ଭିକ୍ଷ କବଳରୁ ଦେଶ ମୁକ୍ତ ହେବ ନାହିଁ ।'

ଗୋଟାଏ ପିଲା ଅସି କହିଲା, 'ପଢ଼ିବା ଘଣ୍ଟା ବଜାଇବ ?'

ଶରତ୍ ତାଙ୍କୁ କହିଲା, 'ହଁ, ମୁଁ ଯାଉଛି ।'

ସାରେଣ୍ଟଙ୍କୁ କହିଲା, 'ଚାଲ ତମେମାନେ ପିଲାଙ୍କ ପଢ଼ାଘରେ ଟିକିଏ ବୁଲି ଅସିବ ।'

ସମସ୍ତେ ଉଠିଲେ ।

---

## ଅଠେଇଶ

ଘାନା ଚାଲିଛି ।

ଖୋରଧା ପାଖରୁ କଟକ ଅଡ଼କୁ ଯେଉଁ ନାଲି ସଡ଼କ ପଡ଼ିଛି ସେହି ବାଟେ ବାଟେ ଘାନା ଚାଲିଛି ।

ବ୍ରହ୍ମପୁରରେ ସେ ଜଣେ ବାଙ୍ଗାଳଠାରୁ ଖବର ପାଇଲା ଯେ, ସାହେବ ତା ପିଲାଟିକୁ ଧରି ସ୍ୱାମୀନାରାୟଣ ପାଇଛି ଘର ପାଖରେ ବସି-

ଥିବାର ସେ ଭିଡରେ ଦେଖି ଆସିଥିଲା । ଦୀନା ଭିଡ ଅଭିମୁଖରେ ବାହାରି ପଡ଼ିଲା । ବ୍ରହ୍ମପୁର ଷ୍ଟେସନର ଜଣେ ପଏଣ୍ଟସମନଙ୍କୁ ମାଷ୍ଟ୍ରେ ନେହୁରା ହେଲେ, ହାତ ଧରି ଟେକି ଗୋଟିଏ ଗାଡ଼ିରେ ଦୀନାକୁ ବସାଇ ଦେଲେ । ଏହିପରି ଭାବରେ ଜଟଣୀ ଷ୍ଟେସନ ଯାଏ ସେ ରେଳଗାଡ଼ି ଆସିଲା ।

ଷ୍ଟେସନ ପ୍ଲାଟଫର୍ମରେ ଗାଡ଼ି ରହିଲା । ସଙ୍ଗେ ସଙ୍ଗେ ଜଣେ ପୁଲିସବାଲା ଗାଡ଼ି ଉପରକୁ ଚଢ଼ି ଆସିଲା । କାଙ୍ଗାଳମାନଙ୍କୁ ଗାଡ଼ିରୁ ଓହ୍ଲାଇବା ତାର କାମ ବୋଲି ସେ ବାଛି ନେଇଛି । ଯେଉଁ କାଙ୍ଗାଳ ଦୁଇଚାରି ପଇସା ଦିଏ, ବିନାଟିକେଟ ତାକୁ ଗାଡ଼ିରେ ଛାଡ଼ିଦିଅନ୍ତି । ଯାହା ପାଖରେ ପଇସାଟିଏ ମଧ୍ୟ ନ ଥାଏ, ତାକୁ ଘଉଡ଼ି ଦେଇ ସଡ଼କରେ ଛଡ଼ାଇବାର ସେ ନିଜର କର୍ତ୍ତବ୍ୟ ପାଳନ କରନ୍ତି ।

ଦୀନା ପଇସାଟିଏ ପାଇବ କାହିଁ ? ପୁଲିସବାଲା ରେଳଗାଡ଼ିରୁ ତାକୁ ତଡ଼ିଦେଲା । ସେ ଧୀରେ ଧୀରେ ଜଟଣୀ ବଜାର ଆଡ଼କୁ ଚାଲିଲା । ଯାତ୍ରୀ ଦଳେ ଦଳେ ଖୋର୍ଦ୍ଧା ଆଡ଼କୁ ଯାଉଥିଲେ । ସେ ଯାତ୍ରୀମାନଙ୍କ ସାଙ୍ଗ ଧରି ଚାଲିଲା ।

ଦୁଇଦିନ ତା ପେଟରେ ପାଣି ଟୋପେ ନ ଥିଲା । ଖାଇବା କଥାଟାକୁ ମଧ୍ୟ ସେ ଭୁଲି ଯାଇଥିଲା । ସେ ତା ସ୍ତ୍ରୀ ପାଖକୁ ଯିବ । ତାକୁ ଦେଖିବ । ତା ପୁଅକୁ ଦେଖିବ । ଏହି ଚିନ୍ତାରେ ସେ ସବୁ ଭୁଲି ଯାଇଥିଲା ।

ଦୀର୍ଘ ପଥ, ପେଟରେ ଦାନା ନାହିଁ । 'ଚାଲିବା ଶକ୍ତି କମେ କମେ କମି ଆସୁଛି, ତଥାପି ସେ ଚାଲିଛି । ଦିନ ଗଡ଼ି ସଞ୍ଜ ହେଲା ।

ହାତରେ ଗୋଟାଏ ଗୁଞ୍ଜିଆ ହୋଟାନ୍ । ସେଇଠାରୁ ମାଡ଼ି କିଛି ମୂଠାଏ ମୁଢ଼ି ଖାଇ ଓପରେ ପାଣି ପିଇଲା; ପାଖରେ ଥିବା ଗୋଟାଏ ଖାଲି ପିଣ୍ଡାରେ ଶୋଇ ପଡ଼ିଲା ।

ନିଦ ? ନିଦ ତାକୁ ଲାଗିଲା ନାହିଁ; ଆସିଲା ଗୋଟାଏ ତନ୍ଦ୍ରା । ସେଇ ତନ୍ଦ୍ରାର ଭିତରେ ସେ ତା'ର ପଧାନପଡ଼ାରେ ହଜି ଯାଇଥିବା ସଂସାରଟିର ସ୍ୱପ୍ନ ଦେଖିଲା ।

ଗୃହର ଭୋଟଂର ହୋଇଥିବା ଦୁଇଖଣ୍ଡ ହାଡ଼ ହେଉଥିଲାଟି ଅଲ୍ପଅରେ 'ହାଟକୁ ଜଳ୍ପନା କରି ବଞ୍ଚର ଅଡ଼ୁଆଁରେ ଅଟୁଥିଲା । ତା'ର ଶରୀରର ଦାନାର ତନ୍ଦ୍ରା ଭାଙ୍ଗିଗଲା । ସେ ଦେଖିଲା, ଓଡ଼ଟା ଥର ପାଖର ତୁଳ ଦାଗରେ ସ୍ତମ୍ଭତର ରକ୍ତର ଅଟକିବ ନପେ କରେ ଫୁଟି ଉଠୁଛି । ସେ ପୁଣି ବଞ୍ଚିବ ଅଙ୍କ ଗୁଳିଲା ।

ବଞ୍ଚିବ ଅନେକ ଦିନ; ତଥାପି ତାକୁ ଯିବାକୁ ହେବ । ସେଠାରେ ସେ ତା ସାଇଅକୁ ଦେଖିବ । ତା ପୁଅଟିକୁ ଦେଖିବ ! ଏହାହିଁ ତା'ର ବଞ୍ଚିବା । କେତେ ଥର ଭାବିଛି, ସେମାନେ ନାହାନ୍ତି । ତାର ଗୃହଅଡ଼ ଅନ୍ଧକାର ହୋଇ ଯାଉଛି । ତାର ସଂସାର ସରିଗଲା ବୋଲି ସେ ମନେ କରୁଛି; କିନ୍ତୁ ସେମାନେ ବଞ୍ଚିଛନ୍ତି । ସେମାନଙ୍କୁ ସେ ଦେଖି ପାରିବ । ସେମାନେ ଅଛନ୍ତି । ଏହି କଥା ଶୁଣିଲା ବେଳଠାରୁ ଦୁନିଆଟା ତା ଦୃଷ୍ଟିରେ ଆଉ ଗୋଟାଏ ରୂପ ଧରୁଛି, ମନରେ ଆଶାର ଗୋଟାଏ କ୍ଷୀଣ ରେଖା ସ୍ଥାନ ପାଉଛି ।

ସେ ଚାଲୁଛି । ଚାଲିବାର ନିଶା ତାକୁ ଧରୁଛି । ତାର ସେ ଚାଲିବାର ଶକ୍ତି ନାହିଁ ସେ କଥା ସେ ଭୁଲି ଯାଉଛି । ତା ମନ ଭିତରେ କେବଳ ଗୋଟାଏ କଥା ରହୁଛି—ତାର ସ୍ତ୍ରୀ ଆଉ ପୁଅ ବଞ୍ଚିଛନ୍ତି; ସେ ସେମାନଙ୍କୁ ଦେଖି ପାରିବ ।

ଦେଖି ପାରବ ? ହୁଏତ ସେମାନେ କୁଆଡ଼େ ଗୃହ ପାଇଥିବେ । ହୁଏତ ତାହାର ପରେ ସେମାନେ ତାକୁ ଖୋଜି ବୁଲୁଥିବେ ।

ହଁ, ସାବଅ ତାକୁ ନିଶ୍ଚୟ ଖୋଜୁଥିବ । ସାବଅ—ତାର ସ୍ତ୍ରୀ । ସାବଅ ତାର ସୁନା ହାତରେ ତାର ସୁନାର ସଂସାରକୁ ଗଢ଼ିଥିଲା, ସଜାଇ ଥିଲା, ନିଜେ ନ ଖାଇ ତାକୁ ଖୁଆଉ ଥିଲା । ଶୁଖିଲା ଥକାଶରୁ ତଡ଼ିତ ପଡ଼ି ତାର ଘର ଭାଙ୍ଗି ଯାଇଛି; କିନ୍ତୁ ସାବଅ ତ ଅଛି । ସେମାନେ ପୁଣି ନୂଆ କରି ଘର ବାନ୍ଧିବେ । ପୁଣି ନୂଆ କରି ସଂସାର ଆରମ୍ଭ କରିବେ ।

ସେମାନଙ୍କୁ ଡଙ୍ଗାଇବ ବୋଲି ସେମାନଙ୍କୁ ଛାଡି ଆସି ସେ ଭୁଲ କଲା ? ହଁ, ଭୁଲ କରିଛି ଅଭାବର ତାଡ଼ନାରେ । ଭୋକ ଉପାସରେ ତା ମୁଣ୍ଡ ଠିକ୍ ନ ଥିଲା । ସେ ସାବଅର ଶୁଖିଲା ମୁହଁ ଦେଖି ପାରିଲା ନାହିଁ, ତା ପୁଅର ଭୋକିଲା କାନ୍ଦଣା ଶୁଣି ପାରିଲା ନାହିଁ । ସେ ପଳାଇ ଗଲା । ପଳାଇ ଯାଇ ସେ ଭୁଲ କଲା ।

ସେମାନେ ତ ତାକୁ କେତେ ଖୋଜୁ ଥିବେ । ସାବଅ କେତେ ଭୋକ ଉପାସ ସହି ତାକୁ ଗୃହାଁ ବସିଥିବ, ଖୋଜି ବୁଲୁଥିବ । ଧାନା କଟକ ଯାଇଛି ବୋଲି ନିଶ୍ଚୟ ସାବଅ ତାକୁ ଖୋଜିବା ପାଇଁ କଟକ ଯାଇଛି । ସେ ତାକୁ ସେଠାରେ କେତେ ଖୋଜୁଥିବ । ଧାନା ପରି ବେଳେବେଳେ ସେ ବି ମନେ କରୁଥିବ, ବଞ୍ଚି କି ଲାଭ ।

ଧାନା ତ ଗୋଟାଏ ପେଟର ଦାନା ଯୋଗାଡ଼ କରିବା ପାଇଁ ପ୍ରାଣାନ୍ତ ଚେଷ୍ଟାକରି ମଧ୍ୟ ତାକୁ ଦାନକ ପାଇଁ ଦୂର କରି ପାରି ନାହିଁ । ଆଉ ସାବଅ ? ତା ଉପରେ ନିଜ ଘର ଛୁଆ ପିଲାଟାକୁ ବଞ୍ଚାଇବାର ଭାର ମଧ୍ୟ ଥିଲା ।

ନା, ଏସବୁ ଭାବି ଲାଭ ନାହିଁ । ଦୁର୍ଭିକ୍ଷ ତ ଚିରଦିନ ଲାଗି ନ ଥିବ । ଏଥିରୁ ସେମାନେ ଯଦି ବଞ୍ଚିରହି ବର୍ଷ ପାଆନ୍ତି, ପୁଣି ହୁଏତ ଭଲ ଦିନ ଆସିବ । ହେଲେ, ସେମାନଙ୍କ ଅତୀତ ସୁଖ, ସେମାନଙ୍କର ପଧାନଲକ୍ଷ୍ମୀ, ଘର ସଂସାର ଆଉ ଫେରି ଆସିବ ନାହିଁ । ସେଥିପାଇଁ ଚିନ୍ତା ନାହିଁ । ସେମାନେ କେଉଁଠି ଗୋଟାଏ ଗଛ ମୂଳରେ କୁଡ଼ିଆ ବାନ୍ଧିବେ । ସେ ମୂଲ ଲାଗି ଆଣିବ; ସାଙ୍ଗଆ ସେ କୁଡ଼ିଆ ଖଣ୍ଡିକୁ ଜଗି ବସିବ; ତା ହାତ ଲାଗିଲେ କୁଡ଼ିଆ ଖଣ୍ଡିକ ମଧ୍ୟ ହସି ଉଠିବ । ଦିନକୁ ଥରେ ହେଲେ ତ ସେମାନେ ପେଟ ପୂରାଇ ଖାଇବାକୁ ପାଇବେ । ସେମାନଙ୍କର ଦୁଅଟା ତ ହାଡ଼ ଦଖଣ୍ଡି ହୋଇ ବଞ୍ଚିଯିବ । ତାହା ହିଁ ସେମାନଙ୍କ ପକ୍ଷରେ ଯଥେଷ୍ଟ ।

ଚନ୍ଦକାର କୁଞ୍ଜିଭାଠି ଜଙ୍ଗଲ । ଲଟି ବୁଦା ଆଉ ବଡ଼ ବଡ଼ ଗଛର ଗହଳ ବାଟ ଦୁଇ ପଟରେ ପାହାଡ଼ ଦେହରେ ମିଶି ଯାଇଛି । ସୂର୍ଯ୍ୟ ଧୀରେଧୀରେ ମୁଣ୍ଡ ଉପରକୁ ଉଠିଲେ, ଟିକେ ଟାଣ ହେଲା, ଧାନର ସେ ଆଡ଼କୁ ଦୃଷ୍ଟି ନାହିଁ । ସେ ଚାଲିଛି— ଦୁର୍ବଳ ଅନିଶ୍ଚିତ ପଦକ୍ଷେପରେ ଚାଲିଛି ।

ବାଟରେ ଗୋଟାଏ ଗାଁ । ଖଣ୍ଡେ ଫାଙ୍କା ଜାଗାରେ ଗୋଟାଏ ବରଗଛ । ଗତ ଖରାରେ ବାଟରେ ଯାଉଥିବା ଗଉଡ଼-ବାଲମାନେ ଏଇଠାରେ ବୋଧହୁଏ ବାସା କରିଥିଲେ, ଚାରିଆଡ଼େ ଅଳିଆ କୁଟା, ଦୁଇ ତିନୋଟା ଅସ୍ଥାୟୀ ଚୁଲ୍ଲୀରେ ଦରପୋଡ଼ା କାଠ କୋଇଲା ଅଉ ପାଉଁଶ ।

ଧାନା ଚାଲିଛି । ଗଛ ମୂଳରେ ପହଞ୍ଚିଲା ବେଳକୁ ତା ମୁଣ୍ଡ ବୁଲାଇ ଦେଲା । ଚାରିଆଡ଼ ଅନ୍ଧାର ଦିଶିଲା । ସେ ଅଧ ଚେତାରେ ଆସି ସେ ଗଛ ମୂଳରେ ଶୋଇପଡ଼ିଲା ।

———

## ଅଣଡରଣ

'ଯୁଗବାଣୀ' ଅଫିସ । ସକାଳ ୮ଟା ହେବ । ନୀଳମଣି ବାବୁ ଟେବୁଲ ପାଖରେ ବସି ଗତ ରାତ୍ରରେ ଆସିଥିବା 'ରସୁଟାର' ଟେଲିଗ୍ରାମ ପଢୁଥିଲେ—ରୁଷିଆ ଦକ୍ଷିଣ ରଣକ୍ଷେତ୍ରରେ ୮୦ ଘଣ୍ଟା ଗାଁ ଅଧିକାର କଲା, ୧୦ ହଜାର ଶତ୍ରୁକୁ ମୂଳପୋଛ କରି ଦେଲା, ଦ୍ୱିତୀୟ ରଣକ୍ଷେତ୍ର ତିଆରି କରିବା ପାଇଁ ଆମେରିକା ବଡ଼ ଜୋରସୋରରେ ଉଦ୍ୟମ ଚଳାଉଛି, ସଭାପତି ରୁଜ୍‌ଭେଲ୍ଟ ଏକ ଉତ୍ସାହ ପୂର୍ଣ୍ଣ ଘୋଷଣା ପ୍ରକାଶ କରିଛନ୍ତି, ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ୍ ଉଡ଼ାଜାହାଜ ଯୋଗେ ଅନିର୍ଦ୍ଦିଷ୍ଟ ସ୍ଥାନକୁ ଗମନ କରିଛନ୍ତି, ଏଥର ଶତ୍ରୁ ସମୂଳେ ବିନଷ୍ଟ ହେବ ବୋଲି ସମର-ବିଶାରଦମାନେ କଳନା କରୁଛନ୍ତି, ଭାରତ ସଚିବ ଆମେରିକା ପାର୍ଲିମେଣ୍ଟରେ କହୁଛନ୍ତି, "ଭାରତରେ ଖାଦ୍ୟ ଭଣ୍ଡାର ଢେର ବଢ଼ୁଛି, ଭାରତର ଲୋକେ ସୁଖଶାନ୍ତିରେ ଅଛନ୍ତି ।"

ନୀଳମଣି ବାବୁଙ୍କ ମୁହଁରେ ଫୁଟି ଉଠୁଥିଲା ତିକ୍ତ ବିରକ୍ତିର ଚିହ୍ନ । ପ୍ରତିଦିନ ସକାଳୁ ରାତି ୧୦ଟା ପର୍ଯ୍ୟନ୍ତ ଏସବୁ ଜିନିଷ ଘାଣ୍ଟି ଘାଣ୍ଟି ତାଙ୍କର ଅନ୍ତରସ୍ପୃହା କ୍ଷୀପ୍ର ହୋଇ ଉଠିଥିଲା, କ୍ରମେ କ୍ରମେ ତାଙ୍କର ଧାରଣା ଦୃଢ଼ ହୋଇ ଯାଉଥିଲା ହୁଏତ ସାରା ଦୁନିଆ ପାଗଳହୋଇ ଗଲାଣି, କେତେ ଜଣ ଧୂର୍ତ୍ତବ୍ୟକ୍ତି ନିଜ ସ୍ୱାର୍ଥ ପାଇଁ ଏ ପାଗଳୀଭୂତଗୁଡ଼ାକୁ ନଚାଉଛନ୍ତି କିମ୍ବା ମନୁଷ୍ୟ ବୁଦ୍ଧି ବିଷୟରେ ଏମ ନଙ୍କର ଏତେ କମ ଧାରଣା ଯେ, ଏମାନେ ସମସ୍ତଙ୍କୁ ଅବୋଧ ବୋଲି ମନେ କରୁଛନ୍ତି ।

ଏହି ସମୟରେ ଅଫିସ ସାମନାରେ ମଟରଗାଡ଼ିଟାଏ ଛିଡ଼ା ହେବାର ଦେଖାଗଲା । ଚପରାଶୀ ଖବର ଦେଲା, ରାୟ ସାହେବ ଧରଣୀଧର ସେନାପତି ଓ ଶେଠ ମୂଳଚନ୍ଦ୍ର ଦେଖିବାକୁ ଆସିଛନ୍ତି ।

'ନମସ୍ତେ ନମସ୍ତେ, ନୀଳମଣି ବାବୁ, 'ରାମ ରାମ, ସମ୍ପାଦକ ଜୀ' କହି କହି ରାୟସାହେବ ଓ ଶେଠଜୀ ଘର ଭିତରକୁ ପଶି ଚୌକି ଖଣ୍ଡେ ଖଣ୍ଡେ ଟାଣି ବସି ପଡ଼ିଲେ ।

ନୀଳମଣି ବାବୁ ନାଲିନେଳୀ ପେନ୍‌ସିଲ୍‌ଟା ହାତରେ ଧରି କହିଲେ, 'କୁଆଡ଼େ ଆସିଥିଲେ ଆପଣମାନେ ?'

ରାୟସାହେବ ଟିକିଏ ବିନୟ ଭାବରେ ଅଭିନୟ କରି କହିଲେ, 'ଏଇ ଟିକିଏ ଆପଣଙ୍କ ଆଡ଼କୁ ଚାଲି ଆସିଲୁ । ଅନେକ ଦିନ ହେଲା ଦେଖାସାକ୍ଷାତ ହୋଇ ନ ଥିଲା । ଆପଣ ତ ଏକ-ପ୍ରକାର ସଭାସମିତିକୁ ଯିବା ବନ୍ଦ କରି ଦେଇଛନ୍ତି ।'

'କାମର ଭିଡ଼, କଅଣ କରାଯାଏ ?'

ଶେଠଜୀ ମଝିରେ କଥା ଧରି ପକାଇଲେ, 'ଠିକ ବାତ୍, ଠିକ ବାତ୍ ହରଦମ୍ ଟେଲିଫୋନ ଆଉଛି, କେତେ ଦେଖିବେ ଦେଖନ୍ତୁ ଆପଣମାନଙ୍କୁ ?'

ନୀଳମଣି ବାବୁ ଅନ୍ୟମନସ୍କ ଭାବରେ କହିଲେ, 'ହୁଁ ।'

ରାୟସାହେବ କହିଲେ, 'ଗୋଟାଏ ବିଷୟରେ ଆପଣଙ୍କ ସହିତ ଟିକିଏ ବିଶେଷ କଥା ଥିଲା ।'

'କହନ୍ତୁ ।'

'ଓଡ଼ିଶାରୁ ବାହାରକୁ ଚାଉଳ ପଠାଇବା ବିରୁଦ୍ଧରେ ଆପଣ ଜୋରଦାର ଭାବରେ ଲାଗିପଡ଼ି ଲେଖୁଛନ୍ତି, ସେଥିରେ ସରକାର ବଡ଼ ଅସୁବିଧାରେ ପଡ଼ୁଛନ୍ତି ।'

'ହଁ, ବାହାରକୁ ଚାଉଳ ରପ୍ତାନୀ ବନ୍ଦ ନ କଲେ ଦେଶଟା ଶ୍ମଶାନ ହୋଇଯିବ ।'

'କିନ୍ତୁ ସରକାର ତ କହୁଛନ୍ତି, ଦେଶରେ ଯଥେଷ୍ଟ ଧାନ-ଚାଉଳ ଅଛି ।'

'ସେଇଥିପାଇଁ ତ ଆମେ ହିସାବ କରି ଦେଖାଇ ଦେଇଥିଲୁ ଯେ, ସରକାରଙ୍କ କଥା ଭୁଲ୍ ।'

'ଠିକ୍ କଥା, ଠିକ୍ କଥା; କିନ୍ତୁ ଓଡ଼ିଶାରୁ ଚାଉଳ ନ ଗଲେ ସିଲୋନ୍ କୋଚୀନ ଆଉ ବଙ୍ଗଳାର ମଣିଷ ମରିଯିବେ ।'

'ମରିବେ ନିଶ୍ଚୟ; କିନ୍ତୁ ସେଥିପାଇଁ ତ ଓଡ଼ିଶାର ଲୋକେ ଦାୟୀ ନୁହନ୍ତି । ସିହଲ, କୋଚୀନ ବା ବଙ୍ଗଳାରେ ତ ସେମାନେ ଦୁର୍ଭିକ୍ଷ ଲଗାଇ ଦେଇ ନାହାନ୍ତି । ଭାରତର ଯେ କୌଣସି ଅଞ୍ଚଳରେ ଲୋକେ ଦୁର୍ଭିକ୍ଷ ଭୋଗିଲେ ସେମାନଙ୍କୁ ବଞ୍ଚାଇବା ସମସ୍ତଙ୍କର କର୍ତ୍ତବ୍ୟ; କିନ୍ତୁ ନିଜେ ମରି କଅଣ ସେମାନଙ୍କୁ ଓଡ଼ିଶାର ଲୋକେ ବଞ୍ଚାଇବେ ?'

ରଘୁନାଥବାବୁ ଦେଖିଲେ ଏ ଧରଣର କାମ ହେବ ନାହିଁ । ସେ ବାଟ ବଦଳାଇ କହିଲେ, 'ଶେଠଜୀଙ୍କ ସହିତ ଆପଣଙ୍କ ବିଷୟରେ ଗୋଟାଏ କଥାବାର୍ତ୍ତା ହେଉଥିଲା । ଆପଣ ଜାଣନ୍ତି, ଚାଉଳ ରପ୍ତାନୀରୁ ଶେଠଜୀ ଗତ ତିନି ମାସରେ...'

'ହଁ, ଦଶଲକ୍ଷ ଟଙ୍କା ଲାଭ କରିଛନ୍ତି ।'

ଶେଠଜୀଙ୍କ ମନେ ପଡ଼ିଲା ଇନ୍‌କମ୍ ଟିକସ କଥା । ସେ ଚଞ୍ଚଳ କହି ପକାଇଲେ, 'ନେହିଁ, ନେହିଁ, ଦଶଲାଖ ନେହିଁ ତ ଦୋ ଲାଖ ।'

ନୀଳମଣି ବାବୁ ହସି ହସି କହିଲେ, 'ମୋତେ ହିସାବ ମିଳିଛି, ଶେଠଜୀ ।

ସାହେବ କହିଲେ, 'ଶେଠଜୀ, ସବୁଟାକୁ ଲଗାଇ ଭଲ ନାହିଁ । ଆପଣ ଇନ୍‌କମ୍ ଟିକସବାଲାଙ୍କୁ ଠକିବେ ବୋଲି ଖବର କାଗଜ ସମ୍ପାଦକଙ୍କୁ କଅଣ ଠକି ପାରିବେ ? ବରଂ ସହଭାବରେ ଥିବା ବଡ଼ ବଡ଼ ଭଦ୍ରଲୋକମାନେ ଏ କାମରେ କେତେ କେତେ ପାଉଛନ୍ତି ତାହା କହିଲେ........'

ନୀଳମଣି ବାବୁ କହିଲେ, 'ତାହା ମଧ୍ୟ ଦରକାର ନାହିଁ, ସେ କଥା ଆମମାନଙ୍କୁ ଜଣାଅଛି ।'

ସାହେବ, ତାହା ମଧ୍ୟ ଜଣା ଅଛି ? ଭଲ କଥା । ଶେଠଜୀ ଆସିଛନ୍ତି ସେମିତି ଗୋଟାଏ କାମରେ ଆପଣଙ୍କ ପାଖକୁ । କଥାଟା କଅଣ କି, ଆପଣ ଓଡ଼ିଶାରୁ ଗୃହଜ ପ୍ରୋଜ୍ଞା........

'ଖବରକାଗଜରେ ଲେଖାଲେଖି ବନ୍ଦ କଲେ ଶେଠଜୀଙ୍କ କୃପାଦୃଷ୍ଟି ଲାଭ କରିବାଟା ମୋ ଭାଗ୍ୟରେ ଘଟିବ ।'

ଏହି ସମୟରେ ଶେଠଜୀ ପକେଟରୁ ଶହେଟଙ୍କିଆ ନୋଟ ଦଶଖଣ୍ଡ କାଢ଼ି ଟେବୁଲ ଉପରେ ରଖିଲେ ।

ନୀଳମଣି ବାବୁ ସେ ଆଡ଼କୁ ଦୃଷ୍ଟି ଦେଇ କହିଲେ, 'ଏତକ ପୁଣି ପକେଟରେ ରଖନ୍ତୁ, ଶେଠଜୀ ।'

ସାହେବ କହି ଉଠିଲେ, 'ନା ନା ଏତିକି ନୁହେଁ, ଏତିକି ନୁହେଁ । ଏତିକି ସଲାମୀ, ଗୃହଜ ପ୍ରୋଜ୍ଞାରେ ଶେଠଜୀ ସହଭାଗୀ ଏଜେଣ୍ଟ; ଶତକଡ଼ା ବାରଅଣା ତ ଦେଇ ଥା ଲେଖା କମିଶନ୍......'

ନୀଳମଣି ବାବୁ ହସି ହସି କହିଲେ, 'ଏଥିରୁ ଗୋଟାଏ ଅଂଶ ମୁଁ ପାଇବି ? ଭଲ କଥା । କିନ୍ତୁ ମୋର ଗୋଟାଏ କଥା ଆପଣମାନେ ଶୁଣନ୍ତୁ । ମୁଁ ଗରିବ ଲୋକ । ସବାରୁ ସାତ ୧୦ଟା ଯାଏ ଭାଗଖଟଣୀ । ମାସରେ ଟଙ୍କା ୫୦୦ ପାଏ । ଅବକାଶରେ ବଳକା ଦିନରେ

ଏ ଠିକାଦାର ପେଟ ପୂରାଇ ମୁଠାଏ ଖାଇବା ପାଇଁ ମଧ୍ୟ କଷ୍ଟକର ହେଉଥାଏ । ଦୁଇଖଣ୍ଡ ଲୁଗା, ଦୁଇଖଣ୍ଡ କାମିଜ, ଖଣ୍ଡେ ଲୁଙ୍ଗି ଓ ଖଣ୍ଡେ ଗାମୁଛା ହିଁ ମୋର ସମ୍ବଳ । ତା ଉପରେ ସରକାରୀ ଅଫିସର ତରବାରୀ ବରାବର ମୁଣ୍ଡ ଉପରେ ଝୁଲୁଛି । ଜେଲ ମୋ କାମର ଗୋଟାଏ ଅତି ସୁଲଭ ପୁରସ୍କାର । ହଁ, ମୁଁ ଗରିବ; କିନ୍ତୁ ଏ ଦେଶଟା ମୋ ଦେଶ, ଏ ଦେଶର ଲୋକଗୁଡ଼ାକ ମୋର ଭାଇ । ସେଥିପାଇଁ ଆପଣମାନଙ୍କ ପରି ବଡ଼ଲୋକ ହେବାକୁ ମୋର ଇଚ୍ଛା ନାହିଁ । ଶେଠଜୀ ମାରୁଆଡ଼ି ଲୋକ । ଏ ଦେଶ ସହିତ ତାଙ୍କ ସମ୍ପର୍କ ଦେଣା ପାଉଣାର, ଲାଭ କ୍ଷତିର । ଆଚ୍ଛା ରାୟସାହେବ, ଆପଣ ତ ଏ ଦେଶର ଲୋକ । ଆପଣ ଏ ଯେଉଁ କାମ କରୁଛନ୍ତି, ଏହା ଦେଶଦ୍ରୋହୀର କାମ ନୁହେଁ କି ?'

ରାୟସାହେବ ଓ ଶେଠଜୀ ତୁନିହୋଇ ବସି ରହିଲେ ।

ନୀଳମଣି ବାବୁ କହିଲେ, 'ଆପଣମାନେ ବଡ଼ଲୋକ, ଛତ୍ର ଦେଉଛନ୍ତି, ଦିନକୁ ହଜାର ହଜାର ଗରିବ ଲୋକଙ୍କୁ ଖାଇବାକୁ ଦେଉଛନ୍ତି; କିନ୍ତୁ ସେ ସବୁ କଅଣ ପାଇଁ ? ତାଙ୍କ ରକ୍ତ ଶୋଷି ସ୍ୱାର୍ଥସିଦ୍ଧି କରିବାର ସୁବିଧା ପାଇଁ । ଆପଣ ସେମାନଙ୍କୁ ଚିହ୍ନି ନାହାନ୍ତି । ସେମାନଙ୍କର ଯେ ଗୋଟାଏ ଆତ୍ମସମ୍ମାନ ଜ୍ଞାନ ଅଛି, ଏ ଧାରଣା ଆପଣମାନଙ୍କର ନାହିଁ । ନ ହେଲେ କେଉଁ ସାହସରେ ଆପଣ ମୋ ପରି ଲୋକଙ୍କୁ ଟଙ୍କା ଦେଖାଇ ଅପମାନିତ କରିବାକୁ ଆସନ୍ତେ ?

ନୀଳମଣି ବାବୁ ପୁଣି ବସି ତାର ଟେଲିଗ୍ରାମ ପୁଡ଼ାକୁ ଖୋଲାଇବାରେ ଲାଗିଲେ ।

ରାୟସାହେବ ଓ ଶେଠଜୀ ଅଫିସରୁ ବାହାରି ଚାଲିଗଲେ ।

ପ୍ରମୋଦ ଅଫିସ ଭିତରକୁ ପଶିଆସି ନୀଳମଣି ବାବୁଙ୍କୁ ନମସ୍କାରକଲା ।

ନୀଳମଣି ବାବୁ ପଚାରିଲେ 'କୁଆଡ଼େ ?'

ଗୋଟାଏ ପ୍ରବନ୍ଧ ଅଣିଛୁ, କହି ତାଙ୍କ ହାତକୁ ସୁନ୍ଦର ଭାବରେ ଲେଖା ହୋଇଥିବା ପୁଳାଏ କାଗଜ ବଢ଼ାଇ ଦେଇ କହିଲା, 'ସାପ୍ତାହିକ ଯୁଗବାର୍ତ୍ତା' ପାଇଁ କ୍ଷିତୀଶ ବାବୁଙ୍କ ଲିଖିତ ସୁନ୍ଦର ରୋମାଣ୍ଟିକ୍ ଗଳ୍ପଟିଏ । କ୍ଷିତୀଶବାବୁ ଜଣେ ଉଦୀୟମାନ କଥାଶିଳ୍ପୀ...

ନୀଳମଣି ବାବୁ ପାଣ୍ଡୁଲିପିର ପ୍ରଥମପୃଷ୍ଠା ଉପରେ ଅର୍ଦ୍ଧ କୁଞ୍ଚିତ କାଗଜଚାପା କାଚଗୋଲା ତଳେ ତାକୁ ଥୋଇ ଦେଇ କହିଲେ, 'ହଉ ।'

ପ୍ରମୋଦ ପୁଣି ପକେଟରୁ ଖଣ୍ଡେ ଚିଠି କାଢ଼ି କହିଲା, 'ବରେଶ୍ୱର ବାବୁ ଅପଣଙ୍କ ପାଖକୁ ଏ ଚିଠି ଖଣ୍ଡେ ପଠାଇଛନ୍ତି ।'

'ବାରେଶ୍ୱର ବାବୁ, ଛତ୍ରପୁରର ହେଡ଼ପୁଟି...' କହି ନୀଳମଣି ବାବୁ ଚିଠିଖଣ୍ଡ ଫିଟାଇ ପଢ଼ୁ ପଢ଼ୁ କହି ଉଠିଲେ 'ଏଁ, ଶରତ ମରିଗଲା କଲେରାରେ ! ଶରତ୍ ଦାସ ! ଓଃ ହୋ ! ଓଡ଼ିଶାର ଗୋଟାଏ ବଡ କର୍ମୀ ଚାଲିଗଲା ! ନିଜକୁ ଭୁଲିଥିବା ଲୋକଟା । ପରର ସେବା କରୁକରୁ ସେ ଗଲା । ଅଜି ଏପରି ସେହିଠା ଲୋକ ଓଡ଼ିଶାରେ ଥିଲେ ଦେଶର ଅବସ୍ଥା ଅନ୍ୟ ଅବକ ବି ଧରି ଥାଆନ୍ତା । ହିଁ, ଜମ୍ମା ଅଞ୍ଚଳରେ ଦୁର୍ଭିକ୍ଷ ସହିତ ଭୀଷଣ କଲେରା ଲାଗିଛି । ଶରତ୍ ବାବୁଙ୍କୁ ସେଇଠାରେ ହିଁ ରୋଗ ଆକ୍ରମଣ କଲା । ଯାଃ, ଗୋଟାଏ ବଡ଼ କର୍ମୀ ଚାଲିଗଲା ।'

ନିଜକୁ କହିଲା ପରି ଏତକ କହି ପୁଣି ସେ ଚିଠି ଅଡ଼କୁ ଦୃଷ୍ଟି ଦେଲେ । 'ଏଁ, ବାରେଶ୍ୱର ବାବୁ ଇସ୍ତଫା ଦେଇଛନ୍ତି ।

ଏ ମଧ୍ୟ ଗୋଟିଏ ଅଦ୍ଭୁତ କଥା । ଲେଖିଛନ୍ତି ମୁଁ ; ଖବରର କାମ ଚଳାଇବ । ବାଃ ! ସାବାସ ! ଏହାଙ୍କୁ ହିଁ କହନ୍ତି ତ୍ୟାଗ— ଏହାଙ୍କୁ ହିଁ କହନ୍ତି ମଣିଷର କାମ । ସୋମନାଥ ବାବୁ, ସୋମନାଥ-ବାବୁ ....'

ସହଳଗୀ ସୋମନାଥ ବାବୁ ଘର ଭିତରକୁ ଅସିଲେ ।

ନୀଳମଣି ବାବୁ କହିଲେ 'ସୋମନାଥ ବାବୁ, ଅଜ ଗୋଟାଏ ବଡ଼ ଖବର ମିଳିଛି । ବଡ଼ ବଡ଼ ଅକ୍ଷରରେ ଏ ଖବରର ହେଡ୍-ଲାଇନ ଦଅଯିବ—ଶ୍ରୀ ସାରେଶ୍ୱର ମହାନ୍ତି, ଛତ୍ରପୁରର ଡେପୁଟି ମାଜିଷ୍ଟ୍ରେଟ ନିଜ ଚାକିରୀରୁ ଇସ୍ତଫା ଦେଇଛନ୍ତି । ସେ ଦେଶ କାମରେ ଲାଗିବେ ବୋଲି ଘୋଷଣା କରିଛନ୍ତି । ରୁଷିଆ ଖବର, ଦ୍ୱିତୀୟ ବଣ୍ଟନେର ଅଦ ସବୁ ଖବର ପଛକୁ ପକାଇଦେବେ, ବୁଝିଲେ ।'

ପ୍ରମୋଦ ଅବାକ୍ ହୋଇ ଛିଡ଼ା ହୋଇ ରହିଲା ।

— — —

## ଟେରଣି

'ଦନେଇ, ହେ ଦନେଇ—ଅ, ଗୋଟାଏ ଇନ୍ଜେକ୍ସନ ନେ,' ବୁଢା କହିଲା ।

ଘରର ହାଡ଼ଗୁଡ଼ାକ ଗୋଟି ଗୋଟି ହୋଇ ଗଣି ହେଉଛି । ହାତଗୋଡ଼ ଗୁଡ଼ାଖଣ୍ଡ ହାଡ଼ । ମୁହଁଟାରେ ମଣିଷ ମୁଣ୍ଡର ଖୋଳପାଟା ରହିଛି, ତା କୋରଡ଼ ଭିତରେ ପଶିଛି ଅଖି ଦୁଇଟା । ନୁଖୁରା ନୁଖୁରା ବାଳ, ପେଟଟା ଉଗିଉଗି ହୋଇ ପଦାକୁ ବାହାରି ପଡ଼ୁଛି । ଅନ୍ନାଭ

ଭିତରୁ ପ୍ରେତମୂର୍ତ୍ତି ପରି ଗୋଟାଏ ପିଲା ଆସି ବୁଢ଼ା ପାଖରେ ଛିଡ଼ାହେଲା ।

ଲଞ୍ଜି ପକ୍ଷୀର ସେହି ଟୋଟା । ସେଥିରେ ବହୁତ ଦିନରୁ ବାଙ୍ଗାଲଗୁଡ଼ାକ ବସାବାନ୍ଧି ରହନ୍ତି ଗଛ ମୂଳରେ । ସମସ୍ତେ ଛଅଦିନରେ ଖାଆନ୍ତି ବା ଛଅଦିନରେ ପଣି ନ ପାରିଲେ ସେମିତି ଶୋଇ-ପଡ଼ନ୍ତି । ଅଗପଛ ରାତିରେ ଗୁଡ଼ାଏ ଚୁଲ୍ଲୀ ସେଠାରେ ଜଳେ ନାହିଁ, କେବଳ ସମୟ ସମୟରେ ଗୋଟାଏ ଅଲ୍ପ ଦେଖାଯାଏ । ଟୋଟାର ପୁଞ୍ଜୀଭୂତ ଅନ୍ଧାର ଭିତରୁ । ଦୂରରୁ ବାଙ୍ଗାଳିମାନେ ଦେଖି କହନ୍ତି, 'ହେଇଟି, ମାଷ୍ଟ୍ରଙ୍କ ଚୁଲ୍ଲୀ ଜଳୁଛି ।'

ବହୁପୂର୍ବ ଛଅଦିନରେ ଖାଆନ୍ତି ବାଙ୍ଗାଲଗୁଡ଼ିକ । ଯାହା ଖାଆନ୍ତି ତାହା ଯଥେଷ୍ଟ ନୁହେଁ — ମନୁଷ୍ୟଖାଦ୍ୟ ମଧ୍ୟ ନୁହେଁ । ସେ ଖାଦ୍ୟ ସେମାନଙ୍କୁ ଦୁର୍ବଳ କରି ପକାଉଛି ଦେହରେ ଓ ମନରେ । ସେମାନଙ୍କ ଭିତରେ ପୂର୍ବର ବୁଭୁକ୍ଷୁ ଉତ୍ତେଜନା ନାହିଁ, ଅହାର ଅନ୍ୱେଷଣର ତୀବ୍ର ଉଦ୍ୟମ ନାହିଁ । ତେଣୁ ସେମାନଙ୍କ ଭିତରେ ଗୋଷ୍ଠୀଚେତନା ନାହିଁ, ଏକତା ନାହିଁ, ମୃତ୍ୟୁ ମୁଖରୁ ବଞ୍ଚିବା ପାଇଁ ଏକତାବଳ ଉଦ୍ୟମ ନାହିଁ । ଦୁର୍ଭିକ୍ଷ ସେମାନଙ୍କୁ ମନୁଷ୍ୟର ଜାଗ୍ରତ ପ୍ରେତମୂର୍ତ୍ତିରେ ପରିଣତ କରିଥିଲା, ବଡ଼ଲୋକର ହାତଚେଟା ଦାନ ସେମାନଙ୍କୁ ପଶୁରେ ପରିଣତ କରି ସେମାନଙ୍କଠାରୁ ମନୁଷ୍ୟତାର ତେଜ କାଢ଼ି ନେଉଛି ।

ପିଲାଟି ମାଷ୍ଟ୍ରଙ୍କ ପାଖକୁ ଅସିଲା ।

ବୁଢ଼ା ତା ହାତରେ ମାଗିଆଣି ଥିବା ପତୋଳରୁ ଦୁଇଟାକ ଖଣ୍ଡ ଦେଇ କହିଲା, 'ବନା, ଦରବ ନାହିଁ ବାହୁକ ?'

'ବନା କୁଅଟେ଼ ଗୃହଲକ୍ଷ୍ମୀ । ଗ୍ରାମଲୋକେ ଏବ କହୁଥିବେ ଓ ମାଅ ମରିଗଲା; ଗାଡ଼ିରେ ନେଇଗଲେ; ବନା କୁଅଟେ଼ ଗୃହଲକ୍ଷ୍ମୀ ।

ବୁଢ଼ା ନିଜର ଛିଣ୍ଡାଅଖା ଖଣ୍ଡ ପାରିଲା ।
ପିଲାଟି କହିଲା, 'ମାଷ୍ଟ୍ରେ, ଶୋଇବ ନାହିଁ ?'
ବୁଢ଼ା ଥିରେ ସ୍ୱରରେ କହିଲା, 'ନା ।'
ସେ ଛିଣ୍ଡାଅଖା ଉପରେ ଗଡ଼ି ପଡ଼ିଲା ।

ବନ୍ଧୁଭ୍ରମରୁ ଫାନା ପିବା ଜନ୍ତୁ ବୁଢ଼ା ମନରେ ଗୋଟାଏ ଅଦ୍ଭୁତ ପରିବର୍ତ୍ତନ ଘଟିଛି । ସେ କାହାର ସହିତ ଭଲ ସ୍ୱରରେ କଥା କହେ ନାହିଁ । କାହାରକୁ ବୁଲିବାକୁ ଯାଏ; ଦିନେ ଦିନେ କାହାରକୁ କିଛି ମାଗେ ନାହିଁ । ଛୋଟାକୁ ଫେର ଯେମିତ ଶୋଇ ପଡ଼େ । ...

ଛଅ ଖୋଲ ହେବା ଦିନଠାରୁ ଏ କଳିଗଣା ପ୍ରତି ତା ମନରେ ଜନ୍ମିଛି ଗୋଟାଏ ଭୈରବୀଭାବ । ତାର ଫଯାର ଚର୍ଣ୍ଣିଭୂତ ହୋଇ ଯାଉଥିଲା; ସେ ବିଷବୃକ୍ଷରେ ତା ଗ୍ରାମ ଭିତରେ ଯେତେ ହଳାହଳ ପୁଞ୍ଜୀଭୂତ ହୋଇଥିଲା ତାହା ବାଟ ଖୋଜୁଥିଲା—ପାଉ ନ ଥିଲା । ଛଅ ବୁଢ଼ାର ଏହି ତୀବ୍ର ଅକ୍ରୋଶର ଲକ୍ଷ୍ୟବସ୍ତୁ ହୋଇଛି । ସେ ଜାଣେ, ବଡ଼ଲୋକର ବଡ଼ଲୋକୀ ତାକୁ ଓ ତା ପରି ଶତ ସହସ୍ର ଲୋକଙ୍କୁ ଆଜି ଦୁର୍ଭିକ୍ଷର ଅଣୁଚାପରେ ପରିଣତ କରିଛି । ତାହାର ସମସ୍ତ ଦୁଃଖଯନ୍ତ୍ରଣା ଭିତରେ ସେ ମନେ ମନେ ଏହି ବଡ଼ଲୋକୀ କଳିଗଣାକୁ ଖୋଜି ବୁଲିଛି, କିନ୍ତୁ ପାଇ ନାହିଁ । ଗୋଟାଏ ଅଶରୀରୀ ଦୁଷ୍ଟ ପ୍ରେତପରି ତାହା ବୁଢ଼ାର ରକ୍ତ ଶୋଷି ନେଉଛି, ନେଉଛି; କିନ୍ତୁ ତା ବହୁଦିନରେ ପ୍ରତ୍ୟାଶୀ ଶତ୍ରୁଟା ଗାଉଁ

କୌଣସି ଜିନଷ ସେ ଖୋଜି ପାଉ ନ ଥିଲା । ସେ ବଡ଼ଲୋକର କୋଠା ପାଖକୁ ଯାଏ—ଘୃଣାରେ ତାର ସର୍ବାଙ୍ଗ ଫୁଲୁଥିବ ହୋଇ ପଡ଼େ, ସେ କିଛି ମାଗେ ନାହିଁ—ଫେରି ଆସେ; ବଡ଼ଲୋକ ମୋଟର ଗାଡ଼ିରେ ଯାଉଥିବାର ଦେଖେ—କୋଧର ରକ୍ତାକ୍ତ ତରଙ୍ଗ ତା ଛାତି ଭିତରେ ଫେନିଳ ହୋଇଉଠେ, ତା ଚକ୍ଷୁରେ ଜ୍ୱଳିଉଠେ ଅଗ୍ନି, ତା ହାତର ହାଡୁଆ ଅଙ୍ଗୁଳି ଦଣ୍ଡା ମୁଷ୍ଟିବଦ୍ଧ ହୋଇ ଯାଏ—ତା ଉପରେ ଫୁଲି ଉଠେ ଧମନୀଗୁଡ଼ାକ । କିନ୍ତୁ ସେ ଜାଣେ, ଏ କୋଠାବାଲା ବଡ଼ ଲୋକ, ଏ ମୋଟରମାଲିକ ବଡ଼ ଲୋକ, ତା ପୁଅଗୁଡ଼ାକୁ ମାରି ପକାଇ ନାହାନ୍ତି, ତାକୁ ଆଜି ଦାଣ୍ଡର କାଙ୍ଗାଳରେ ପରିଣତ କରି ନାହାନ୍ତି । ଏ ସବୁ କରିଛି ବଡ଼ଲୋକୀ । ସେ ଶୁଣିଛି, ତାର ଜେଜେ ପୂର୍ବପୁରୁଷ ବଡ଼ଲୋକ ଥିଲେ, ଆଜି ସେ କାଙ୍ଗାଳ । ଠିକ ସେହିପରି ଏ ସେଜେ ବଡ଼ଲୋକଗୁଡ଼ାକ ଏମାନଙ୍କ ପୁଅନାତି ତାରି ପରି କାଙ୍ଗାଳ ହୋଇ ପାରନ୍ତି, ତାରି ପରି ମୁଠାଏ ଭାତ ପାଇଁ ଦାଣ୍ଡେ ଦାଣ୍ଡେ ବୁଲି ପାରନ୍ତି । ତେବେ ଦୋଷୀ କିଏ ? ଦାୟୀ,କିଏ ? ଦାୟୀ ବଡ଼ଲୋକୀ ଯାହା ମଟରବାଲାକୁ ମଟର ଚଢ଼ିବାର ସୁବିଧା ଦେଇଛି, ଆଉ ତାକୁ କରିଛି ବାଟକଢ଼ର ଛତରଖିଆ । ଏହି ବଡ଼ଲୋକୀ ବଡ଼ଲୋକମାନଙ୍କୁ ଚୋର, ଡକେଇତ, ଜୁଆଚୋର ବଦମାସରେ ପରିଣତ କରିଛି; ଆଉ ତାକୁ କରିଛି ଦୁର୍ବଳ, ନିଃସମ୍ବଳ, ନିସହାୟ ।

କେଜାଣି କାହିଁକି ବୁଢ଼ା ଏହି ଅନୁଷ୍ଠାନଗୁଡ଼ିକୁ ବଡ଼ଲୋକୀର ଗୋଟାଏ ଉତ୍କଟ ଅଭିବ୍ୟକ୍ତି ବୋଲି ମନେକଲା । ସେ ଏହି ଅନୁଷ୍ଠାନ ଭିତରେ ଦେଖିଲା ବଡ଼ଲୋକମାନଙ୍କ ଜୁଆଚୋରିର ଉତ୍କଟ ପ୍ରମାଣ । ତା ମନରେ ବଡ଼ଲୋକର ଏହି ଦାନ ପ୍ରତି ଜାତ ହେଲା ତୀବ୍ର ଘୃଣା, ତୀବ୍ର ବିଦ୍ରୋହ ।

ସମସ୍ତ ସମୟରେ ସେ ଛକ ପାଖକୁ ଯାଏ । କାଙ୍ଗାଳଗୁଡ଼ିକ ନିଃସହାୟ ପଶୁ ପରି ଧାଡ଼ି ଧାଡ଼ି ହୋଇ ବସି ଖାଉଥିବାର ସେ ଦେଖେ । ତା ଛାତି ଭିତରଟା ରାଗରେ ଫୁଲି ଉଠେ । ସେ ମନକୁ ମନ କହୁଉଠେ—'ଗ୍ରେଟ୍‌, ଡକେଇତ, ଜୁଆଗ୍ରେଟ୍' ।



# ଏକତରଣ

ବମ୍ବା ଅଶ୍ରମ । ବୀରେଶ୍ୱର ସେଠାରେ ଶରତ୍‌ର ସ୍ଥାନ ଅଧିକାର କରିଛି । ଚୂନଧଉଳା ଝାଟିମାଟି କାନ୍ଥର, ଗୋଟାଏ ସ୍ଥାନରେ ଶରତ୍‌ର ଖଣ୍ଡେ ଫଟୋ ଟଙ୍ଗା ହୋଇଛି । ଗୋଟାଏ କାଙ୍ଗାଳ ପିଲା ତା ଉପରେ ଗୋଟାଏ ଫୁଲମାଳ ପ୍ରତିଦିନ ଟଙ୍ଗାଇ ଦିଏ ।

ଡେଡ଼ିପୁଟି ଗୃହକାର୍ଯ୍ୟରେ ଇସ୍ତଫା ଦେଇ ସେ ପିଧାସଲଖ ଏହିଠାରେ ପହଞ୍ଚି ଯାଇଛି, ଏହାକୁହିଁ ସେ ତାର କର୍ମକ୍ଷେତ୍ର ବୋଲି ବାଛି ନେଇଛି । ଏଠାରେ ଅଛି ତାର ଅଖଣ୍ଡ ସ୍ୱାଧୀନତା, ଅପରନ୍ତ ଶାନ୍ତି ।

ସରକାରୀ ଗୃହକାର୍ଯ୍ୟ ଭିତରେ ପରାଧୀନତାର ବଷାକ୍ତ ବାଷ୍ପରେ ସେ ବେଦମ୍ ହୋଇ ପଡ଼ିଥିଲା । ମାସରେ କେତେଇଟା ଟଙ୍କା; ଏହାର ବଦଳରେ ତାକୁ ତାର ମନୁଷ୍ୟତାକୁ ବଳି ଦେବାକୁ ପଡ଼ୁଥିଲା । ଯୋଗ୍ୟ ହେଉ, ଅଯୋଗ୍ୟ ହେଉ, ଉପର ହାକିମର ମରଜି ଜଗି

ଚଳିବାକୁ ହେବ, ତାହାଙ୍କ ହୁକୁମ ମାନିବାକୁ ହେବ, ଅନ୍ୟଥା ହେଲେ ମଧ୍ୟ ମୁଣ୍ଡ ନୁଆଁଇବାକୁ ପଡ଼ିବ । ଗୁଞ୍ଜଅତେ ଯେତେବେଳେ ଅବିଚାର ଅତ୍ୟାଚାର ପୂରି ରହିଛି, ଯେତେବେଳେ ହୃଦୟହୀନତାର ରଥଚକ୍ର ତଳେ ଲକ୍ଷ ଲକ୍ଷ ଲୋକ ନିଷ୍ପେଷିତ ହୋଇ ଯାଉଛନ୍ତି, ସେତେବେଳେ ମଧ୍ୟ ତା ବିରୁଦ୍ଧରେ ପ୍ରତିବାଦ କରିବାର ଅଧିକାର ତାର ନାହିଁ ।

ଗୁଞ୍ଜଅର ପ୍ରତି ମୁହୂର୍ତ୍ତରେ ସେ ଅନୁଭବ କରୁଥିଲା, ଯେ ସେ ନିଜ ଉପରେ, ତା ଦେଶ ଉପରେ ଅତ୍ୟାଚାର କରୁଛି, ତାର ବିବେକ ବିରୁଦ୍ଧରେ କାର୍ଯ୍ୟ କରୁଛି, ହଜାର ହଜାର ଲୋକଙ୍କର ଅନାହାର ମୃତ୍ୟୁ ପାଇଁ ଯେଉଁମାନେ ଦାୟୀ, ସେମାନଙ୍କ ମଧ୍ୟରୁ ସେ ମଧ୍ୟ ଜଣେ । ସେ ଅଫିସକୁ ଯାଉଥିଲା, କାମ କରୁଥିଲା; କିନ୍ତୁ କାହିଁରେ ତାର ମନ ନ ଥିଲା । ଜେଲଖାନାର ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ଆଜୀବନ ବନ୍ଦୀ କଏଦୀ ଯେପରି ମୁକ୍ତିର ସମ୍ଭାବନାକୁ ସତୃଷ୍ଣ ନୟନରେ ଚାହିଁ ରହିଥାଏ, ଗୁଞ୍ଜଅ ଛାଡ଼ିବାର ସୁଯୋଗକୁ ସେ ସେହିପରି ଚାହିଁ ରହିଥିଲା ।

ଦିନେ ଜିଲ୍ଲାର ବଡ଼ହାକିମ ତାକୁ ନିଜ ଚେମ୍ବରକୁ ଡ଼ାକି କହିଲେ, 'ରିପୋର୍ଟ ଅସିଛି, ତୁମେ ଦୁର୍ଭିକ୍ଷ ବିରୁଦ୍ଧରେ ଅନ୍ଦୋଳନ କରୁଥିବା ଲୋକମାନଙ୍କୁ ସମର୍ଥନ କରୁଛ । ଅତଏବ ମଧ୍ୟ ସରକାର ଜାଣି ପାରିଛନ୍ତି ଯେ, ରାଜଦ୍ରୋହାତ୍ମକ କାର୍ଯ୍ୟ କରୁଥିବା ଦୁର୍ବୃତ୍ତମାନଙ୍କ ପ୍ରତି ତୁମର ସହାନୁଭୂତି ଅଛି । ଏ ବିଷୟରେ ତୁମର କିଛି କହିବାର ଅଛି ?"

ସୀତେଶ୍ୱର ଉତ୍ତର ଦେଲା, 'ଅପଣ ଯାହା ରିପୋର୍ଟ ପାଇଛନ୍ତି ତାହା ସମ୍ପୂର୍ଣ୍ଣ ମିଥ୍ୟା ନୁହେଁ । ମୁଁ ଏ ଦେଶର ଲୋକ, ମୁଁ ଭାରତ-

ବାସୀ । ଦେଶର ଲକ୍ଷ ଲକ୍ଷ ଲୋକ ଆଜି ଖାଇବାକୁ ନ ପାଇ କାଙ୍ଗାଳ ହୋଇ ଗୃହଅଡ଼େ ବୁଲୁଛନ୍ତି; ଶହ ଶହ ମରୁଛନ୍ତି । ଏହା ଆପଣ ଦେଖୁଛନ୍ତି; ମୁଁ ମଧ୍ୟ ଦେଖୁଛି । ସରକାର କହୁଛନ୍ତି, ଓଡ଼ିଶାରେ ଖାଦ୍ୟାଭାବ ନାହିଁ; ତେଣୁ ଏହାର ପ୍ରତିକାର କରିବାର ପ୍ରଶ୍ନ ମଧ୍ୟ ଉଠୁ ନାହିଁ । ତେବେ କରିବ କିଏ ? ଏମାନଙ୍କୁ ମରିବା ପାଇଁ ଛାଡ଼ିଦିଆଯିବ କି ? ସରକାର କଅଣ ଏହା ହିଁ ଚାହାନ୍ତି ? ଏହା ହିଁ କଅଣ ତାଙ୍କର ଇଚ୍ଛା ? ଅନାହାର ଫଳରେ ଯେଉଁମାନେ ଅସ୍ଥିକଙ୍କାଳରେ ପରିଣତ ହୋଇଛନ୍ତି, ଖାଦ୍ୟାଭାବରେ ଯେଉଁମାନେ ମରୁଛନ୍ତି, ତାଙ୍କୁ ଦେଖି, ତାଙ୍କ ଅବସ୍ଥା ଦେଖି, ଆପଣଙ୍କ ମନରେ କଷ୍ଟ ହୁଏ ନାହିଁ କି ? ଯେଉଁମାନେ ଏ ଅବସ୍ଥା ବଦଳାଇ ଦେବା ପାଇଁ ଉଦ୍ୟମ କରୁଛନ୍ତି, ସରକାରଙ୍କ ଏ ନୀତି ବଦଳାଇ ଦେବା ପାଇଁ ଚେଷ୍ଟା କରୁଛନ୍ତି, ତାଙ୍କ ପ୍ରତି ମୋର ସମର୍ଥନ ଅଛି; ଆପଣଙ୍କର କଅଣ ସମର୍ଥନ ନାହିଁ ? ସରକାରୀ ଚାକର, ଆଚରଣ ଆଇନ ଅଛି, ପ୍ରକାଶ୍ୟରେ ସମର୍ଥନ କରିବାର ପ୍ରଶ୍ନହିଁ ଉଠୁ ନାହିଁ । ଆଜି ଆପଣ ଯାହାଙ୍କୁ ରାଜଦ୍ରୋହୀ ବୋଲି କହୁଛନ୍ତି, ସେମାନେ କିଏ ମୁଁ ଜାଣେ ନା, ସେମାନେ ସାଧୁ କି ଦୁର୍ବୃତ୍ତ ସେ ବିଷୟରେ ମୋର ଧାରଣା ନାହିଁ; କିନ୍ତୁ ଭୋକିଲା-ପେଟ ଯଦି ରାଜଦ୍ରୋହର ବିଶିଷ୍ଟ ସୂତିକାଗାର ହୋଇଥାଏ, ତେବେ ଲକ୍ଷ ଲକ୍ଷ ରାଜଦ୍ରୋହୀ ଆଜି ଦାଣ୍ଡଘାଟରେ ଘୂରି ବୁଲୁଛନ୍ତି । ତାଙ୍କ ପ୍ରତି ମୋର ସହାନୁଭୂତି ଅଛି; ଆପଣ ମନୁଷ୍ୟ, ଆପଣଙ୍କର ମଧ୍ୟ ନିଶ୍ଚୟ ଥିବ ।'

ଜିଲ୍ଲାହାକିମ କହିଲେ, 'ତେବେ, ତୁମେ ସରକାରଙ୍କ ରିପୋର୍ଟ ଟିକ୍ ଏଥି ସ୍ୱୀକାର କରୁଛ ବୋଲି ଧରି ନେଉଛି ।

ଏଥିରୁ ନିବୃତ୍ତ ହେବା ପାଇଁ ମୁଁ ତୁମକୁ 'ସତର୍କ କରି' ଦେଉଛି । ସରକାରୀ ଚାକିରୀ ସରକାରୀ ଚାକର ଭାବରେ କରିବାକୁ ହେବ । ଏହାର ବ୍ୟତିକ୍ରମ ହେଲେ ଦଣ୍ଡର ବ୍ୟବସ୍ଥା ଅଛି । ତମେ ଯୁବକ । ତୁମ ସମ୍ମୁଖରେ ଦୀର୍ଘ ଜୀବନ ପଡ଼ି ରହିଛି; ବହୁବର୍ଷ ଧରି ତୁମକୁ ସରକାରୀ ଚାକିରୀ କରିବାକୁ ପଡ଼ିବ । ବୟସ୍କ ଲୋକ ହିସାବରେ ମୁଁ ତୁମକୁ ପରାମର୍ଶ ଦେଉଛି, ଶାସନକ୍ଷେତ୍ରରେ ଭାବପ୍ରବଣତା ପାଇଁ ସ୍ଥାନ ନାହିଁ ।'

ବୀରେଶ୍ୱର କିଛି ନ କହି ଚାଲିଆସିଲା; ମନେ ମନେ ଭାବିଲା, ଯେଉଁ କ୍ଷେତ୍ରରେ ମନୁଷ୍ୟତା ପାଇଁ ସ୍ଥାନ ନାହିଁ, ସେ କ୍ଷେତ୍ରରେ ତା ପାଇଁ ସ୍ଥାନ ନ ରହିଲେ ଭଲ ହୁଅନ୍ତା ।

ହୁଏତ ସେହି ଦିନ ସେ ଇସ୍ତଫାପତ୍ର ଦାଖଲ କରି ସରକାରୀ କାର୍ଯ୍ୟର ଚତୁଃସୀମା ଛାଡ଼ି ଚାଲି ଆସି ଥାଆନ୍ତା । ଏ ବାଟରେ ଏକମାତ୍ର ବାଧା, ତା ବାପା । ସେ ହୁଏତ ମନରେ ଦୁଃଖ କରିବେ; ହୁଏତ ତାଙ୍କ ଗର୍ବରେ ଆଘାତ ଲାଗିବ । ସେ ନିସ୍ପୃହ ଭାବରେ ଚାକିରିରେ ପଡ଼ି ରହିଲା ।

ଯେଉଁଦିନ ସେ ଶରତର ମୃତ୍ୟୁ ସମ୍ବାଦ ପାଇଲା, ସେହିଦିନ ସେ ନିଜର କର୍ତ୍ତବ୍ୟ ସ୍ଥିର କରିନେଲା । ଶରତ ଥିଲା ତାର ଅନ୍ତରଙ୍ଗ ବନ୍ଧୁ, ଗୋଟାଏ ବୃନ୍ତରେ ଦୁଇଟି ଫୁଲ ପରି ସେମାନେ ବଢିଥିଲେ, ଦେଶର କାର୍ଯ୍ୟ କରୁ କରୁ ଗୋଟିଏ ଝଡ଼ ପଡ଼ିଲା, ଦେଶର ସେବା କରୁ କରୁ ସେ ଆତ୍ମୋତ୍ସର୍ଗ କଲା । ତାର କାର୍ଯ୍ୟ ଅପୂର୍ଣ୍ଣ ରହିଛି ।

ବୀରେଶ୍ୱରର ଆଖି ଆଗରେ ନାଚିଗଲା ରମ୍ଭା ଆଶ୍ରମର ଅନାଥ ପିଲାଗୁଡ଼ିକ । ସେମାନେ ଯିବେ କୁଆଡ଼େ ? ଏ ବିରାଟ ଦୁନିଆରେ ତାଙ୍କର କିଏ ଅଛି ଯେ, ସେମାନେ ତା ପାଖକୁ ଆଜି ଯିବେ ?

ସେମାନଙ୍କର କି ଦଶା ହେବ ? ଯେଉଁ ନରକଙ୍କାଳଗୁଡ଼ିକ ଅଶ୍ରମଟିକୁ ଆଶ୍ରୟ କରି ବଞ୍ଚିଛନ୍ତି ସେମାନଙ୍କର ଅବସ୍ଥା ହେବ କଅଣ ?

ସେ ମୁହୂର୍ତ୍ତକ ଭିତରେ ନିଜ କର୍ତ୍ତବ୍ୟ ସ୍ଥିର କରିନେଲା; ସରକାରୀ କାର୍ଯ୍ୟରୁ ଇସ୍ତଫା ଦେଲା । ଏତେ ଦିନକେ ଦେଶର ଡାକ, ଜାତିର ଆହ୍ୱାନ ତା ଜୀବନରେ ସଫଳ ହେବାକୁ ଯାଉଛି ବୋଲି ସେ ଅନୁଭବ କଲା । ଆଶ୍ରମର ସାନ ଘର ଖଣ୍ଡିକରେ ସେ ଯେତେବେଳେ ଆସି ପହଞ୍ଚେ, ସେତେବେଳେ ସେ ଡେପୋଟି ବାବୁ ନୁହେଁ, ଜଣେ କର୍ମୀ, ଜଣେ ସେବକ ।

ସୁରେଶର ଅନୁଭବ କଲା, ତା ଜୀବନରେ ଗୋଟାଏ ମାହେନ୍ଦ୍ର ବେଳା ଆସିଛି, ଗୋଟାଏ ବିରାଟ ଦାୟିତ୍ୱ ତା ସମ୍ମୁଖରେ ଉପସ୍ଥିତ; ଗୋଟାଏ ବିରାଟ ବ୍ରତରେ ତାକୁ ଦୀକ୍ଷିତ ହେବାକୁ ହେବ—ଅନାଗତର ଆହ୍ୱାନକୁ ନତମସ୍ତକରେ ବରଣ କରି ନେବାକୁ ପଡ଼ିବ ।

---

## ବନ୍ଧନ

ଦିନ ୧୨ଟା ବାଜିବ । ଧାଡ଼ିଏ ବାଙ୍ଗାଲି ପିଲି ଛମୁଡ଼ିଆ ତଳେ ବସିଛନ୍ତି । ଲିଲି ଅଣ୍ଟାରେ ଖଦଡ଼ ଲୁଗାର ଗୋଟାଏ କାନି ଗୁଡ଼େଇ ଦେଇ ସେମାନଙ୍କୁ ପରିବେଷଣ କରିବାରେ ଲାଗିଛି । ରମ୍ଭା ଆଶ୍ରମ ପିଣ୍ଡା ଉପରେ ବସି ତୁମୋଦ ସେ ଅଡ଼କୁ ଗୁହିଁ ରହିଛି ।

କିଛି ଦୂରରେ ଚାଲିବା । ସେଥିରେ ସାନ ସାନ ଢେଉଗୁଡ଼ିକ ହାଲିକା ପବନର ତାଳେ ତାଳେ ନାଚୁଛନ୍ତି; ଦୁଇ ପ୍ରହରର ଖରା ସେଗୁଡ଼ାକ ଉପରେ ପରସ୍ତେ ରୁପାପଦ ଗ୍ଲଜଣି କରି ଦେଉଛି ।

ଶରତ୍‌ର ମୃତ୍ୟୁ ଲିଲି ମନ ଭିତରେ ଗୋଟାଏ ବିରାଟ ଝଡ଼ ସୃଷ୍ଟି କରିଥିଲା । ତାହା ଫଳରେ ତା ଜୀବନର ଗତି ଲେଉଟପାଲଟ ହୋଇଗଲା । କଲେଜରେ ପଢ଼ିବାଟା ତ ତା ପକ୍ଷରେ ଗୋଟାଏ ସଉକ, ବିଳାସବ୍ୟସନପୂର୍ଣ୍ଣ ବାତାବରଣ ଭିତରେ ଜୀବନ ଅତି-ବାହିତ କରିବାର ଗୋଟାଏ ଉପଲକ୍ଷ ଥିଲା । ବିଦ୍ୟା ତାର କାମ୍ୟ ନ ଥିଲା; କାମ୍ୟ ଥିଲା ତଥାକଥିତ ଅଭିଜାତ୍ୟ ବିମଣ୍ଡିତ ଜୀବନର ଉପଭୋଗ । ଏ ଦିଗରେ କୌଣସି ଦିନ ତାର କୌଣସି ଅଭାବ ଘଟି ନାହିଁ । ସେ ଯେତିକି ଏ ଦିଗରେ ଅଗ୍ରସର ହୋଇଛି, ସେତିକି ଅନୁଭବ କରିଛି ଗୋଟାଏ ତିକ୍ତ ବିକ୍ରତା, ଗୋଟାଏ ଅସ୍ପୃହଣୀୟ ବ୍ୟର୍ଥତାର କର୍କଶ ଅଭାସ । ସେ ଯେତିକି ନୂତନତା ଖୋଜିଛି, ସେତିକି ତା ମନ ବ୍ୟର୍ଥତାର ସ୍ପର୍ଶରେ ମ୍ରିୟମାଣ ହୋଇପଡ଼ିଛି; କିନ୍ତୁ ଧରିବନ୍ଧା ଜୀବନର ଧାରା ଗ୍ଲଡ଼ିବାର ଉପାୟ ନାହିଁ ତା ପକ୍ଷରେ ।

ଶରତ ଓ ତା ଭାଇ ବୀରେଶ୍ୱରକୁ ପିଲାଦିନୁଁ ଲିଲି ଦେଖିଛି, ସେମାନଙ୍କର କଥାବାର୍ତ୍ତା ଶୁଣିଛି । ଏ ଦୁଇ ଜଣ ଖାପଛଡ଼ା ଲୋକ ବୋଲି ତାର ଧାରଣା । ଏମାନଙ୍କ ପକ୍ଷରେ ଅସାଧାରଣ ହିଁ ନିତାନ୍ତ ସାଧାରଣ ବିଷୟ । ଦୁନିଆର ଅଧିକାଂଶ ଲୋକ ଯେଉଁ ବାଟରେ ଗତି କରନ୍ତି, ଏମାନଙ୍କ ପକ୍ଷରେ ତାହା ଅମଡ଼ା—କଣ୍ଟକାକୀର୍ଣ୍ଣ । ଏ ଦୁହିଁଙ୍କୁ ସେ ବୁଝି ପାରେ ନାହିଁ; କିନ୍ତୁ ଏମାନଙ୍କ ପ୍ରତି ତାର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା । ଦେଶ ସେ ବୁଝୁ ନଥିଲା; ଜାତି ଥିଲା ତା ପକ୍ଷରେ ଗୋଟାଏ ପ୍ରକାଣ୍ଡ ଜନସମଷ୍ଟି, ଧନୀର

ଅଭାବକୁ ସେ ଦାରିଦ୍ର୍ୟ ବୋଲି ବୁଝୁଥିଲା; ଖାଦ୍ୟାଭାବ ଥିଲା ଖାଦ୍ୟ ସଂଗ୍ରହ କରିବା ଦିଗରେ ସାମର୍ଥ୍ୟର ଅଭାବ । ଏସବୁ ବିଷୟ କୌଣସି ଦିନ ତାର ଅନ୍ତରକୁ ସ୍ପର୍ଶ କରି ନ ଥିଲା । କଲେଜରେ ଅଶାନ୍ତ ହୋଇ ଶରତ୍‌ର ମୃତ୍ୟୁ ଓ ତା ଭାଇର ସବକାଶ ସ୍ୱାର୍ଥତ୍ୟାଗ ତା ଆଖି ଆଗରେ ଗୋଟାଏ ନୂତନ ରାଜ୍ୟର ତୋରଣଦ୍ୱାର ଫିଟାଇ ଦେଲା । ତା ଜୀବନର ଗତି ବଦଳି ଗଲା । ସେ କଲେଜ ପାଠ ଛାଡ଼ିଦେଲା; ବସ୍ତି ଆଶ୍ରମରେ ପହଞ୍ଚି ଦୁଃଖୀ, ଅନାଥ, ଆର୍ତ୍ତଙ୍କ ସେବାରେ ନିଜକୁ ଉତ୍ସର୍ଗିତ କରି ଦେଲା ।

ଏ ବାଟରୁ ଲିଲିକୁ ନିବର୍ତ୍ତାଇବା ଉଦ୍ଦେଶ୍ୟରେ ପ୍ରମୋଦ ବାରମ୍ବାର ଚେଷ୍ଟା କରିଛି । ସେ ସମ୍ପ୍ରଦାୟ ବିଷୟଟାକୁ ଗୋଟାଏ ପ୍ରହସନ ବୋଲି ଧରି ନେଇଛି । ଏ ପରିବର୍ତ୍ତନ ଭିତରେ ଯେ ଲିଲିର ଆନ୍ତରିକତା ନାହିଁ ଏହା ପ୍ରମୋଦର ଦୃଢ଼ ବିଶ୍ୱାସ । ସେଥିପାଇଁ ଲିଲିକୁ ପୁଣି କଲେଜ ପାଠ ଧରିବା ଦିଗରେ ପ୍ରବର୍ତ୍ତାଇବା ପାଇଁ ବାରମ୍ବାର ଉଦ୍ୟମ ଚଳାଉଛି । ଏ ଉପଲକ୍ଷରେ ମଧ୍ୟ ସେ ବସ୍ତି ଆଶ୍ରମରେ ଉପସ୍ଥିତ ହୋଇଥିଲା ।

ଆଶ୍ରମ ପଛଆଡ଼େ କଦଳୀ ବଗିଚା । ଗୋଟାଏ ସାନ ପୋଖରୀ । ତାହାର କୂଳରେ ଲିଲି ଲୁଗା କାଚିବାରେ ବ୍ୟସ୍ତ । ପ୍ରମୋଦ ହୁଡ଼ାଉପରେ ଠିଆହୋଇ ସେ ଆଡ଼କୁ ଚାହିଁ ରହିଥିଲା—ଆଜି ଲିଲିର ଜୀବନରେ ଯେଉଁ ଅଭାବନୀୟ ପରିବର୍ତ୍ତନ ଘଟି ଯାଉଛି ମନେ ମନେ ସେ କଥା ଭାବୁଥିଲା । ଏହି ଲିଲି, ଯାହାର ଲୁଗା ସବୁବେଳେ ଚକ୍ ଚକ ହେଉଥିଲା, ଯାହାର ଚପ୍ପଲରେ ଧୂଳି କଣାଟାଏ ମଧ୍ୟ ଲାଗୁ ନ ଥିଲା, ଫେସନରେ ଯେ ଥିଲା କଲେଜ ଛାତ୍ରୀମାନଙ୍କର ଅଗ୍ରଣୀ—ସେ ଆଜି ଖଦଡ଼ ପିନ୍ଧୁଛି, ଖାଲି ଗୋଡ଼ରେ

ବୁଲୁଛି, ବାସନ ମାଜୁଛି, ଲୁଗା ଧୋଉଛି—ନିଜ ପାଇଁ ନୁହେଁ, ଅତିଥି ପର, ଅରକ୍ଷ କାଙ୍ଗାଳମାନଙ୍କ ପାଇଁ । ଯେତେତ ଛାତ୍ରବେଳେ ମଧ୍ୟ ଏହାର କଳଙ୍କନାଶ କରୁଛି ସେ ପାଉ ନାହିଁ । କଲେଜରେ ପଢ଼ିବା ସମୟରେ ଲିଲି ତ ସମସ୍ତଙ୍କଠାରୁ ସ୍ନେହସମ୍ମାନ ପାଉଥିଲା; ତାର ସାନ୍ନିଧ ଲାଭ କରିବା ଗୋଟାଏ ଗୌରବର ବିଷୟ ବୋଲି ଅଧିକାଂଶ ଛାତ୍ର ମନେ କରୁଥିଲେ । କୌଣସି ଦିନ ତ ତାର କିଛି ଅଭାବ ନ ଥିଲା, ହଠାତ୍ ସେ ପଢା ଛାଡ଼ି ଦେଲା କାହିଁକି ? ହଠାତ୍ ସେ ନିଜଉପରେ କୃଚ୍ଛ୍ର ସାଧନ ଆରମ୍ଭ କଲା କାହିଁକି ?

ପ୍ରମୋଦ କୌଣସି ଦିନ ଦେଶ, ଜାତି, ଲୋକସାଧାରଣ ଆଦି କଥା ବୁଝି ପାରେ ନାହିଁ । ତାର ଦୃଢ଼ ଧାରଣା ଏ ଗୁଡ଼ାକ ଅଶରୀରୀ କଳନା, ସ୍ୱାର୍ଥ ଦୃଷ୍ଟିରୁ କେତେଜଣ ଲୋକ ଏ ଧରଣର ଏଭଳକି ବାଜ ସୃଷ୍ଟି କରିଛନ୍ତି । ସେମାନେ ଏ ଦ୍ୱକର କଥାର କୁହେଳିକା ସୃଷ୍ଟି କରି ନିଜର ସ୍ୱାର୍ଥ ସାଧନ କରନ୍ତି । ମୋର ଦେଶ —ଏହାର ଅର୍ଥ ବା କଅଣ ? ଯେ ଏ ଭୂଇଁରେ ଅଛି, ସେ ଏ ଦେଶର ଲୋକ । କାଲି ଯଦି ସେ ବିଲାତ ବା ଆମେରିକାରେ ଘରଦ୍ୱାର କରି ରହେ, ତେବେ ସେ ସବୁ ସ୍ଥାନ କଅଣ ତାର ଦେଶ ହେବ ନାହିଁ ? ତାର ଜାତି ? ସେ ତ ମଣିଷ, ତାର ଜାତି ତ ମନୁଷ୍ୟ ଜାତି । ଏ ଦେଶରେ ତାର ଘର ବୋଲି କଅଣ ସେ ମଣିଷ ଜାତିରୁ ଅଲଗା ? ମଣିଷ ଜନ୍ମ ହୋଇଛି, ସୁଖରେ ରହିବ, ଆନନ୍ଦରେ ରହିବ, ଖୁସିରେ ଜୀବନ କଟାଇବ । ଏତିକି ଯଦି ସେ କରି ନ ପାରିଲା ତାକୁ ଅଯୋଗ୍ୟ ଛଡ଼ା ଆଉ କଅଣ କୁହା ଯାଇପାରେ ? ଯେଉଁମାନେ ଖାଇବାକୁ ପାଉ ନାହାନ୍ତି, ପିନ୍ଧିବାକୁ ପାଉ ନାହାନ୍ତି, ଯେଉଁମାନଙ୍କ ମୁଣ୍ଡ ଉପରେ ଛାଳଖଣ୍ଡେ ନାହିଁ, ସେମାନେ ନିଜର ଶକ୍ତି, ସାମର୍ଥ୍ୟ,

ଯୋଗ୍ୟତା ଅଭାବରୁ ଏସବୁ ପାଇ ନାହାନ୍ତି । ତାଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବା ଅର୍ଥ ଅଯୋଗ୍ୟତାକୁ ପ୍ରଶ୍ରୟ ଦେବା ଛଡ଼ା ଆଉ କିଛି ନୁହେଁ । ପିଲାଦିନୁଁ ପ୍ରମୋଦ ଅଭାବଅନାଟନ ସହିତ ପରିଚିତ ନୁହେଁ । ସେଥିପାଇଁ ଦୁଃଖୀରଙ୍କୀଙ୍କ ପ୍ରତି ତାର କୌଣସି ସହାନୁଭୂତି ନ ଥିଲା । ଯେଉଁ ଶିକ୍ଷା ତାକୁ ଦିଆ ଯାଉଥିଲା, ସେଥିରେ ମଧ୍ୟ ଏ ସବୁ ପ୍ରବୃତ୍ତିର ଉନ୍ମେଷଣ ପାଇଁ ସ୍ଥାନ ନ ଥିଲା ।

କଲେଜ ଜୀବନର ଝଲମଲ ସଜଳ ମଧ୍ୟରେ ଲଲି ସହିତ ତାର ବନ୍ଧୁତା ଥିଲା ଗୋଟାଏ ସଉକ—ଗୋଟାଏ ଫେସନ । ଏହା ଫଳରେ ସହପାଠୀମାନଙ୍କ ମଧ୍ୟରେ ତା ପ୍ରତି ସମ୍ମାନ ଥିଲା । ଯେତେବେଳେ ଲଲି କଟକ ଛାଡ଼ି କଲେଜ ଛାଡ଼ି, ରମ୍ଭା ଆଶ୍ରମରେ ଆସି ରହିଲା, ସେତେବେଳେ ତା ଶ୍ରେଣୀର କେତେକ ଛାତ୍ର ତା ପ୍ରତି ବ୍ୟଙ୍ଗ କରି କହୁଥିଲେ । ଚଢ଼େଇ ଉଡ଼ିଗଲା । ସେଥିପାଇଁ ଲଲିକୁ ପୁଣି—ଫେରାଇ ଆଣିବା ପାଇଁ ସେ ଉଦ୍ୟମ କରୁଥିଲା ।

---

## ଚେତନା

ସନ୍ଧ୍ୟାର ଅନ୍ଧାର କମେ କମେ ଆଶ୍ରମ ପ୍ରାଙ୍ଗଣକୁ ଓହ୍ଲାଇ ଆସିଲା । ଦୂରରେ ଦିଶୁଥିବା ଗାଆଁରେ ହୁଏତ କେଉଁ ପଲ୍ଲୀବଧୂ ତୁଳସୀ ଚଉରା ମୂଳରେ ଦୀପ ଜାଳିଥିବ; ତାହା ଆଶ୍ରମ ପିଣ୍ଡାରୁ ମିଞ୍ଜିମିଞ୍ଜି ହୋଇ ଦିଶୁଥିଲା ।

'ରଘୁପତି ରାଘବ ରାଜାରାମ' 'ଶତ କଣ୍ଠରେ ଆଶ୍ରମ ଭିତରୁ ଉଠୁଥିଲା ସମବେତ ପ୍ରାର୍ଥନା ସଙ୍ଗୀତ । ଏହାରି ମଧ୍ୟରେ ଜାଗ୍ରତ

ହୋଇଥିଲା ସାରା ଓଦାଣ ଉପରେ ପ୍ରବାହିତ ହେଉଥିବା ଗୋଟାଏ ବିରାଟ ବିପ୍ଳବର ଅନ୍ତରାତ୍ମା । ବିଶ୍ୱର କେହି ନିୟନ୍ତା ଯଦି ଥାଆନ୍ତି, ତାଙ୍କର ସିଂହାସନ ଯଦି ଥାଏ, କୋଟି କୋଟି ଦୁଃଖୀ, ଆର୍ତ୍ତ, ପ୍ରପୀଡ଼ିତଙ୍କ କଣ୍ଠରୁ ଉତ୍‌ଥିତ ଏ ଧ୍ୱନି ନିଶ୍ଚୟ ସେଠାରେ ପହଞ୍ଚିପାରୁଥିବ, ତାଙ୍କ ହୃଦୟକୁ ଆଲୋଡ଼ିତ କରୁଥିବ ।

ପ୍ରାର୍ଥନା ସରିଲା । ଘର ଭିତରେ ବୀରେଶ୍ୱର ଯାଇ ବସିଲା । ଏହି ସମୟରେ ସେ ଚିଠି ପତ୍ର ଲେଖେ । ଚଟାଣି ଉପରେ ଦୁଇଖଣ୍ଡ ମଶିଣା ବିଛା ହୋଇଥିଲା; ଗୋଟାଏ ଲଣ୍ଠନ ଜଳୁଥିଲା । କିଛି ସମୟ ପରେ ଲିଲି ଓ ପ୍ରମୋଦ ସେଠାରେ ଯାଇ ବସିଲେ ।

ବୀରେଶ୍ୱର କହିଲା, 'ପ୍ରମୋଦ, ତମକୁ ଏଠାରେ ଭଲ ଲାଗୁ ନ ଥିବ; ତୁମେ ତ ଏ ଧରଣର ଖାଇବା, ରହିବା, ଗୁଲିଚଳନରେ ଅଭ୍ୟସ୍ତ ନୁହଁ ।'

ପ୍ରମୋଦ କ'ଣ କହିବ କିଛି ଠିକ୍ କରି ପାରିଲା ନାହିଁ । ଏ ଧରଣର ଚଳଣିରେ ସେ ଅଭ୍ୟସ୍ତ ନୁହେଁ, ଏ କଥା ସତ; ଏ-ଧରଣର ଖାଦ୍ୟ ତା ଜନ୍ମରୁ କୌଣସି ଦିନ ଖାଇ ନ ଥିଲା; ଏ ଧରଣର ଲୋକଙ୍କ ସହିତ ଚଳିବା କଳ୍ପନା ମଧ୍ୟ କୌଣସି କାଳେ ତା ମନ ଭିତରକୁ ଆସି ନ ଥିଲା । ଏଠାରେ ତାକୁ ଭଲ ନ ଲାଗିବା କଥା—ଲାଗୁ ନ ଥିଲା; କିନ୍ତୁ କିଛି ଗୋଟାଏ ତ କହିବାକୁ ହେବ ।'ତେଣୁ ପ୍ରମୋଦ କହିଲା, 'ନା, ଭଲ ଲାଗୁଛି । ମୋର କହିବା କଥା ଏହି ଯେ, କେତେ ଦିନ ଆପଣ ଏ ଭାବରେ ଗୁଲିବେ—ବିଶେଷତଃ ମିସ୍ ମହାନ୍ତି ?'

ବୀରେଶ୍ୱର ହସି ହସି କହିଲା, 'ମୋ କଥା ଛାଡ଼; ମୁଁ ତ ଏ ବାଟ ଜାଣି, ବୁଝି; ବର୍ଷ ବର୍ଷ ଧରି ଚିନ୍ତା କରି ବାଛି ନେଇଛି ।

ଜୀବନର ଅବଶିଷ୍ଟ ସମୟ ଏହି ଭାବରେ ଚଳିବାକୁ ହେବ । ଏ ବାଟରେ ଅଛି ଦୁଃଖ, ଅଛି ଯନ୍ତ୍ରଣା—ହୁଏତ ମୃତ୍ୟୁ; କିନ୍ତୁ ଏହାରି ଭିତରେ ମୋତେ ଯେଉଁ ଆନନ୍ଦର ଆସ୍ୱାଦ ମିଳୁଛି, ତାହା ଏ ପର୍ଯ୍ୟନ୍ତ ମୋତେ ମିଳି ନ ଥିଲା । କ୍ରମେ କ୍ରମେ ମୋର ବିଶ୍ୱାସ ଦୃଢ଼ରୁ ଦୃଢ଼ତର ହେଉଛି, ଅନୁଭୂତି କ୍ରମେ କ୍ରମେ ବଢ଼ୁଛି, ଯେ ନିଜ ପାଇଁ ବଞ୍ଚେ ସେ ବଞ୍ଚେ ନାହିଁ—ଜୀବନର ବୋଝ ମୁଣ୍ଡରେ ବୋହି ବୋହି ଜୀବନଟା କଟାଇ ଦିଏ । ସ୍ୱାର୍ଥପରତା, ସଫଳତା ତା ଭାଗ୍ୟରେ ଜୁଟେ ନାହିଁ । ତମେ ତ ଶରତ୍‌କୁ ଦେଖିଛ; ମୋର ପରି ସେ ବିଶ୍ୱବିଦ୍ୟାଳୟର ଡିଗ୍ରୀ ହାସଲ କରିଥିଲା, ମୋରି ପରି ସେ ଚଳିଯିବା ପରିବାରର ପିଲା; ଇଚ୍ଛା କରିଥିଲେ ସେ ମୋରି ପରି ସରକାରୀ ଚାକିରି କରି ସ୍ୱଚ୍ଛନ୍ଦରେ ଜୀବନଟା କଟାଇ ଦେଇ ପାରିଥାନ୍ତା । ମୂଳରୁ ସେ ନିଜ ପାଇଁ ଗୋଟାଏ ଦୁର୍ଗମ ପଥ ବାଛି ନେଲା କାହିଁକି ? ଦୀପ ପରି ନିଜେ ଜଳି ଅନ୍ୟମାନଙ୍କୁ ଆଲୋକ ଦେଉଥିଲା କାହିଁକି ? ତେଲ ସରିଲା, ଦୀପ ଲିଭିଲା ସତ; କିନ୍ତୁ ତାର ତ୍ୟାଗ ଏ ଦୁନିଆକୁ ଟିକିଏ ହେଲେ ତ ଉନ୍ନତତର କରିଛି, ତାର ସ୍ମୃତି ଜାତିର ଭବିଷ୍ୟତ ପାଇଁ ଅତି ସାମାନ୍ୟ ହେଲେ ମଧ୍ୟ ସମ୍ବଳ ଯୋଗାଇ ଦେଉଛି ତ ? ତୁମେ ହୁଏତ ଏ ସବୁ କଥା ବୁଝିପାରୁ ନ ଥିବ; ହୁଏତ କୌଣସି ଦିନ ବୁଝିପାରିବ ନାହିଁ, ତୁମେ ଯେଉଁ ଧାରାରେ ବଢ଼ିଛ ସେଥିରେ ତୁମର ଧାରଣା ହେବ ନାହିଁ ଯେ, ତୁମ ବାଟ ଛଡ଼ା ଆଉ କୌଣସି ବାଟରେ ସୁଖ ମିଳେ, ଆନନ୍ଦ ଥାଏ । ତୁମ ପକ୍ଷରେ ହୁଏତ ତାହାହିଁ ଠିକ୍; କିନ୍ତୁ ଏହାର ଓଲଟା ଅବସ୍ଥାରେ ଯେ ମୁଁ ଆନନ୍ଦ ପାଉଛି, ଏ କଥା ମଧ୍ୟ ଠିକ୍ ।

ପ୍ରମୋଦ ଏ ସବୁ ଶୁଣୁଥିଲା, କିଛି ବୁଝିପାରୁ ନ ଥିଲା । ଏହାର ଯେ କି ଉତ୍ତର ଦେବ ଠିକ୍ କରି ନ ପାରି କହିପକାଇଲା, 'ଆପଣଙ୍କ

କଥା କହୁ ନାହିଁ । ଶୁଣିଛି, ଅଦର୍ଶବାଦଦ୍ୱାରା ପ୍ରଭାବିତ ହୋଇ ଲୋକେ ଅପଣାଙ୍କ ପଦ ତ୍ୟାଗ ସ୍ୱୀକାର କରନ୍ତି । ଏହା ଭଲ କି ମନ୍ଦ ଭାବି ଦେଖିବା ପାଇଁ ମୋର ସୁବିଧା ବା ଅବସର ହୋଇ ନାହିଁ । ମୁଁ କେବଳ ମିସ୍ ମହାନ୍ତିଙ୍କ କଥା କହୁଛି ।'

ବୀରେଶ୍ୱର ପୁଣି ହସିଲା; କହିଲା, 'ଓଃ ଲିଲି କଥା ? ମୁଁ ମଧ୍ୟ ଏ ବିଷୟରେ ତମ ସହିତ ପ୍ରାୟ ଏକମତ । ତଥାପି ତମେ ତାଙ୍କୁ ପଚାରିଲେ ଭଲ ହେବ ।'

ସୂତା ଖିଅଟାଏ ମିଳିଗଲା ବୋଲି ଭାବି ପ୍ରମୋଦ କହିଲା, 'ପୁଣି ସେ କଲେଜରେ ପଢ଼ିଲେ ଭଲ ହୁଅନ୍ତା ।'

ବୀରେଶ୍ୱର ପୁଣି କହିଲା, 'ହଁ ଭଲ ହୁଅନ୍ତା—ନିଶ୍ଚୟ ଭଲ ହୁଅନ୍ତା । ଏ ବାଟଟା ତ ସାଧନାର ବାଟ, ଦୁଃଖକଷ୍ଟ ତ ଏ ବାଟର ସାଥୀ ସହଚର । ଏଥିରେ ଚାଲି ପାରିଲେ ଭଲ; ନ ହେଲେ ଏ ଭୁଲି ଯିବ, ସେ ବି ଭୁଲି ଯିବ । କଅଣ କହୁଛ, ପ୍ରମୋଦ ?'

ପ୍ରମୋଦ କିଛି କହିବା ପୂର୍ବରୁ ଲିଲି କହିଲା, 'ମୁଁ ତୁମଠାରୁ ସାନ, ଏହା ବୋଲି ସବୁବେଳେ ମୋତେ ସାନ ମନେ କରିବା, ମୁଁ ଅଯୋଗ୍ୟ, ମୁଁ କିଛି ପାରିବି ନାହିଁ ବୋଲି ଭାବିବା କଅଣ ଠିକ୍ ହେବ ? ମୁଁ ଯାହା ଥରେ ଠିକ୍ କରିଛି, ତାହାହିଁ କରିବି । କଲେଜରେ ପଢ଼ିବା ଲାଭ କଅଣ ? କଲେଜ ପାଠ ଶେଷ କରିବା ପରେ କଅଣ ? ଚାକିରି କରିବି ତ ? ଚାକିରି ତ ତୁମକୁ ଭଲ ଲାଗିଲା ନାହିଁ—ଛାଡ଼ିଦେଲ, ମୋତେ କଅଣ ତାହା ଭଲ ଲାଗିବ । ସତ୍ୟ ତ ପିଲାଦିନରୁ କହୁଛି । ଏ କାମରେ ଯେଉଁ ଶାନ୍ତି ମିଳୁଛି, ଯେଉଁ ଆନନ୍ଦ ପାଉଛି, କଲେଜଜୀବନର ମଉଜମଜଲିସରେ ତ ତାହା ଦିନେହେଲେ ମୁଁ ପାଇନାହିଁ । ନା, କଲେଜ ଆଉ ମୋପାଇଁ

ନୁହେଁ । ମୁଁ ମଧ୍ୟ ସୌଖିନ କଲେଜ ପାଇଁ ନୁହେଁ । ମୁଁ ବର୍ତ୍ତମାନ ଯେଉଁ କଲେଜରେ ପଢ଼ୁଛି ସେ କଲେଜ ନିର୍ଜୀବ ନୁହେଁ, ସେଠାରେ ନିର୍ଜୀବ ବହିଗୁଡ଼ାକ ପଢ଼ାଯାଏ ନାହିଁ; ସେ କଲେଜ ଜୀବନ୍ତ, ସେଥିରେ ଜୀଅନ୍ତା ମନୁଷ୍ୟର ଜୀବନକୁ ଶିକ୍ଷାଲାଭ କରିବାକୁ ହୁଏ ।'

ପ୍ରମୋଦ ଆଡ଼କୁ ଚାହିଁ ସେ ପୁଣି କହିଲା, 'ପ୍ରମୋଦ ବାବୁ, ଆପଣଙ୍କ ସହାନୁଭୂତି ପାଇଁ ମୁଁ କୃତଜ୍ଞ, ମୋ ପାଇଁ ଆପଣ ଯେ ଚିନ୍ତା କରୁଛନ୍ତି, ସେଥିରେ ମୁଁ ଆନନ୍ଦିତ; କିନ୍ତୁ ଆମର ବାଟ ଅଲଗା । ଆପଣଙ୍କର ଅନୁରୋଧଦ୍ୱାରା ଆପଣ ଆଜି ମୋତେ ବିବ୍ରତ କରିବେ ନାହିଁ ବୋଲି ଆଶା କରୁଛି । ଲୋକ ଯେତେ ଦିନ ଅନ୍ଧ ଥାଏ, ସେ ବାଡ଼ି ଭର ଦେଇ, ଅଣ୍ଡାଳି ଅଣ୍ଡାଳି ବାଟ ଚାଲେ; ପରେ ଆଖି ଫିଟିଲେ ଜ୍ୱଳନ୍ତ ଜଗତର ଚିତ୍ର ତା ସମ୍ମୁଖରେ ଉପସ୍ଥିତ ହୋଇ ଯାଏ । ନା, ମୁଁ ଯାହା କରୁଛି, ତାହା ସବୁଦିନ-ପାଇଁ କରୁଛି । ଆମେ ଭାଇ ଓ ଭଉଣୀ ଗୋଟାଏ ପଥର ପଥିକ ।'

ରେଳ ସମୟ ହୋଇ ଯାଇଥିଲା । ରମ୍ଭା ଷ୍ଟେସନର ଡିଷ୍ଟାଣ୍ଟ ସିଗ୍‌ନାଲରେ ସେ ପର୍ଯ୍ୟନ୍ତ ନାଲି ଆଲୁଅ ଜଳୁଥିଲା ।

ପ୍ରମୋଦ ଷ୍ଟେସନ ଆଡ଼କୁ ଚାଲିଲା ।

ଆଶ୍ରମ ଫାଟକ ପାଖକୁ ଲିଲି ବଳାଇ ଦେବାକୁ ଆସିଥିଲା; ପ୍ରମୋଦକୁ କହିଲା, 'ନମସ୍କାର ।'

ପ୍ରମୋଦ ତା ଆଡ଼କୁ ଚାହିଁ କହିଲା, 'ଲିଲି, ଆଜି କୌଣସି କ୍ଷେତ୍ରରେ ହୁଏତ ଦିନେ ନା ଦିନେ ତୁମର ମୋ ସହିତ ଦେଖା ହେବ । ସେତେବେଳେ ଚିହ୍ନିପାରିବ ତ ?"

ଲିଲି କହିଲା, 'ଆପଣ ସେତେବେଳକୁ ଯଦି ଶିଖିପାରିବା ଭଳି ଲୋକ ହୋଇ ଥାଆନ୍ତି ।'

ଆଗରେ ଅନ୍ଧାର । ପ୍ରମୋଦ ତାହାର ଭିତରେ ଆଗକୁ ଆଗକୁ ଚାଲିଲା ।

---

## ଚଉତ୍ରିଶ

କଲେଜ ଛକ ଠାରୁ ରେଳଲାଇନର ଲେଭଲ୍‌କ୍ରସିଂ ପର୍ଯ୍ୟନ୍ତ ଯେଉଁ ଧୂଳିଆ ନାଲି ସଡ଼କ, ତାର ଦୁଇକଡ଼ରେ ଗୁଡ଼ାଏ ବଡ଼ ବଡ଼ ଝଙ୍କା ଗଛ । ସେଗୁଡ଼ାକ ମୂଳରେ ବୁଲା କୁକୁର ଓ ଓଦାଶିଆ ଗାଈଗୁଡ଼ାକ ରାତିରେ ଅସ୍ଥାନ ଜମାନ୍ତି, କେତେଥର ଝଙ୍କା ତଳ-ତଳେ ଗୁଡ଼ାଏ କାଙ୍ଗାଳ ଆଶ୍ରୟ ନିଅନ୍ତି ।

ଟିକିଏ ଦୂରକୁ ବାଟ କଡ଼ରେ ଅଉ ଗୋଟାଏ ଗଛ । ମାଷ୍ଟ୍ରେ ତାର ମୂଳରେ ଦୁଇଦିନ ହେଲା ଅଖାପାରି ଶୋଇଛନ୍ତି । ଗତ କାଲି କଲେଜ ହଷ୍ଟେଲର ଜଣେ ଚାକର ଖଣ୍ଡେ ପତ୍ରରେ ତାଙ୍କୁ କିଛି ଭାତ ଦେଇ ଯାଇଥିଲା, ଗୋଟାଇ ପାଖରେ ତାହା ସେମିତି ପଡ଼ିଛି । ଯେଉଁ କାଙ୍ଗାଳମାନେ ବାଟରେ କଦବା କ୍ୱଚିତ ଯାଆନ୍ତି, ସେମାନେ ବୁଢ଼ାକୁ ଦେଖନ୍ତି, ବାୟାଟାଏ ବୋଲି ବାଟ କଟେଇ ଚାଲି ଯାଆନ୍ତି । ତା ଆଖି ଦୁଇଟା କ୍ଷୁଧିତ ବ୍ୟାଘ୍ର ପରି ଝକୁଦେଲେ ଜୁଳୁଥାଏ ।

ବ୍ରହ୍ମପୁର ନିକଟରେ ଥିବା ଲଞ୍ଜିପଲ୍ଲୀର ଛୋଟା ବୁଢ଼ାକୁ ଆଉ ଭଲ ଲାଗିଲା ନାହିଁ । ସଂସାର ଓ ତା ପୁଅକୁ ଖୋଜିବା ପାଇଁ ସ୍ୱୀନା କଟକ ଆସିବା ଦିନଠାରୁ ସେ କେଜାଣି କାହିଁକି ନିଜର ଶୁଖିଲା ଘରଭିତରେ ଗୋଟାଏ ଶୂନ୍ୟତା ଅନୁଭବ କଲା । ସେ ପିଲାମାନଙ୍କ ସହିତ ଖେଳି, ତାଙ୍କ ସହିତ ଗଳ୍ପ କରି ଏ କଥା ଭୁଲିବା ପାଇଁ ଚେଷ୍ଟା କଲା; କିନ୍ତୁ ସେଥିରେ କିଛି ଫଳ ହେଉଛି ବୋଲି ସେ ଜାଣିପାରିଲା ନାହିଁ । ବଡ଼ମାନେ ତା ପାଖକୁ ଆସିଲେ ସେ ବିରକ୍ତ ହେଲା । ଦୁଇ ତିନି ଦିନରେ ଯଦି ଭିକ ମାଗିଗଲା, ଫେରଆସି କେଉଁ ଦିନ ବା ସେହିପରି, କେଉଁ ଦିନ ବା ମୁଠାଏ ଫୁଟାଇ ଖାଇ ଶୋଇପଡ଼ିଲା । ଏହିପରି ଭାବରେ ଦୁଇତିନି ସପ୍ତାହ କଟିଲା; ବୁଢ଼ା ଅଧିକରୁ ଅଧିକ ଦୁର୍ବଳ ହୋଇ ପଡ଼ିଲା ।

'ସ୍ଟେର, ଡଟେଇଡ, ଲୁଅଷ୍ଟେର'—ଆଖପାଖର ବଙ୍ଗଳ-ମାନେ ବୁଢ଼ା ମୁହଁରୁ ବରବର ମଝିରେ ମଝିରେ ଏପରି କଥା ବାହାରୁ ଥିବାର ଶୁଣି ମନେକଲେ, ବୁଢ଼ା ପୂରାପୂରି ବାତ୍ୟା ହୋଇଯାଉଛି ।

ଦିନେ ସମସ୍ତେ ଦେଖିଲେ, ବୁଢ଼ାର ରହିବା ଜାଗା ଖାଲି ପଡ଼ିଛି, ତାର ଛିଣ୍ଡା ଅଖା ଓ କନାବୁଜୁଳା ନାହିଁ । କୁଆଡ଼େ ଗଲା ବୋଲି ସେଠାର ବଙ୍ଗାଳମାନେ ଭାବିଲେ । ହଁ, ମାଷ୍ଟ୍ରେ କୁଆଡ଼େ ଯାଇଥିବେ, କେଉଁଠି ବା ପଡ଼ି ମରିଯାଇଥିବେ, ଏ କଥା ମନେ ମନେ ସମସ୍ତେ ଧରି ନେଲେ । ମୃତ୍ୟୁଟା ଯେଉଁମାନଙ୍କ ପକ୍ଷରେ ନିତାନ୍ତ ସ୍ୱାଭାବିକ, ବଞ୍ଚିରହିବା ତ ତାଙ୍କ ପକ୍ଷରେ ନିଶ୍ଚୟ ଆଶ୍ଚର୍ଯ୍ୟର ବିଷୟ ।

ଯେଉଁ ଦିନ ମାଷ୍ଟ୍ରେ ବ୍ରହ୍ମପୁର ଷ୍ଟେସନରୁ କଟକ ଗାଡ଼ିରେ ଚଢ଼ିଲେ ସେଦିନ ମୂଳଆ କାଙ୍ଗାଳ ଷ୍ଟେସନରେ ଭିକ ମାଗୁଥିଲା ।

ମାଷ୍ଟ୍ରେ, କୁଆଡ଼େ ଯାଉଛନ୍ତି ବୋଲି ସେ ତାଙ୍କୁ କୁଆଡ଼େ ପଚାରିଥିଲା । ଲଞ୍ଜି ପକ୍ଷୀ ଟୋଟାର ଢାଙ୍ଗାଳମାନେ କ୍ରମେ କ୍ରମେ ଏ ଖବର ପାଇଲେ । ସମସ୍ତେ ଧରିନେଲେ, ବୁଢ଼ା ଆଉ ଫେରିବ ନାହିଁ । ଦୁନିଆର ସବୁ ସମ୍ମାନଉପରୁ ଏମାନେ ସବୁ ଅଧିକାର ହରାଇ ଥିଲେ । କେହି ସେମାନଙ୍କୁ ସମ୍ମାନ କରନ୍ତି ନାହିଁ, ସେମାନଙ୍କ ମନରେ ମଧ୍ୟ କାହାରି ପ୍ରତି ସମ୍ମାନର ସ୍ଥାନ ନ ଥିଲା; କିନ୍ତୁ ଏ ବୁଢ଼ାଟି, ଏ ମାଷ୍ଟ୍ରେ, ତାଙ୍କୁ ଏ ଢାଙ୍ଗାଳଗୁଡ଼ାକ କାହିଁକି କେଜାଣେ ସମ୍ମାନ କରୁଥିଲେ—ଆଉ ସମ୍ମାନ କରି ମନରେ ଟିକିଏ ଆନନ୍ଦ ପାଉଥିଲେ । ବୁଢ଼ା ବାଘୁଆପରି ଛକି, ନିଜ ମନକୁ ମନ ବକିଯାଏ—କେତେବେଳେ ପାଟିକରେ; ଢାଙ୍ଗାଳମାନେ ବୁଝୁଥିଲେ ଯେ, ଏ ରାଗ ତ ସେମାନଙ୍କ ଉପରେ ନୁହେଁ, ଢାଙ୍ଗାଳ ପିଲାଗୁଡ଼ାକ ଉପରେ ନୁହେଁ, ସେମାନଙ୍କ ଭଳି କୌଣସି ମନୁଷ୍ୟ ଉପରେ ନୁହେଁ । ବୁଢ଼ାଟା ଗଲା, ହୁଏତ ଆଉ ତା ସାଙ୍ଗରେ ଦେଖା ହେବ ନାହିଁ । ଅସରନ୍ତି ଦୁଃଖ ଭିତରେ ମଧ୍ୟ ସେମାନେ ବୁଢ଼ା ପାଇଁ ଆଉ ଟିକିଏ ଦୁଃଖିତ ହୋଇଥିଲେ—ବେଶୀ ହୋଇଥିଲେ ଲଞ୍ଜିପକ୍ଷୀ ଟୋଟାର ଢାଙ୍ଗାଳ ପିଲାଗୁଡ଼ାକ ।

କଟକରେ କଲେଜ ପାଖ ଗଛମୂଳ; ବୁଢ଼ା ସେଇଠାରେ ଶୋଇଥାଏ, ବସିଥାଏ । କେତେ ଲୋକ ସେ ବାଟରେ ଆସନ୍ତି, କେତେ ଯାଆନ୍ତି; ଗାଡ଼ି ଯାଏ, ମୋଟର ଯାଏ—ବୁଢ଼ା ସେ ଆଡ଼କୁ ଚାହେଁ ନାହିଁ । କଲେଜର ପିଲାମାନେ ଦଳ ଦଳ ହୋଇ ସେ ବାଟେ ବୁଲି ଯାଆନ୍ତି, ବୁଢ଼ା ସେମାନଙ୍କୁ ଦେଖେ; ତା ଛାତି ଭିତରୁ ଗୋଟାଏ ଦୀର୍ଘ ନିଃଶ୍ୱାସ ବକ୍ଷପଞ୍ଜରର ଦାଣ୍ଡିକୁ ଠେଲି ବାହାରି ଆସେ; କେଜାଣେ କାହିଁକି ତାର ମନେ ପଡ଼ିଯାଏ, ଏମାନେ ତ ତାରି ପରି ବାପର ପୁଅ । ଥାଆନ୍ତୁ, ଭଲରେ ଥାଆନ୍ତୁ, ହସନ୍ତୁ

ଖେଳନ୍ତୁ—ଯେତେଦିନ ପାରନ୍ତି ସୁଖରେ ରହନ୍ତୁ । ଯେଉଁ ରୋଗ, ଯେଉଁ ଦୁର୍ଭିକ୍ଷ, ଯେଉଁ ଅଭାବ ଆଜ ତାକୁ ଆଣି ଏ ଗଛ ମୂଳରେ ବସାଇଛି, ଲକ୍ଷ ଲକ୍ଷ ଲୋକଙ୍କୁ ମରଣ ମୁହଁକୁ ଠେଲି ଦେଉଛି, ତାହା ଏ ଦେଶର ଗୋଟାଏ ସବୁଦିନିଆ କଥା । ଏମାନେ ନ ବୁଝନ୍ତୁ ଏମାନଙ୍କ ପୁଅ ତା ପୁଅ, ତା ପୁଅ, କେହି ହେଲେ ତ ଥାଟ ବଜ଼ର କାଙ୍ଗାଳ ହେବେ । ଆଜି ଯେ ଯେତିକି ଦୂରିରେ ରହୁଛି ସେତିକି ଭଲ ।

ବସି ବସି ପୁଣି ତାର ଅସ୍ଥି ଦୁଇଟା ନିର୍ଯାପର ଜ୍ୱଳ ଉଠେ— ନିଜ ମନକୁ ମନ କହି ପକାଏ, 'ଗ୍ରୈବ, ଡକେଇତ, ଜୁଆଗ୍ରୈବ କିଏକି ? କାହିଁକି ସମସ୍ତେ ସୁଖ ଶାନ୍ତିରେ ନ ରହିବେ ? ମୁଠାଏ ଖାଇବା, ଖଣ୍ଡେ ପିନ୍ଧିବା, କେନାଏ ଗୃହ ତଳେ ମୁଣ୍ଡଗୁଞ୍ଜି ରହିବା ପାଇଁ ତ ସମସ୍ତଙ୍କର ଅଧିକାର ଅଛି । ଭଗବାନ ଏ ଅଧିକାର ଦେଇଛନ୍ତି—ବଞ୍ଚିବାର ଅଧିକାର—କିଏ ଏହାକୁ କାଢ଼ି ନେଉଛି ? କିଏ ସେ ବଦମାସ୍ ? କିଏ ସେ ପାଜି ? କିଏ ସେ ରାକ୍ଷସ ? ଅଭାବର ଭୟ, ଖାଇବାକୁ ନ ପାଇବାର ଡର ସବୁ ମଣିଷ ଗ୍ଛତରେ ସବୁବେଳେ ଗୋଟାଏ ଭୀଷଣ ସ୍ୱପ୍ନ ପରି ମାଡ଼ି ବସିଛି । ବିପଦର ଏ ବିପଦରୁ ରକ୍ଷା ପାଇବେ ସମସ୍ତେ ଏହା ସବୁବେଳେ ଚିନ୍ତା କରୁଛନ୍ତି, ସେଥିପାଇଁ ସେମାନେ ଭାଇ ମୁହଁରୁ ଗ୍ରାସ କାଢ଼ି ନେଉଛନ୍ତି, ପୁଅର ତଣ୍ଟି ଚିପି ମାରୁଛନ୍ତି, ନାତିକୁ କାଙ୍ଗାଳ କରି ଦାଣ୍ଡକୁ ଠେଲି ଦେଉଛନ୍ତି—ଅନ୍ନ ଯାହା ପାଇଲେ ତାକୁ ଗଣ୍ଠିଧନ ପରି ଠୁଳକରି ରଖୁଛନ୍ତି । ଏହା ତ ସେମାନଙ୍କର ଧନ । ଏହି ଧନ ବଳରେ ତ ସେମାନେ ଲକ୍ଷ ଲକ୍ଷ ଗରିବଦୁଃଖୀଙ୍କୁ ଖଟେଇ ଦେବା ପରି ଉଦ୍ଧ-ଶୃଙ୍ଖଳା କରୁଛନ୍ତି । ଏ ସବୁ କାହିଁକି ? ଏ ସବୁର କାରଣ କଅଣ ?

ଖାଇ ପିଇ ସମସ୍ତେ ଖୁସିରେ ରହିଲେ ତାହାର କଅଣ କ୍ଷତି ହୁଅନ୍ତା ? ମଣିଷ ଚଳିଯିବା ପାଇଁ ଖାଇବା ଜିନିଷ ଯେତେ ଦରକାର ବର୍ଷର ସବୁ ଦିନେ ତ ଏ ଭବାଟ ଦୁନିଆରେ ତା ଅପେକ୍ଷା ବେଶୀ ଉତ୍ପନ୍ନ ହେଉଛି । ଯେତିକି ଜାଗାରେ ମଣିଷ ଘର କରି ରହୁଛି, ତାର ହଜାର ଗୁଣ, ଲକ୍ଷ ଗୁଣ ତ ଚାଷ ଜମି । ପୁଣି ଅଠକାଳି ବାରମାସୀ କିଛି ନା କିଛି ଫସଲ ତ ହେଉଛି । ତଥାପି ସମସ୍ତେ କାହିଁକି ଖାଇବାକୁ ପାଉ ନାହାନ୍ତି ? ଦଳେ 'ମଣିଷ ଖାଉଛନ୍ତି, ପକାଉଛନ୍ତି ଓ ଅବଦଳେ ଭୋକ ଉପାସରେ ମରୁଛନ୍ତି ? ଚୋର, ଡକାୟତ, ବଦମାସ୍ ।

ଜଣେ ବାଙ୍ଗାଳ ସେ ବାଟେ ଯାଉଥିଲା, ଛିଡ଼ାହୋଇ ଗଛ ମୂଳକୁ ଗୃହିଁଲା, ପାଟି କରି ଡାକିଲା, 'ମାଷ୍ଟ୍ରେ !'

ମାଷ୍ଟ୍ରେ ତା ଆଡ଼କୁ ଅନାଇଲେ, କିଛି କ୍ଷଣ ପରେ କହିଲେ, କିଏ ? ଯୋଗିଆ ?'

ଯୋଗିଆ ଗଛ ମୂଳ ଆଡ଼କୁ ପାଉ ପାଉ କହିଲା, 'ହୁଁ' ।

ମାଷ୍ଟ୍ରେ ପଗୃରିଲେ, 'ତା ମାଆ ?'

ଯୋଗିଆ ସାଧାରଣ ଭାବରେ କହିଲା, 'କଟକରେ ଦିନକୁ ୫।୧୦ଟା ଲେଖାଏ ବାଙ୍ଗାଳ ମରୁଛନ୍ତି । ବୁଢ଼ୀଟା ଗଛ ମୂଳେ ଶୋଇଥିଲା, ସକାଳୁ ଦେଖିବାବେଳକୁ ମରି ଯାଇଛି ।

ମାଷ୍ଟ୍ରଙ୍କ ଆଖି ଦୁଇଟା ପୁଣି ଜ୍ୱଳି ଉଠିଲା; ସେ କହିଲେ, 'ଯାଉ । ଯାଉ ! ଭଲ ହୋଇଛି । ତୋ ଝିଅଟା ତ ଆଗରୁ ଯାଇ ଥିଲା ଯେ । ସ୍ତ୍ରୀଟା ମଧ୍ୟ । ଭଲ ହେଲା । ତୁ ଏକା । ଭଲ ହେଲା । ଦେଖିଁଟାଏ ପେଟ ସମ୍ଭାଳିବୁ !' ନ ହେଲେ ତୁ ମଧ୍ୟ ତାଙ୍କର ବାଟ ଧରିବୁ ।'

ସେତେବେଳକୁ ଯୋଗିଆ ଗଛ ମୂଳରେ ବସି ପଡ଼ିଥିଲା ।

ବୁଢ଼ା ପଚାରିଲା, 'ଧୀନାକୁ ଦେଖିଥିଲୁ ?'

ଯୋଗିଆ କହିଲା,'ନାହିଁ ମାଷ୍ଟ୍ରେ । ମୁଁ କୁଆଡ଼କୁ ଯାଏ ନାହିଁ । ଦେଖନ୍ତି ସେ ଅଡ଼େ ଯେଉଁ ମାଲଗୋଦାମ, ତାହାର ପାଖରେ ଥିବା ଗୋଟାଏ ଗଛମୂଳେ ମୁଁ ପଡ଼ିଛି । ପ୍ରତିଦିନ ମାଲ ଗାଡ଼ିରେ ବୋଝେଇ ହୋଇ ଗୁଡ଼ିଏ ଜେଲ୍ ଅଡ଼କୁ ପଠା ଯାଉଛି । କୁଲିମାନେ ବସ୍ତା ବୋହି ନେଉଥିଲା ବେଳେ ଗୁଡ଼ିଏ ଗଳିପଡ଼େ, ମାଲ ଉତାରୁ ଗଳିପଡ଼େ, ସେତକ ଗୋଟାଇ ସାଉଁଟି ଅଣିଲେ ସେତିକିରେ ଦୁଇ—ଚଳିଯାଏ । ତୁମେ ଚାଲ ମୋ ପାଖକୁ, ମାଷ୍ଟ୍ରେ ।'

ମାଷ୍ଟ୍ରେ ମୁଣ୍ଡ ହଲାଇ କହିଲେ, 'ନା ! ଚୋରିମାଲ । ଚୋରି କରିବା ମୋ ଦେହାନ୍ତ ହୋଇ ପାରିବ ନାହିଁ । ମୋ ପରି ତ ହଜାର ହଜାର ଗଲେଣି—ମୁଁ ଯିବି । ଚୋରି କରିବ କାହିଁକି ?'

ଯୋଗିଆ ବଡ଼ ଖଣ୍ଡେ ଲଗାଇବା ପାଇଁ ଉଠିଗଲା ।

ଚାରିଜଣ ଗୋରା ପଲଟଣ ମୁହଁରୁ ସିଗାରେଟ ଧୂଆଁ ଉଡ଼ାଇ ସେ ବାଟେ ଚାଲିଗଲେ ।

ବୁଢ଼ା ସେହି ଅଡ଼କୁ ଚାହିଁ ରହିଥାଏ ।

---

## ପରିଚ୍ଛେଦ

ଏସୋସିଏଟେଡ୍ ପ୍ରେସ୍ ସମ୍ବାଦପ୍ରତିଷ୍ଠାନ୍ ଦିଲ୍ଲୀରୁ ସମ୍ରାଟଙ୍କ ଜନ୍ମଦିନ ଉପଲକ୍ଷେ ଯେଉଁ ଉପାଧି ତାଲିକା ପଠାଇଥିଲା, ସେଥିରେ ଶେଠ୍ ମୂଳଚାନ୍ଦ ଚନ୍ଦନମଲ୍ ରାଓ ସାହେବ ଓ ରାୟ ସାହେବ

ଧରଣୀଧର ସେନାପତି ରାୟ ବାହାଦୁର ଖେତାବ ପାଇ ଥିବା'ର ଉଲ୍ଲେଖ ଥିଲା । ଅତି ଖେତାବ ପାଇଥିଲେ ଲୋକଙ୍କ ଉପରେ ଗୁଳି ଚଳାଇ ମାରିଥିବା ପୋଲିସ ହାକିମ, ଦେଶସେବକମାନଙ୍କୁ ଜେଲରେ ପୁରାଇ ଥିବା କେତେକ ସ୍ୱଦେଶୀ ମେଜେଷ୍ଟର, ବିଦେଶୀ ସୈନ୍ୟମାନଙ୍କର ଖାଦ୍ୟ ପାଇଁ ଗୋମାଂସ ଯୋଗାଇ ଥିବା ହିନ୍ଦୁ ଧର୍ମାବଲମ୍ବୀ ଜଣେ କଣ୍ଟ୍ରାକ୍ଟର । 'ଯୁଗବାର୍ତ୍ତା' ଅଫିସରେ ବସି ନୀଳମଣି ବାବୁ ଏ ତାଲିକା ଆଡ଼କୁ ଚାହୁଁଛନ୍ତି, ଭାବୁଛନ୍ତି—ଏ ଧରଣର କାମ ଆଉ କେତେ ଦିନ ଏ ଦେଶରେ ଚାଲିବ ?

ସହକାରୀ ସମ୍ପାଦକ ସୋମନାଥବାବୁ ଖଣ୍ଡେ କାଗଜ ଆଣି ତାଙ୍କ ଆଗରେ ଥୋଇ ଦେଲେ । ସେଥିରେ ଲେଖା ଥିଲା, ଗଞ୍ଜାମ ଜିଲ୍ଲାରେ ହଇଜା ଅତି ବ୍ୟାପକ ଆକାର ଧାରଣ କରିଛି, ଏ ବ୍ୟାଧିରେ ଏ ପର୍ଯ୍ୟନ୍ତ ପ୍ରାୟ ୨ ହଜାର ଲୋକ ପ୍ରାଣ ହରାଇଛନ୍ତି ଓ ୨୦ ହଜାର ଲୋକ ଆକ୍ରାନ୍ତ ହୋଇଛନ୍ତି । ଚିକିତ୍ସାର କୌଣସି ବ୍ୟବସ୍ଥା ଏ ପର୍ଯ୍ୟନ୍ତ ସରକାର କରି ପାରି ନାହାନ୍ତି ।

ତା ପରେ ଆସିଲା କଟକ ସମ୍ବାଦଦାତାଙ୍କଠାରୁ ଖଣ୍ଡେ ସମ୍ବାଦ । ସେଥିରେ ଲେଖାଥିଲା, ସହରର ୫ଟିଯାକ ଛତ୍ର ଗତକାଲି ସେ ବୁଲି ଦେଖିଥିଲେ । ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କୁ ଯାହା ଖାଇବାକୁ ଦିଆଯାଏ, ତାହାର ପରିମାଣ ଶତକଡ଼ା ୨୫ ଭାଗ କମାଇ ଦିଆଯାଉଛି । ଜଣାଶୁଣା ମହଲରୁ ସେ ଖବର ପାଇଛନ୍ତି ଯେ, କ୍ରମେ କ୍ରମେ ଛତ୍ରଗୁଡ଼ାକୁ ବନ୍ଦ କରି ଦିଆଯିବ ବୋଲି ସରକାର କୁଆଡ଼େ ନୀତି ନିର୍ଦ୍ଧାରଣ କରୁଛନ୍ତି । ସହର ଭିତରେ ଏଗୁଡ଼ାକ ଥିବାରୁ ବଜାର ଓ ବସ୍ତିମାନଙ୍କରେ ଭାଙ୍ଗାଳି ସଂଖ୍ୟା ଖୁବ୍ ପରିମାଣରେ ବଢ଼ି ଯାଉଛି । ତାହା ଫଳରେ ଓଡ଼ିଶା

ପ୍ରଦେଶରେ ଦୁର୍ଭିକ୍ଷ ଲାଗିଛି ବୋଲି ପ୍ରମାଣିତ ହେବା ସଙ୍ଗେ ସଙ୍ଗେ ସହରରେ ସଂକ୍ରାମକ ବ୍ୟାଧି ବ୍ୟାପି ଯିବାର ଆଶଙ୍କା ରହିଛି । ଗତକାଲି ସହରର ଭଦ୍ରକ ଅଞ୍ଚଳ ବୁଲି ସେ ହିସାବ କରିଛନ୍ତି ଯେ, ଅନାହାରଜନିତ ରୋଗରେ ନଅ ଜଣ ଲୋକ ପ୍ରାଣ ହରାଇଛନ୍ତି ।

ନୀଳମଣି ବାବୁ ଏସବୁ ପଢିଲେ, ସହକାରୀଙ୍କୁ ଡ଼ାକି କହିଲେ, 'ଏଗୁଡାକୁ ଫାଇଲରେ ରଖି ଦଅନ୍ତୁ; ଭବିଷ୍ୟତରେ ହେଲେ କାମରେ ଲାଗିବ ।'

ଟେଲିଫୋନ ଘଣ୍ଟି ବାଜି ଉଠିଲା । ନୀଳମଣି ବାବୁ ରିସିଭରଟା କାନକୁ ଉଠାଇ କହିଲେ, 'ହାଲୋ !'

ଆର ପାଖରୁ ଖବର ଆସିଲା, 'ମୁଁ ସେଠ୍ ମୂଳଚନ୍ଦ କହୁଛି । ସରକାର ବାହାଦୁର ମୋତେ ରାୟ ବାହାଦୂର ଖେତାବ ଦେଇଛନ୍ତି ।

ନୀଳମଣି ବାବୁ କହିଲେ, 'ଦେଖିଛି ।'

'ଜୀ, ଧରଣୀଧର ବାବୁ ବି ରାୟ ବାହାଦୁର ହୋଇଛନ୍ତି ।'

ନୀଳମଣି ବାବୁ ନିର୍ଲିପ୍ତ ଭାବରେ କହିଲେ, 'ଭଲ କଥା ।'

'ଓଡ଼ିଶା ପରଦେଶ କ ବଡ଼ା ଗୌରବକା କଥା ହେଲା, ନା ?'

ନୀଳମଣି ବାବୁ ସେହିପରି ଭାବରେ କହିଲେ, 'ଆପଣ ତ କହୁଛନ୍ତି ।'

'ମେ ର ବୋଲିବା କଥା କଅଣ କି, ହମାର ନାମ ଆପଣ ବଡ଼ା ବଡ଼ା ଅକ୍ଷରରେ ଛପାଇ ଦେବେ ।'

ନୀଳମଣି ବାବୁ ବିରକ୍ତ ହେଲେ, କହିଲେ, 'କାହିଁକି ?'

'ଲୋକସବୁ ଦେଖିବେ, ପଢ଼ିବେ । ଗୌରବକୀ ବାତ୍ କିନା ସମସ୍ତେ ଜାଣିବା ଠିକ୍ ହେବ । ଲମ୍ବାଚୌଡ଼ା ଖେତାବ ତାଲିକାଃ

ହଜାର ହଜାର ନାମ ଅଛି, ସବ ଲୋକ ସବୁ ପଢ଼ିବ ନାହିଁ । ଜାଣେ ଗା ଖବର ?'

ନୀଳମଣି ବାବୁଙ୍କ ମସ୍ତିଷ୍କ କ୍ରମେ କ୍ରମେ ଗରମ ହୋଇ ଆସୁଥିଲା । ସେ କହିଲେ, 'ମୁଁ ଠିକ୍ କହୁଛି ଯେ, 'ଯୁଗବାର୍ତ୍ତା'ରେ ଆଦୌ ଉପାଧି ତାଲିକା ପ୍ରକାଶ କରାଯିବ ନାହିଁ । ସରକାର ତ ଅନେକ ଖବର ଛପାଇବା ଉପରେ କଟକଣା ଜାରି କରନ୍ତି; ଆମେ ନିଜ ଉପରେ ଏ କଟକଣା ଜାରି କରିବ ବୋଲି ଭାବୁଛି ।'

'ଠିକ୍ କାମ୍ ହେବ ନାହିଁ । ବହୁତ ଲୋକ ସେ କାଗଜ ପଢ଼ିବାକୁ ଚାହୁଁଛନ୍ତି—ବହୁତ କ୍ଷତି ହେବ । ମୁଁ ପାଞ୍ଚ ଶୋ କାଗଜ କିଣିବ ।'

ନୀଳମଣି ବାବୁ କହିଲେ, 'ବୁଝୁଛି; କିନ୍ତୁ ମୁଁ ଯାହା ଠିକ୍ କରୁଛି, ତାହାହିଁ ହେବ ।'

'ଲେକିନ୍ ଆଉ ଗୋଟାଏ କଥା । ଅପକା ମିଠାଇ ଖାନେକା ପାଇଁ ଦୁଇ ହଜାର ରୁପେୟା ।'

କ୍ରୋଧରେ ନୀଳମଣି ବାବୁଙ୍କ ହାତ ଥରିଗଲା । ସେ କହିଲେ, 'ଦେଖନ୍ତୁ ମୂଳଚନ୍ଦ ବାବୁ, ମୋତେ ଏପରି ଭାବରେ ଅପମାନିତ କରିବାରେ ଆପଣଙ୍କର କୌଣସି ଅଧିକାର ନାହିଁ । ଆପଣ ତ ଲୋକଙ୍କ ମୁହଁର ଦାନା କାଢ଼ି ନେଇ ତାଙ୍କର ମଲା ହାଡ଼ ଦ ଖଣ୍ଡକୁ କଳ ଲୁହା ଟ୍ରେଜେରୀରେ ଠେକା ରଖୁଛନ୍ତି । ଆପଣ ମଣିଷ କି ଆଉ କିଛି, ଆପଣଙ୍କର ହୃଦୟ 'ଅଛି କି ନାହିଁ', ସେ କଥା ମୁଁ କହୁ ନାହିଁ । କିନ୍ତୁ ଆପଣଙ୍କୁ ସିଧା ସଳଖ ଜଣାଇ ଦେଉଛି ଯେ, ଦିନେ ନା ଦିନେ ଆପଣଙ୍କର, ଆପଣଙ୍କ ପରି ଲୋକଙ୍କର ବିଚାର ହେବ । ସେ ବିଚାର କରିବ କିଏ, ତାହା ମଧ୍ୟ କହି ରଖୁଛି । ବିଚାର

କରିବେ ସେହି ଜନସାଧାରଣ ଆଜ ଯେଉଁମାନେ ପୋକମାଛି ପରି ମରୁଛନ୍ତି । ନମସ୍କାର !'

ଚପରାଶୀ ଆସି କହିଲା, 'ଦୁଇଜଣ ପୋଲିସ ହାକିମ ଆପଣଙ୍କ ସହିତ ଦେଖା କରିବେ ବୋଲି କହୁଛନ୍ତି ।'

ନୀଳମଣିବାବୁ କହିଲେ, 'ଡାକିଦିଅ ।'

ଦୁଇଜଣ ପୋଲିସ ଅଫିସର ସମ୍ପାଦକଙ୍କ ଅଫିସ ଭିତରକୁ ଆସିଲେ ।

ନୀଳମଣି ବାବୁ ବସନ୍ତୁ ବୋଲି ସେମାନଙ୍କୁ କହିଲେ ।

ଡ଼ି. ଏସ୍. ପି. ତାଙ୍କ ହାତକୁ ଖଣ୍ଡେ କାଗଜ ବଢ଼ାଇଦେଇ କହିଲେ, 'ୱାରେଣ୍ଟ ! ଆପଣ ପ୍ରସ୍ତୁତ ହୁଅନ୍ତୁ ।'

ନୀଳମଣି ବାବୁ କହିଲେ, ଭାରତ ରକ୍ଷା ଆଇନ ଅନୁସାରେ ୱାରେଣ୍ଟ ତ ? ମୁଁ ପ୍ରସ୍ତୁତ ଅଛି ।

ସହକାରୀ ସମ୍ପାଦକଙ୍କୁ ଡାକି କହିଲେ,'ଆପଣ ସମ୍ପାଦକ ହେବେ । ଯୁଗବାର୍ତ୍ତା ବରାବର ଚାଲିବ । ସରକାର ଯାହା ମନା କରିବେ, ପ୍ରକାଶ କରିବେ ନାହିଁ; ସରକାରଙ୍କୁ ପ୍ରତ୍ୟକ୍ଷ ଭାବରେ ଯାହା ସାହାଯ୍ୟ କରିବ ବୋଲି ଆପଣ ଅନୁଭବ କରିବେ ତାହା ମଧ୍ୟ ଛପାଇବେ ନାହିଁ । ଏହା ଫଳରେ ଯଦି କାଗଜ ବନ୍ଦ ହୋଇଯାଏ, ଛାପାଖାନା ଜବତ୍ ହୋଇଯାଏ, ହେବ—ଚିନ୍ତା କରିବେ ନାହିଁ । ନମସ୍କାର ।'

ବାହାରେ ଦୁଇଖଣ୍ଡ ପୋଲିସ ମୋଟରଗାଡ଼ି ଛିଡ଼ା ହୋଇଥିଲା । ୧୦ ଜଣ ପୋଲିସ ବନ୍ଧୁକରେ ସଙ୍ଗୀନ ଚଢ଼ାଇ ଧାଡ଼ିହୋଇ ଛିଡ଼ା ହୋଇଥିଲେ । ସେତେବେଳେ ଏ ଦୃଶ୍ୟ ଦେଖିବା ପାଇଁ ସେଠାରେ ସେ ବଜାରର ୪୦୫ଶହ ଲୋକ ରୁଣ୍ଡହୋଇ ଯାଇଥିଲେ ।

ନୀଳମଣି ବାବୁ ଗୋଟାଏ ମୋଟରରେ ଯାଇ ବସିଲେ; ତାଙ୍କ ଦୁଇପାଖେ ବସିଲେ ଦୁଇଜଣ ପୋଲିସ ହାକିମ । ଜଣକର ରିଭଲଭର୍ ଖୋଲ ତାଙ୍କ ଦେହରେ ବାଜୁଥିଲା ।

ଗାଡ଼ି ଛୁଟିଲା ଚାଲିଲା । ଦେଖାଣେ କାହିଁକି ଲୋକଗୁଡ଼ାକ ପାଟିକଲେ— 'ମହାତ୍ମାଗାନ୍ଧିକୀ ଜୟ' 'ସ୍ୱାଧୀନ ଭାରତକୀ ଜୟ' 'ବନ୍ଦେ ମାତରମ୍' 'ଇନ୍‌କିଲାବ ଜିନ୍ଦାବାଦ୍ ।'

———

## ଛତ୍ରିଶ

ମୀନା ଖୋଜୁଥିଲା ସାଇଅକୁ ଅଉ ତାର ପୁଅକୁ ।

କଟକର ସବୁ ଛକରେ ବୁଲିଛି, ଯେଉଁଠି କାଙ୍ଗାଳମାନେ ରାତିରେ ରହନ୍ତି ସେ ସବୁ ସ୍ଥାନ ଖୋଜିଛି; କିନ୍ତୁ କୌଣସିଠାରେ କିଛି ସନ୍ଧାନ ପାଇ ନାହିଁ । ଥରେ ଥରେ ସେ ଭାବୁଥିଲା, କାଙ୍ଗାଳ-ଗୁଡ଼ାକ ତ ଯେ ଯେଉଁଠି ପାରିଲେ ପଡ଼ି ମରୁଛନ୍ତି; ମ୍ୟୁନିସପାଲିଟିର ଅଳିଆବୁହା ଗାଡ଼ି ସେମାନଙ୍କୁ ନେଇ ଖାନନଗର ମଶାଣିର ଅତଡ଼ା ତଳେ ଗଡ଼ାଇଦେଇ ଆସୁଛି; ଏ ଦୁଇଜଣ ବା ସେମିତି ଭାବରେ ଅଦୃଶ୍ୟ ହୋଇ ଯାଇଥିବେ । ତଥାପି ସେ ଖୋଜୁଥିଲା । ଭାବୁଥିଲା, କେହି ହେଲେ ତ ସେମାନଙ୍କୁ ଦେଖିଥିବ, ଚିହ୍ନିଥିବ, ମରିଗଲେ ବୋଲି କହିବ ? ତା ହେଲେ ତାହା କାମ ସହଜ ହୋଇଯିବ । ସେ ମଧ୍ୟ ସେମାନଙ୍କ ସାଙ୍ଗକୁ ଚାଲିବ । ଏହି ବିଶ୍ୱାସରେ, ଏହି ଆଶାରେ ସେ ବଞ୍ଚିଥିଲା, ତା ସ୍ତ୍ରୀ ଓ ପୁଅଟିକୁ ଖୋଜୁଥିଲା ।

ଘୀନା କେଉଁଠି ରହେ ନାହିଁ। ଯେଉଁ ଗଛ ମୂଳରେ ଛୁଣ୍ଡା କପଡ଼ା ପୁଞ୍ଜାଏ ପୁଞ୍ଜାଏ ଜମା ହୋଇଥାଏ, ଗୋଟାଏ ଦୁଇଟା ଭଙ୍ଗା ଅଟିକା ପଡ଼ିଥାଏ, ବୁଲି ବୁଲି ସେହିଠାରେ ଯାଇ ବସିରହେ; ତାହାକୁ କିଛି କହେ ନାହିଁ, ତାହାରକୁ କିଛି ପଚାରେ ନାହିଁ। ସଞ୍ଜବେଳକୁ ଗୋଟି ଗୋଟି ହୋଇ କାଙ୍ଗାଳମାନେ ସେ ସ୍ଥାନକୁ ଗଡ଼ନ୍ତି; ସେ ଦେଖେ ଅଳ୍ପ ଗୋଟି ଗୋଟି ହୋଇ ଅଗକୁ ଚାଲେ।

କଟକ ସହର। ରାତିରେ କଡ଼ା ପହରା। ସରକାରୀ କର୍ମ-ମାନଙ୍କ ଧାରଣା, ଏ ନରକଙ୍କାଳଗୁଡ଼ାକ ଭିତରେ ଚୋର, ଡକାଇତ ଅଛନ୍ତି—ସେମାନେ ଧନୀଘରୁ ଧନ ନେଇଯିବେ, ସେମାନେ ନରହତ୍ୟା କରିବେ। ସେଥିପାଇଁ ରାତି ୧୦ଟା ପରେ ବାଟରେ କୌଣସି କାଙ୍ଗାଳ ବୁଲୁଥିବାର ଦେଖିଲେ ପୋଲିସବାଲା-ମାନେ ତାକୁ ମାଡ଼ ଦଅନ୍ତି; ମାଡ ଫଳରେ କେହି ଯଦି ବେହୋସ ହୋଇପଡ଼େ, ତାକୁ ବାଟକଡ଼ ନର୍ଦ୍ଦମା ଭିତରକୁ ଗଡ଼ାଇ ଦଅନ୍ତି। ଏମାନଙ୍କର ଜୀବନର ତ କିଛି ମୂଲ୍ୟ ନାହିଁ। ମରିଗଲେ ପଚାରୁଛି କିଏ ? ମଣିଷଟାଏ ମରୁଛି ବୋଲି କିଏ ତାହାଙ୍କ ପଚାରିବ, କିଏ ବା ତାହାଙ୍କ କୈଫିୟତ୍ ମାଗିବ ? ସେ ପର୍ଯ୍ୟନ୍ତ ମଧ୍ୟ ନିଜ ଜୀବନ ପ୍ରତି ଘୀନାର ମାୟା ଥିଲା। ସେଥିପାଇଁ ରାତି ବେଶି ହେବା ପୂର୍ବରୁ ଯେଉଁ ଗଛମୂଳେ ପୁଞ୍ଜାଏ କାଙ୍ଗାଳ ଶୋଇ ଥାଅନ୍ତି, ସେଠାରେ ସେ ଗଡ଼ିପଡ଼େ।

ଖାଇବା ? ଅଳ୍ପକାଳ ଘୀନା ଭିକ ମାଗେ ନାହିଁ—ମୁଠାଏ ଭାତ ଦିଅ, ଗୋଟିଏ ପଇସା ଦିଅ ବୋଲି କାହାକୁ କହେ ନାହିଁ। ବୁଲି ବୁଲି ସେ ଯଦି କୌଣସି ଛତ୍ର ପାଖରେ ପହଞ୍ଚି ଯାଏ, ଜବରଅଳୀ ପୋଲିସବାଲାମାନେ ଯଦି ତାକୁ ଭିତରକୁ ଛାଡ଼ିଦିଅନ୍ତି,

ସେ ଯାଏ, ମୁଠାଏ ଖାଇବେ, ନିକଟରେ ଥିବା ପୋଖରୀ ବା ଗାଡ଼ିଅରୁ ପେଟେ ପାଣି ପିଇବେ—ପୁଣି ବୁଲେ ।

ସହରରେ ବଡ଼ ବଡ଼ ହୋଟେଲ ସୁନ୍ଦର ରୂପେ ସଜ୍ଜିତ । ଶହ ଶହ ଲୋକ ସେଠାକୁ ଯାଉଥାନ୍ତି, ଖାଉଥାନ୍ତି, ଫେରୁଥାନ୍ତି । ବଜାରରେ ବଡ ବଡ଼ ଗୁଡ଼ିଆ ଦୋକାନ—ନାନା ପ୍ରକାର ଖାଦ୍ୟ ସଜାହୋଇ ରହୁଥାଏ, ବିଜୁଳି ଆଲୁଅ ଜଳୁଥାଏ । ଥିଏଟର ଘର—ସେଠାରେ ମଧ୍ୟ ଗହଳି ଲାଗିଥାଏ । ଦୀନା ଏ ସବୁ ଦେଖେ; ମନେ ମନେ ଭାବେ, ଖାଇବା ଜିନିଷର ତ ଅଭାବ ନାହିଁ, ସେମାନେ କାହାର କି ଅପରାଧ କରିଥିଲେ ଯେ, ମୁଠାଏ ଖାଇବାକୁ ନ ପାଇ ସହରର ଛକ ଦାଣ୍ଡେ ଦାଣ୍ଡେ ବୁଲିବେ, ବୁଲି ବୁଲି ମରିବେ ? ମାଷ୍ଟ୍ରଙ୍କ କଥା ତା ମନେ ପଡ଼ିଯାଏ । ସେ ବୁଢ଼ା କହୁଥିଲା, କାଙ୍ଗାଳଗୁଡ଼ାକର ବଳ ନାହିଁ, ସେମାନଙ୍କର ସାହସ ନାହିଁ, ନ ହେଲେ ସେମାନେ ଦଳ ବାନ୍ଧି ଖାଇବା ଦୋକାନରେ, ଥିଇବାଇ ସରେ ପଶନ୍ତେ, ଯାହା ପାଆନ୍ତେ ବଳପୂର୍ବକ ତାହା ଖାଇଯାଆନ୍ତେ । ଅସୁ ପୋଲିସ, ଅସୁ ଫୌଜ । ଗୁଳି ଚଳାଇ ମାରନ୍ତେ ତ, ଆଉ କଅଣ କରନ୍ତେ ? ଏମିତ ତ ଖାଇବାକୁ ନ ପାଇ କଷ୍ଟ ସହି ସହି ଶହ ଶହ ଲୋକ ମରୁଛନ୍ତି, ସେମିତରେ ମରନ୍ତେ । କ୍ଷତି କଅଣ ? ବୁଢ଼ା ଏତକ କହିଦେଇ ପୁଣି କହୁଥିଲା, ଉପରେ ଗୋଟାଏ ଧର୍ମ ଅଛି । ତର କେବଳ ତାକୁ । ତାର ବିଚାର ଅଲଗା, ତାର ଅଇନ ଅଲଗା, ତାର ଦଣ୍ଡ ଅଲଗା । ଆମ ମୁହଁର ଗ୍ରାସ ଯେଉଁମାନେ କାଢି ନେଉଛନ୍ତି, ଆମକୁ ମାରିପକାଉଛନ୍ତି, ସେ ତାର ବିଚାର କରୁ । ଆମେ କାହିଁକି ଅନ୍ୟାୟ କରିବା ? ତା ଦରବାରରେ ଆମେ କାହିଁକି ଦୋଷୀ ହେବା ? ଦୀନା ଅଗକୁ ଚାଲେ ।

ଦିନ ୧୨ଟା ବାଜିବ । ଶହ ଶହ ବାଙ୍ଗାଳ ମୃତ୍ୟୁପଥଯାତ୍ରୀ ଛକ ପାଖରେ ଜୁଟି ହୋଇଛନ୍ତି । ଜଣେ ସ୍ତ୍ରୀଲୋକ ତା ପିଲାଟାକୁ କୋଳରେ ଧରି ଛକର ପଶ୍ଚିମ ପାଖରେ ଥିବା ଅଶ୍ୱତ୍ଥଗଛ ମୂଳରେ ବସି ରହିଛି । ପିଲାଟାର ନିଃଶ୍ୱାସ ଧୀରେ ଧୀରେ ବଢ଼ୁଛି, ଛାତିର ଚମଡ଼ା ଧୀରେ ଧୀରେ ଉଠୁଛି ପଡ଼ୁଛି । ପାଖରେ ବସିଥିବା ବାଙ୍ଗାଳମାନେ କୁହାକୁହି ହେଉଛନ୍ତି—ପିଲାଟା ଯିବ ।

ହଠାତ୍ ସ୍ତ୍ରୀଲୋକଟାର ବକ୍ଷ ବିଦୀର୍ଣ୍ଣ କରି ଗୋଟାଏ ଚିତ୍କାର ଉଠିଲା, 'ମୋ ପୁଅ !'

କେତେଜଣ ବାଙ୍ଗାଳ ସେଆଡ଼କୁ ଗଲେ । ବୁଲି ବୁଲି ଦୀନା ସେଠାରେ ପହଞ୍ଚି ଯାଇଥିଲା । ସେ ଧାଇଁ ଗଲା ।

ଗହଳି ଠେଲି ସେ କୌଣସି ପ୍ରକାରେ ଭିତରକୁ ପଶିଲା । ଆଗରେ ସ୍ତ୍ରୀ ଲୋକଟା ତା ମଲା ପିଲାଟିକୁ କୋଳରେ ଧରି ପାଷାଣ ମୂର୍ତ୍ତି ପରି ବସି ରହିଛି ।

ଦୀନା କହିଲା, 'ସାବିଅ ! ମୋ ପୁଅ ??'

ସାବିଅର ଆଉ କଥା କହିବାର ଶକ୍ତି ନ ଥିଲା । ସେ କୋଳରେ ଥିବା ମଲାପୁଅ ଆଡ଼କୁ ଚାହିଁଲା—ସେହି ଗଛମୂଳେ ଗଡ଼ି ପଡ଼ିଲା । .

ଗୋଟାଏ ବୁଢ଼ା ପଛରୁ ଠେଲିହୋଇ ଆସି ଦୀନା ପାଖରେ ଛିଡ଼ା ହେଲା; ଡାକିଲା—'ଦୀନା !'

—'ମାଷ୍ଟ୍ରେ !'

ଆଉ ସେ କିଛି କହିପାରିଲା ନାହିଁ । ଗଡ଼ି ପଡ଼ିଲା !

କିଛି ସମୟ କଟିଗଲା । ବାଙ୍ଗାଳମାନେ ଛକ ଭିତରକୁ ଗଲେ । ମୂରଦାରଗୁଡ଼ାକୁ ଉଠାଇ ନେବାପାଇଁ ହାଡ଼ଗାଡ଼ି ଆସିଲା ।

ବୁଢ଼ା ଅମ୍ବଗଛକୁ ଡେରହୋଇ ଏମାନଙ୍କୁ ଏକ ଦୃଷ୍ଟିରେ ଗୃଧ୍ର ଛିଡ଼ା ହୋଇଥାଏ ।

ମେହେନ୍ତରମାନେ ଢଣ୍ଠା ମୁରଦାରକୁ ଗାଡରେ ପକାଇଲେ । ବଳଦ ଚାଲିଲା । ମାଷ୍ଟ୍ରଙ୍କ କଣ୍ଠ ଭେଦ କରି ଉଠିଲା ଗୋଟାଏ ଭୀଷଣ ଚିତ୍କାର—'ଗ୍ରେର, ଡଭେଲଡ, ଜୁଅଗ୍ରେର ।'

